“

Man is condemned to be free.

*- Jean-Paul Sartre*



ଭୀରୁ ଭାରତ

BHIRU BHARATA
a work of essays by **MANU DASH**

ପ୍ରଚ୍ଛଦ :
ଏମ୍.ଏଫ. ହୁସେନ୍‌ଙ୍କ 'ଟ୍ରାଭେଲ୍‌ର' ଛାୟାରେ
ପ୍ରସ୍ତୁତି : ସରୋଜ ବଳ

first edition 2002


**Rs. 70. 00**

published by Sunanda Pradhan, **ink odisha**,
115 (P), Acharya Vihar, Bhubaneswar-751013, Orissa, India

# ପୃଷ୍ଠା ଓ ପ୍ରବନ୍ଧ

# ହୀରା ଖଣିର ସନ୍ଧାନ

ଆମେରିକାରେ ଜଣେ ସେନାଧ୍ୟକ୍ଷ ଯୁଦ୍ଧ ଭୂଇଁରୁ ପ୍ରତ୍ୟକ୍ଷ ଅନୁଭୂତି ଆହରଣ କରିବାର ପ୍ରାୟ ସତର ବର୍ଷ ପରେ ସେଇ ଅନୁଭୂତିକୁ ପୁଞ୍ଜି କରି ଏକ ଉପନ୍ୟାସ ରଚନା କରିଥିଲେ ଯାହା ପରବର୍ତ୍ତୀ ସମୟରେ ଖୁବ୍ ଲୋକପ୍ରିୟ ହୋଇଥିଲା । ମାତ୍ର ସମାଲୋଚକମାନେ, ପ୍ରତ୍ୟକ୍ଷ ଅନୁଭୂତି ଥାଇ ବି ସେ କାହିଁକି ଏତେ ବର୍ଷ ପରେ ଉପନ୍ୟାସଟି ଲେଖିଲେ ବୋଲି, ପ୍ରଶ୍ନ କରନ୍ତେ, ସେନାଧ୍ୟକ୍ଷ ଉତ୍ତର ଦେଇଥିଲେ, ''ଯୁଦ୍ଧ ଭୂଇଁର ପ୍ରତ୍ୟକ୍ଷ ଅନୁଭୂତିଜନିତ ଗଭୀର ମାନସିକ ଆଘାତର ବଳୟରୁ ନିଜକୁ ମୁକ୍ତ କରିବା ସମ୍ଭବ ହୋଇନଥିଲା ଏଯାଏଁ ।'' ଅନୁଭୂତିର ଆଘାତ ବେଳେବେଳେ ଏତେ ବ୍ୟାପକ ଓ ଗଭୀର ହୁଏ, ଯେଉଁଥିରୁ ନିଜକୁ ମୁକ୍ତ କରି ବାସ୍ତବ ଜଗତକୁ ଫେରି ଆସିବା, ବିଶେଷତଃ ସର୍ଜନାତ୍ମକ ରଚନାରେ ନିଜକୁ ନିୟୋଜିତ କରିବା ସମ୍ଭବ ହୋଇନଥାଏ ।

ସେ ଅନୁଭବର ଶିକାର ହୋଇଛି ଏ ଲେଖକ । ଦୀର୍ଘ ପାଞ୍ଚ ବର୍ଷ ହେଲା ସେ ଅନୁଭୂତିର ବୃଶ୍ଚିକଟି ବାରମ୍ବାର ଦଂଶନ କରିଛି । ଏଇ ଅନୁଭବକୁ ନେଇ ଲେଖାଟିଏ ଲେଖିବାର ସାହସ କୁଳେଇଲି ଯେଉଁଦିନ ସ୍ୱାଧୀନତା ଦିବସ ଅବସରରେ ଆମନ୍ତ୍ରଣ ପତ୍ରଟିଏ ପାଇଲି ଗୋଟିଏ ସାହିତ୍ୟ ସଂସଦର ସମ୍ପାଦକଙ୍କ ପାଖରୁ : 'ସ୍ୱାଧିନତା ଦିବସ ଅବସରରେ ଗୋଟିଏ କବିତା ପାଠୋତ୍ସବର ଆୟୋଜନ କରିଛୁ । ଦୟାକରି ଆପଣଙ୍କର ପ୍ରିୟ କବିଙ୍କର କବିତାଟିଏ ନେଇ କରି ଆସିବେ ଏହି ଉତ୍ସବକୁ ।' ହୁଏତ ଏଇ ପୋଷ୍ଟ କାର୍ଡଟି ପାଞ୍ଚ ବର୍ଷର ଜଡତାକୁ ଜୀବନ୍ୟାସ ଦେବାରେ ଭୂମିକାଟିଏ ଗ୍ରହଣ କରିଥିଲା ।

ପ୍ରିୟ କବିର କବିତା ବାଛିବା ନିଶ୍ଚିତ ଭାବେ ଏକ ମୁସ୍କିଲ୍ ବ୍ୟାପାର । ଜଣେ ମାତ୍ର ପ୍ରିୟ କବି ବାଛିବା ପାଇଁ ଚେଷ୍ଟା କରି ଦ୍ୱନ୍ଦରେ ପଡିଗଲି । ଅନେକ କବି ତ ମୋର ପ୍ରିୟ । ସେଥିରେ ଅଛନ୍ତି, ପ୍ରାଚୀନରୁ ଆରମ୍ଭ କରି ସାମ୍ପ୍ରତିକ କବିବୃନ୍ଦ । କାହାକୁ ବାଛିବି ? ହଠାତ୍ ଅନ୍ଧଟିଏ ବାଡିଟି ପାଇଗଲା ଯେପରି । ହାତ ପାଆନ୍ତାରେ ଥିବା କସ୍ତୁରୀକୁ ଛାଡି ମୁଁ ଯେପରି ମୃଗ ନାଭିର ଅନ୍ୱେଷଣରେ ବାହାରି ପଡିଥିଲି ।

ହଁ, କବି କୁମାର ମହାନ୍ତିଙ୍କ କଥା ହିଁ କହୁଛି । ଆମ ଗହଣରୁ ହଠାତ୍ ସେ ଅନ୍ତର୍ଦ୍ଧାନ ହେବା ପ୍ରାୟ ପାଞ୍ଚବର୍ଷ ହେବାକୁ ବସିଲାଣି । ଓଡିଆ କବିତା ଆକାଶରେ କୁମାର ମହାନ୍ତି ଥିଲେ ଏକ ସମ୍ଭ୍ରାନ୍ତ ଉଚ୍ଚାରଣ । ପ୍ରକାରାନ୍ତରେ ଜଣେ ଦିଗ୍‌ବିଜୟୀ । ସେଇଥିପାଇଁ ତାଙ୍କ

ମୃତ୍ୟୁ ପରେ ଶ୍ରଦ୍ଧାଞ୍ଜଳି ଦେବାକୁ ଯାଇ ବିଶିଷ୍ଟ ସାହିତ୍ୟିକ ଚନ୍ଦ୍ରଶେଖର ରଥ କହିଥିଲେ : ପ୍ରତ୍ୟେକ ସ୍ୱଜନର ମୃତ୍ୟୁରେ ନିଜକୁ ଥରେ ଲେଖା ମରିବାକୁ ପଡେ । ଖୁବ୍ ନିକଟରୁ ଏକ ଘନିଷ୍ଠ ଅନ୍ତରଙ୍ଗ ସ୍ୱର ଓ ହସ ନିରବିଯିବା ତ ମୃତ୍ୟୁ । ତିରିଶି ବର୍ଷ ତଳୁ ମନେହେଉଥିଲା କୁମାର ମହାନ୍ତି ଦିଗ୍‌ବିଜୟ କରିବ । ତା'ର ତୃପ୍ତ ଠାଣି, ଶାଣିତ ଉଚ୍ଚାରଣ ଓ ନିର୍ଭୀକ ପଦକ୍ଷେପରେ ଦିଗ୍‌ବିଜୟୀ ଈଶ୍ୱରର ଲକ୍ଷଣ ଥିଲା, କାହାକୁ ଖାତିର୍ ନକରି ସେ କବିତା ବୋଲୁଥିଲା । ଅନାମ ଠାକୁରଙ୍କୁ ସେ ହିଁ ଠିକ୍ ଅନ୍ତରଙ୍ଗ ଭାବେ ଚିହ୍ନିଥିଲା ।'

କୁମାର ମହାନ୍ତିଙ୍କ ସହ ଥିବା ସ୍ମୃତିକୁ ଗୋଟିଏ ମାତ୍ର ଲେଖାରେ ପ୍ରକାଶ କରିବା ସମ୍ଭବ ନୁହେଁ । ତେବେ ଦୀର୍ଘ କୋଡିଏ ବର୍ଷର ପାରିବାରିକ ତଥା ସାଂସ୍କୃତିକ ବନ୍ଧନର କିଛି ସ୍ମୃତି ଏଠାରେ ପ୍ରକାଶ କରିବା ଅପ୍ରାସଙ୍ଗିକ ହେବ ନାହିଁ । ଅନାମ ଗୋଷ୍ଠୀ ଜନ୍ମ ହେବାର ପ୍ରାୟ ଛଅବର୍ଷ ପରେ ତାଙ୍କ ସହ ମୋର ଭେଟ ହୁଏ ପୁରୀର ଦଇତାପଡା ସାହି ବାସଭବନରେ । କିଛି ଦିନ ଆଗରୁ ତାଙ୍କ କବିତା 'ସଙ୍କରା, ସଙ୍କରା, ସଙ୍କରା, ସଙ୍କରା' ଖୁବ୍ ଚହଳ ସୃଷ୍ଟି କରିଥାଏ । ସବୁବେଳେ ସେ ଚର୍ଚ୍ଚାର ଘେରରେ ହିଁ ରହିଯା'ନ୍ତି । ଇମ୍‌ରଜେନ୍ସି ବେଳେ ତାଙ୍କ କବିତା 'କହନା କଥା, କହନା କଥା/କହିଲେ ଫିଟିବ ଅଡୁଆ ସୂତା/ଫିଟିବ ତାଲା/ବାନ୍ଧି ନେଇଯିବେ ପୋଲିସ୍ ବାଲାରେ ପୋଲିସ୍‌ବାଲା' ପ୍ରତିଟି ବିବେକୀ ଚେତନାରେ ଚାପୁଡା ମାରିଥିଲା । ସେ କେବଳ ପ୍ରତିଷ୍ଠା ବିରୋଧୀ ନଥିଲେ, ଓଡିଆ କବିତାରେ ଛନ୍ଦର ପୁନଃ ପ୍ରୟୋଗ କରିବା ସହ କବିତାକୁ ଉଚ୍ଚାଙ୍ଗ ସ୍ତରକୁ ଉନ୍ନୀତ କରିପାରିଥିଲେ । କବିତା ପଢ଼ିବା ସମୟରେ ସମବେତ ଶ୍ରୋତା ମଣ୍ଡଳୀକୁ ସେ ସ୍ତବ୍ଧ ତଥା ସମ୍ମୋହିତ କରି ରଖୁଥିଲେ । ସେଇଥିପାଇଁ ଅଧିକାଂଶ କବିତା ପାଠୋତ୍ସବରେ ତାଙ୍କ କବିତା ପାଠ ପରେ ଶ୍ରୋତାମାନେ ସଭା ତ୍ୟାଗ କରିବା ଫଳରେ ଏକ ଅଭାବନୀୟ ପରିସ୍ଥିତି ସୃଷ୍ଟି ହେଉଥିଲା ।

ଅଗ୍ରଜର ଶ୍ରଦ୍ଧା, କବିର ସମ୍ମାନ ଆଉ ଓଡିଆର ସ୍ୱାଭିମାନ ଦେଇଥିଲେ ସେ ଏ ଲେଖକକୁ । ଅନେକ ନିଃସଙ୍ଗ ମୁହୂର୍ତ୍ତ ତାଙ୍କ ସହ କଟିଛି । କେତେ ସ୍ୱପ୍ନର ଇମାରତ ଗଢ଼ିଛୁ, କେତେ ତତ୍ତ୍ୱର ତର୍ଜମା କରିଛୁ ତା'ର ହିସାବ ନାହିଁ । ସବୁବେଳେ ସେ ନିଆରା ସ୍ୱପ୍ନ ଦେଖିବାରେ ବ୍ୟସ୍ତ ରହୁଥିଲେ । କଣ୍ଟାବୁଦା ଉପରେ ଚାଲି ନୂଆ ବାଟଟିଏ ତିଆରି କରିବା ତାଙ୍କର ଅଭ୍ୟାସ ଥିଲା । ସେ ସ୍ୱପ୍ନ ବାଣ୍ଟିବା ବେଳେ ଅନେକ ଅବିଶ୍ୱାସ କରୁଥିଲେ । ଗୋଟିଏ ଅଶ୍ୱବିହୀନ ଟାଙ୍ଗାର କଳ୍ପନାକୁ ସମସ୍ତେ ହସି ଉଡେଇ ଦିଅନ୍ତି, କାରଣ ପ୍ରତିଟି ସ୍ୱପ୍ନ ବିକାଳୀକୁ ଏ ସମାଜ ଅନେକ ସମୟରେ ଭୁଲ୍ ବୁଝେ ।

କୁମାର ମହାନ୍ତିଙ୍କ କଥା ମନେପଡିଲେ ଆପଣାଛାଏଁ ମନକୁ ଆସିଯା'ନ୍ତି ବିଶିଷ୍ଟ ବୈଜ୍ଞାନିକ ଥୋମାସ୍ ଏଡିସନ୍ । ଥରେ ନିଜ ଗବେଷଣାରେ ମଜ୍ଜି ଯାଇଥିବା ବେଳେ ଗବେଷଣାଗାରଟିରେ ନିଆଁ ଲାଗି ସଂପୂର୍ଣ୍ଣ ଭାବେ ଏହା ପୋଡି ପାଉଁଶ ହୋଇଗଲା । ଏଡିସନ୍

କିନ୍ତୁ ଖୁବ୍ ଖୁସୀ ଥିଲେ ଏଥିରେ । ତାଙ୍କର ମନ୍ତବ୍ୟ ଥିଲା ଯେ ସେ ଏଣିକି ନୂଆ କରି ତାଙ୍କ ଗବେଷଣା ଚାଲୁ ରଖିବେ ଏବଂ ଅତୀତରେ କରିଥିବା ତ୍ରୁଟିକୁ ଏଣିକି ସୁଧାରିବେ । ଲୋକେ ତାଙ୍କ କଥାରେ ହସିଲେ, ମାତ୍ର ସାରା ବିଶ୍ୱକୁ ସେ ଇଲେକ୍ଟ୍ରିକ୍ ବଲ୍‌ବ ଉପହାର ଦେଲେ ।

'କବିତା ଗାଁକୁ ଯାଉ'ର ପରିକଳ୍ପନା କୁମାର ବାବୁ ବରାବର କରୁଥିଲେ । ଆକାଶକୁ ଛୁଇଁବା ଅର୍ଥ ନୁହେଁ ନିଜର ଚେରକୁ ମାଟିଠୁ ଅଲଗା କରିବା । ଚିନ୍ତା ଆଉ ଚେତନାରେ ତାଙ୍କର ଓଡିଆମୀ ଭରି ରହିଥିଲା । ନିଜ ସଂସ୍କୃତି ପ୍ରତି ଏତେ ଦରଦ ଖୁବ୍ କମ୍ ଲୋକଙ୍କ ପାଖରେ ଥାଏ । ବହୁ ଯୁବ କବିଙ୍କର ସେ ପ୍ରିୟ 'କୁମାର ଭାଇ' ଥିଲେ । ଥରେ ସଂଧ୍ୟାରେ ତାଙ୍କ ଘରେ ମୁଁ ଥାଏ । ହଠାତ୍ ଡ୍ରଇଁ ରୁମ୍‌ରେ ଖୁବ୍ ଜୋର୍‌ରେ ପାଟି ଶୁଭିଲା । ସେଠାରେ ପହଞ୍ଚି ଦେଖେ ସାମ୍ନାରେ ବସିଛନ୍ତି ଜଣେ ଯୁବକ ତଳକୁ ମୁହଁ ପୋତି, କୁମାର ଭାଇ ଏକଦମ୍ ରାଗରେ ଅଗ୍ନିଶର୍ମା । ମୋତେ ଦେଖି କହିବା ଆରମ୍ଭ କଲେ, ''ଏ ବାବୁ ଏବେ କବିତା ଲେଖୁଛନ୍ତି । ତାଙ୍କର ଯୁକ୍ତି ହେଲା କବିତା ଲେଖିବାକୁ ହେଲେ ଜଗନ୍ନାଥ ଦାସଙ୍କ ଭାଗବତ ଆଉ ସାରଳା ଦାସଙ୍କ ମହାଭାରତ କ'ଣ ପଢ଼ିବା ନିହାତି ଦରକାର ?'' ଯୁବକବି ଜଣକ କୁମାର ଭାଇଙ୍କ ଅନ୍ତରଙ୍ଗ ବନ୍ଧୁଙ୍କ ପୁତୁରା ଥିଲେ । ବହୁ ଦିନ ଧରି ଏ କଥା ତାଙ୍କୁ ଆଘାତ ଦେଇଥିଲା ! ମୁଁ ଜାଣିଥିଲି, ଯୁବକବି ଜଣକ ତାଙ୍କ ସମୟକୁ ପ୍ରତିନିଧିତ୍ୱ କରୁଛନ୍ତି । ଏବେ ସେ ଦିଲ୍ଲୀର ଏକ ସଂଭ୍ରାନ୍ତ ସାହିତ୍ୟିକ ସଂସ୍ଥାରେ ସମ୍ପାଦନା କାର୍ଯ୍ୟ କରୁଛନ୍ତି । ବିଡମ୍ବନା ହେଉଛି, ଯେ ନିଜ ଚେରକୁ ଯିଏ ଜାଣିବା ପାଇଁ ଇଛା କରୁନି, ସେ ସମ୍ପାଦନା ପରି ଏକ ଗୁରୁତର ବିଭାଗରେ ହାତ ଦେଲେ କିପରି ?

ଅନେକବାର ଜୀବନର ଜୁଆ ଖେଳରେ ସେ ହାରିଛନ୍ତି । ମାତ୍ର ବିଫଳତାକୁ ସ୍ୱୀକାର କରିବା ତାଙ୍କ ସ୍ୱଭାବରେ ନଥିଲା । ପ୍ରଚଣ୍ଡ ସ୍ୱାଭିମାନୀ କବି କୁମାର ମହାନ୍ତି ବରାବର କହୁଥବଲେ, ''ତୁମ ଅନୁମତି ବ୍ୟତିରେକେ ବିଫଳତା ତୁମ ପାଖ ଛୁଇଁ ପାରିବନି । ଈଶ୍ୱର, ସେଇଥିପାଇଁ ଆରୋହଣ କରିବା ପାଇଁ ଦୁଇଟି ଗୋଡ ଦେଇଛନ୍ତି-ଗୁରୁଣ୍ଡିବା ପାଇଁ ନୁହଁ ।''

ମାନବିକତାର କମ୍ ଅଧିକାରୀ ନଥିଲେ ସେ । ଥରକର କଥା । 'ଶ୍ରୀକ୍ଷେତ୍ର ଚିନ୍ତନଚକ୍ର'ର ଏକ ସନ୍ଧ୍ୟା ଆସରରେ ଆମେ ଦୁହେଁ ଯୋଗ ଦେଇଥାଉ । ସଭାପତିତ୍ୱ କରୁଥା'ନ୍ତି ତତ୍କାଳୀନ ଶିକ୍ଷାମନ୍ତ୍ରୀ ପ୍ରଦୀପ୍ତ କୁମାର ଦାସ, ମଞ୍ଚାସୀନ ଥା'ନ୍ତି ଚିନ୍ତନ ଚକ୍ରର ମୁଖ୍ୟ ତଥା ବିଶିଷ୍ଟ ଗାଳ୍ପିକ ରାଜକିଶୋର ରାୟ ଏବଂ ଜଗନ୍ନାଥ ସଂସ୍କୃତିକୁ ଓଡିଶା ତଥା ଭାରତ ବାହାରେ ପରିଚିତ କରାଉଥିବା ପଣ୍ଡିତ ସଦାଶିବ ରଥଶର୍ମା । ଆଲୋଚନାର ଶୀର୍ଷକ ଥାଏ ମାନବତାବାଦ । ଗାଳ୍ପିକ ରାଜକିଶୋର ରାୟ ସ୍ୱାଗତ ଭାଷଣରେ ତାଙ୍କର ପୂର୍ବତନ ଛାତ୍ର ତଥା ଶିକ୍ଷାମନ୍ତ୍ରୀ ପ୍ରଦୀପ୍ତ ବାବୁଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠୁଥା'ନ୍ତି । ଭାଷଣ ପର୍ବ ଚାଲିଥାଏ । ହଠାତ୍ ସାମ୍ନାରେ ବସିଥିବା ଶ୍ରୋତାଙ୍କ ମୂର୍ଚ୍ଛାରୋଗ ଆରମ୍ଭ ହୋଇଗଲା ।

ସେ ଥିଲେ ଜଣେ ଅପସ୍ମାର ରୋଗୀ । କିଛି ସମୟ ଧରି ରୋଗୀଟି ତଳେ ପଡି ଛଟପଟ ହେଉଥାଏ । ହଠାତ୍ କୁମାର ମହାନ୍ତି ରୋଗୀ ପାଖକୁ ଦୌଡି ଆସି ତା'ର ପାଦର ବୁଢ଼ା ଆଙ୍ଗୁଠିକୁ ଚିପି ଧରିଲେ । କିଛି ସମୟ ପରେ ଲୋକଟି ତା'ର ସଂବିତ୍ ଫେରି ପାଇଲା । ପରେ ଅବଶ୍ୟ ଲୋକଟିକୁ ତା'ର ଘରେ ପହଞ୍ଚାଇବାର ବ୍ୟବସ୍ଥା କରାଯାଇଥିଲା ।

ଅନେକ ସମୟରେ ତାଙ୍କ ସହ ଏ ଲେଖକର ମତାନ୍ତର ଘଟୁଥିଲା କୌଣସି ତାତ୍ତ୍ୱିକ ବିଶ୍ଳେଷଣକୁ ନେଇ । ମାତ୍ର କେବେବି ଏହା ଆମର ମାନସିକତା ଅଥବା ନିବିଡ ସମ୍ପର୍କକୁ ପ୍ରଭାବିତ କରୁନଥିଲା । ଅଶ୍ରୁତର୍ପଣ କରିବାକୁ ଯାଇ ତାଙ୍କ ସମ୍ପର୍କରେ ସୁପରିଚିତ ଔପନ୍ୟାସିକ ବିଭୂତି ପଟ୍ଟନାୟକ ଲେଖିଥିଲେ : 'ଓଡିଶାରେ କବିତା ଲେଖକ ଲେଖିକାମାନଙ୍କ ସଂଖ୍ୟାର ହିସାବ ନାହିଁ, କିନ୍ତୁ ସେମାନେ ସମସ୍ତେ କବି ନୁହଁନ୍ତି, କେହି କେହି କବି । ବହୁ ଗୂଢ଼ ରହସ୍ୟବାସୀ ଭାବନା ସାଧାରଣ ଲୋକ ବୁଝିବାର ଭାଷାରେ, ଶ୍ରୁତି-ମଧୁର ଛନ୍ଦରେ ତମ କବିତାରେ ଦୋଳି ଖେଳୁଥିଲେ । ଏ ଦୃଷ୍ଟିରୁ ତମେ ଥିଲ ଅନନ୍ୟ ସାଧାରଣ କାବ୍ୟ ପୁରୁଷ । ତମ କଣ୍ଠରୁ ତମ କବିତାର ଆବୃତ୍ତି ଯେ ନ ଶୁଣିଛି ସେ କ'ଣ ହରାଇଛି; ତାହା ବୁଝାଇ କହିବା କଷ୍ଟ ।' ସବୁଠୁ ଆଶ୍ଚର୍ଯ୍ୟର କଥା, କୁମାର ମହାନ୍ତିଙ୍କ କବିତାର ଯଥାର୍ଥ ମୂଲ୍ୟାୟନ ପାଇଁ, ଅନାମ-କାବ୍ୟ ଆନ୍ଦୋଳନର ଆଭିମୁଖ୍ୟ ସମ୍ପର୍କରେ ଆଲୋଚନା କରିବା ଲାଗି ଜଣେ ହେଲେ ସାହିତ୍ୟ ସମାଲୋଚକ ଆଗ୍ରହ ଦେଖାଇ ନାହାନ୍ତି । ଅବଶ୍ୟ ଦୁଃଖ କରିବାର କିଛି ନାହିଁ ଏଥିରେ । ଆମ ସାହିତ୍ୟାକାଶରେ ସମାଲୋଚକ ଅପେକ୍ଷା ଚାଟୁକାର ଓ ନିନ୍ଦୁକମାନଙ୍କର ବେଶୀ ପରିମାଣରେ ଆବିର୍ଭାବ । ଏ ବିପୁଳାଚ ପୃଥ୍ୱୀରେ କେହି ନା କେହି ଦିନେ କୁମାର ମହାନ୍ତିଙ୍କ କବିତାର ମୂଲ୍ୟାୟନ କରିବ ସେ ବିଶ୍ୱାସ ଏ ଲେଖକର ଅଛି ।

କୁମାର ମହାନ୍ତିଙ୍କ ବିରଳ ବନ୍ଧୁତ୍ୱ ଓ ଅନାବିଳ ସ୍ନେହକୁ ପାଶୋରିବା ସମ୍ଭବ ନୁହେଁ । କେହି ଜଣେ କହିଥିଲେ-ଦୁନିଆରେ ଦୁଇ ପ୍ରକାରର ବନ୍ଧୁ ମିଳନ୍ତି । ପ୍ରଥମ ପ୍ରକାରର ପ୍ରକୃତ ବନ୍ଧୁ ଖୁବ୍ ବିରଳ, ଠିକ୍ ହୀରା ଖଣି ପରି । ଅନ୍ୟ ପ୍ରକାର ବନ୍ଧୁଙ୍କ ସଂଖ୍ୟା ଖୁବ୍ ବେଶୀ । ବସନ୍ତର ଝରାପତ୍ର ପରି ସବୁଠି, ସବୁବେଳେ ମିଳିଯା'ନ୍ତି । ବାସ୍ତବିକ୍ କୁମାର ମହାନ୍ତି ମୋ ପାଇଁ ଥିଲେ ହୀରା ଖଣିଟିଏ ।

ଆଉ ସେଇଥିପାଇଁ ସେଦିନ ଅପରାହ୍ନରେ ତାଙ୍କ କବିତାଟିଏ ଧରି ମୁଁ ସାହିତ୍ୟ ଉତ୍ସବକୁ ବାହାରି ପଡିଲି ।

*ଅନୁପମ ଭାରତ ୯. ୧୦. ୨୦୦୦*

# ପରିସଂଖ୍ୟାନ ଓ ସତ୍ୟତା

କିଛିଦିନ ପୂର୍ବେ ଓଡିଶାରେ ଶିଶୁ ମୃତ୍ୟୁହାର ସମ୍ପର୍କରେ ଏକ ବିବରଣୀ ପ୍ରକାଶ ପାଇଥିଲା । ଏହି ସରକାରୀ ବିବରଣୀରେ ଦର୍ଶାଯାଇଥିଲା ଯେ ପ୍ରତି ଏକ ହଜାର ଶିଶୁଙ୍କ ମଧ୍ୟରେ ପ୍ରାୟ ଅଠାନବେ ଜଣ ଶିଶୁଙ୍କର ଅକାଳ ମୃତ୍ୟୁ ହୋଇଥାଏ ଆମ ରାଜ୍ୟରେ । ମାତ୍ର ଏହି ଉକ୍ତିକୁ ଖଣ୍ଡନ କରି ଏକ ବେସରକାରୀ ସଂସ୍ଥା ଉକ୍ତ ମୃତ୍ୟୁହାର ଦୁଇଗୁଣ ବୋଲି ପ୍ରକାଶ କରିଛନ୍ତି ।

ପ୍ରତିଦିନ ଖବର କାଗଜର ପୃଷ୍ଠା ମଣ୍ଡନ କରି ରାଷ୍ଟ୍ର ତଥା ରାଜ୍ୟର ବିଭିନ୍ନ ଖବର ପ୍ରକାଶିତ ହୋଇଥାଏ । ଏଥିରେ ଅନେକ ପରିସଂଖ୍ୟାନ ମଧ୍ୟ ପାଠକଙ୍କ ଅବଗତି ନିମନ୍ତେ ଦିଆଯାଇଥାଏ । ମାତ୍ର ଅଧିକାଂଶ ସମୟରେ ସରକାରଙ୍କ ତରଫରୁ ଦିଆଯାଇଥିବା ପରିସଂଖ୍ୟାନ ଅପେକ୍ଷା ବେସରକାରୀ ସଂସ୍ଥା ଦ୍ୱାରା ଦିଆଯାଇଥିବା ପରିସଂଖ୍ୟାନକୁ ଜନସାଧାରଣ ନିଷ୍ପକ୍ଷ ଓ ଅଧିକ ବିଶ୍ୱାସଯୋଗ୍ୟ ବୋଲି ମନେ କରିଥା'ନ୍ତି । ସେମାନଙ୍କର ଧାରଣା ସରକାର ନିଜର ଦୁର୍ବଳତାକୁ ଘୋଡାଇବାକୁ ଯାଇ ଏପରି ପରିସଂଖ୍ୟାନ ହିଁ ବ୍ୟବହାର କରନ୍ତି ।

ପ୍ରଗତି ପାଇଁ ଆବଶ୍ୟକୀୟ ପଦକ୍ଷେପ ନେବାରେ ପରିସଂଖ୍ୟାନକୁ ହିଁ ମୁଖ୍ୟ ଆୟୁଧ ଭାବେ ବ୍ୟବହାର କରାଯାଏ । ମାତ୍ର ଆମ ଦେଶରେ 'ପରିସଂଖ୍ୟାନ'ର ବ୍ୟବହାର ଅପେକ୍ଷା ଅପବ୍ୟବହାର ବେଶି ହୋଇଥାଏ । ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ବେଞ୍ଜାମିନ୍ ଡେଜ୍ରାଏଲିଙ୍କ ଉକ୍ତି ବି ସେଥିଲାଗି ବାରମ୍ବାର ଦୋହରାଯାଏ : ତିନି ପ୍ରକାରର ମିଛ ଅଛି । ସେମାନେ ହେଲେ 'ମିଛ', 'ଡାହାମିଛ' ଏବଂ 'ପରିସଂଖ୍ୟାନ' । ପରିସଂଖ୍ୟାନର ସହାୟତାରେ ମିଛକୁ ସତ ଓ ସତକୁ ମିଛ ବୋଲି ଖୁବ୍ ସହଜରେ ପ୍ରମାଣିତ କରିପାରିବାର କଳା ଆମେ ଅନେକ ଦିନରୁ ହାସଲ କରି ପାରିଛୁ ।

ଏବେ ଦେଶରେ କେତେ ପରିମାଣରେ ଖାଦ୍ୟଶସ୍ୟ ମହଜୁଦ୍ ଅଛି ତା'ର ହିସାବ ବାରମ୍ବାର ଖବରକାଗଜ ଜରିଆରେ ଆମକୁ ଜଣାଇ ଦିଆଯାଉଛି । ଏପରିକି ଦାରିଦ୍ର୍ୟର ସୀମାରେଖା ତଳେ ଜୀବନଯାପନ କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ମଧ୍ୟ ଆମ ପାଖରେ ଅଛି । ଅଥଚ କେବଳ 'କାଶୀପୁର' ନୁହେଁ, ଦେଶର ଅନେକ ସ୍ଥାନରେ ଲୋକେ ଖାଦ୍ୟ ବିନା ମୃତ୍ୟୁକୁ ଆଲିଙ୍ଗନ କରୁଛନ୍ତି । ଏପରି କାହିଁକି ଘଟୁଛି ? ପ୍ରାୟ ଶହେ ବର୍ଷ ତଳେ ବ୍ରିଟେନ୍‌ର

ରାଜନୀତିଜ୍ଞ ଡାଭିଡ ଲଏଡ୍ ଜର୍ଜ କହିଥିବା ବକ୍ତବ୍ୟଟିର ଆଜି ବି ପ୍ରାସଙ୍ଗିକତା ରହିଥିବାର ମନେ ହୁଏ : 'ପରିସଂଖ୍ୟାନରେ ତମେ ଭୋକିଲା ଲୋକର ପେଟ ଭର୍ତ୍ତିକରି ପାରିବନି ।'

'ପରିସଂଖ୍ୟାନ' ଏପରି ଏକ ବତୀଖୁଣ୍ଟ ଯାହାକୁ ଜଣେ ମଦ୍ୟପ ତା'ର ସାହାରା ଭାବେ ଗ୍ରହଣ କରେ, ମାତ୍ର ଜଣେ ଚାଲାକ୍ ନାଗରିକ ଉକ୍ତ ବତୀଖୁଣ୍ଟରେ ଝୁଲୁଥିବା ଆଲୋକକୁ ତା' ଚାରିପାଖର ଅନ୍ଧକାରକୁ ଦୂର କରିବାରେ ନିୟୋଜିତ କରେ ।' ସଂଗୃହୀତ ପରିସଂଖ୍ୟାନର ସାମଗ୍ରିକ ବିଶ୍ଳେଷଣ ଦ୍ୱାରା ହିଁ ଆମେ ଅସଲ ସମସ୍ୟାର ଲକ୍ଷଣ ନିରୂପଣ କରିପାରିବା ଏବଂ ସମସ୍ୟାର ନିରାକରଣ ପାଇଁ ଠିକ୍ ପଦକ୍ଷେପ ନେଇ ପାରିବା । ଉଦାହରଣଟିଏ ଦିଆଯାଇପାରେ । ପରିସଂଖ୍ୟାନରୁ ଜଣା ପଡିଲା, ଗତବର୍ଷ ତୁଳନାରେ ଦେଶରେ ଚୋରି, ଧର୍ଷଣ ଓ ହତ୍ୟାକାଣ୍ଡ ବେଶି ଘଟିଛି ଏ ବର୍ଷ । ପୋଲିସ୍‌ର ଦୁର୍ବଳତାକୁ ଦୋଷ ଦେଇ ଆମେ ସମସ୍ତେ ଖୁସି । ମାତ୍ର ଏହା ସମସ୍ୟାର ଅସଲ ନିରାକରଣ ନୁହେଁ । ସାମଗ୍ରିକ ଭାବେ ଲକ୍ଷ୍ୟ କଲେ ଘଟଣାଟି ସ୍ପଷ୍ଟ ହୋଇଯିବ: ଗତ ବର୍ଷ ତୁଳନାରେ ପୋଲିସ ବିଭାଗ ପାଇଁ କେତେ ଅଧିକ ବଜେଟ୍ ଥିଲା, କେତେ କର୍ମଚାରୀ ନିଯୁକ୍ତି ପାଇଛନ୍ତି ଏବଂ ଉପରୋକ୍ତ ଅପରାଧକୁ ରୋକିବା ପାଇଁ ଗତ ବର୍ଷ କି ପ୍ରକାର ପଦକ୍ଷେପ ନିଆଯାଇଥିଲା, ସେ ସବୁର ତୁଳନାତ୍ମକ ବିଶ୍ଳେଷଣ ମଧ୍ୟ ଦରକାର । ପୋଲିସ୍‌କୁ ଦୋଷ ଦେଇ ସମସ୍ୟାଟିକୁ ସାମ୍ନା ନ କରିବା ଏକ ପାରମ୍ପରିକ ମାନସିକତା । ଏ ପ୍ରାଚୀନ ମାନସିକତାକୁ ପରିହାର କରିବାକୁ ପଡିବ । ପ୍ରସଙ୍ଗକ୍ରମେ ଗପଟିଏ ମନେ ପଡୁଛି । ଏକ ଆଶ୍ରମରେ ଜଣେ ଋଷି ଏବଂ ତାଙ୍କର ଶିଷ୍ୟମାନେ ଧ୍ୟାନ କରୁଥିଲେ । ସମୟ ଅତିକ୍ରାନ୍ତ ଅପରାହ୍ଣ । ମାତ୍ର ପ୍ରତିଦିନ ଧ୍ୟାନ ସମୟରେ ଆଶ୍ରମର ବିରାଡିଟି ଆସି ପାଖରେ ତା'ର ଲାଞ୍ଜ ହଲାଇ ଘଷି ହେଉଥିବା ଫଳରେ ଋଷିଙ୍କର ଧ୍ୟାନଭଗ୍ନ ହେଉଥିଲା । ଅଗତ୍ୟା ଅନ୍ୟ କୌଣସି ଉପାୟ ନ ପାଇ ଋଷି ପ୍ରବର ଉକ୍ତ ବିରାଡିଟିକୁ ଧ୍ୟାନ ସମୟରେ ନିକଟସ୍ଥ ବୃକ୍ଷମୂଳେ ବାନ୍ଧି ରଖିବା ପାଇଁ ତାଙ୍କର ଶିଷ୍ୟମାନଙ୍କୁ ଆଦେଶ ଦେଲେ । ତାହା ହିଁ ପାଳନ କରାଗଲା । ପ୍ରତିଦିନ ଧ୍ୟାନ ସମୟରେ ବିରାଡିଟିକୁ ବାନ୍ଧି ରଖାଗଲା ନିକଟସ୍ଥ ବୃକ୍ଷ ମୂଳେ ।

ଏଇପରି ବର୍ଷ ବର୍ଷ ବିତିଗଲା । କାଳକ୍ରମେ ଋଷି ବୁଢ଼ା ହେଲେ ଓ ତାଙ୍କର ମୃତ୍ୟୁ ପରେ ଶିଷ୍ୟମାନଙ୍କ ମଧ୍ୟରେ ନୂତନ ଋଷି ବଛା ହେଲେ । ସେଇପରି ଧ୍ୟାନ ଚାଲିଲା ଏବଂ ପୂର୍ବପରି ଶିଷ୍ୟମାନେ ବିରାଡିଟିଏ ଧରିଆଣି ତାକୁ ନିକଟସ୍ଥ ବୃକ୍ଷରେ ବାନ୍ଧି ରଖିଲେ ।

ଏହା ଏପରି ଏକ ପରମ୍ପରାରେ ପରିଣତ ହୋଇ ଯାଇଥିଲା ଯେ କୌଣସି ଜଣେ ହେଲେ ଶିଷ୍ୟ ଏପରି କାହିଁକି କରାଯାଉଛି ବୋଲି ପ୍ରଶ୍ନ ମଧ୍ୟ କଲେ ନାହିଁ । ଯେଉଁ ବିରାଡିଟିକୁ ବାନ୍ଧି ରଖିବା ଏକ ଆବଶ୍ୟକତା ଏକଦା ଥିଲା, ତାହା କାଳକ୍ରମେ ଅନାବଶ୍ୟକ ହୋଇ ସାରିଥିଲା ।

ଏବେ ସରକାରୀ ସ୍ତରରେ ଚାଲିଥିବା ପରିସଂଖ୍ୟାନଟି ସେଇ ପୁରୁଣା ବିରାଡିଟି ଭଳି କେବଳ ଆବଶ୍ୟକତା ନୁହେଁ ତା'ର ବିଶ୍ୱାସନୀୟତା ମଧ୍ୟ ହରାଇ ବସିଛି । ଏହା କେବଳ ଅର୍ଥହୀନ କିଛି ଗାଣିତିକ ସଂଖ୍ୟାରେ ପରିଣତ ହୋଇଛି । ସେଇଥି ପାଇଁ ଆମେ ଓଡିଶାର କାଶୀପୁରରେ ଅନାହାର ଅଥବା ଅଖାଦ୍ୟ ଜନିତ ମୃତ୍ୟୁକୁ ଦୁଃଖଦାୟକ ଘଟଣା ବୋଲି ଅଭିହିତ କରିବା ବେଳେ ଆମେରିକାର 'ୱାର୍ଲଡ୍ ଟ୍ରେଡ୍ ସେଣ୍ଟର'ରେ ଆତଙ୍କବାଦୀଙ୍କ ଦ୍ୱାରା ମରିଥିବା ବ୍ୟକ୍ତିଙ୍କ ସଂଖ୍ୟାକୁ 'ପରିସଂଖ୍ୟାନ' ପର୍ଯ୍ୟାୟଭୁକ୍ତ କରୁଛୁ । ଏକଦା ଋଷିଆର ରାଜନୀତିଜ୍ଞ ଷ୍ଟାଲିନ୍ ଥରେ କହଥିଲେ: ଗୋଟିଏ ମାତ୍ର ମୃତ୍ୟୁ ହିଁ ଦୁଃଖଦ ବ୍ୟାପାର ଏବଂ ଲକ୍ଷ ଲକ୍ଷ ମୃତ୍ୟୁ ହିଁ ପରିସଂଖ୍ୟାନ ।' ମାତ୍ର ପରିସଂଖ୍ୟାନ ଅପେକ୍ଷା ସତ ଘଟଣା ଯେ ଖୁବ୍ ବଡ ପାଟିରେ ନିଜକୁ ଜାହିର କରିପାରେ, ଏକଥା ଆମେ ଭୁଲିଯିବା ଉଚିତ ନୁହେଁ ।

*ସଂବାଦ ୨୯.୯.୦୧*

# ସନ୍ତ୍ରାସବାଦ

ଆମେରିକୀୟ ପ୍ରବାଦଟିଏ ମନେ ପଡୁଛି : 'ଗୋଟିଏ ଭୂଖଣ୍ଡର ସନ୍ତ୍ରାସବାଦୀ ଅନ୍ୟ ଏକ ଭୂଖଣ୍ଡର ଦେଶପ୍ରେମୀ ।' ତେବେ ଏକଥା ସ୍ୱୀକାର କରିବାକୁ ପଡିବ ଯେ 'ଅଭିଯୋଗ' ଓ 'ପକ୍ଷପାତ' ହିଁ ହେଉଛି ସବୁ 'ସନ୍ତ୍ରାସବାଦ'ର ମଞ୍ଜି । ଏଇ ପରିପ୍ରେକ୍ଷୀରେ, ଆଫଗାନିସ୍ତାନର 'ଅଲ୍-କଏଦା', କାଶ୍ମୀରରେ ସକ୍ରୀୟ ଥିବା 'ଲସ୍କର-ଇ-ତୋଇବା', ସିଂହଳ ଦ୍ୱୀପର 'ଏଲ୍.ଟି.ଟି.ଇ' ଠାରୁ ଆରମ୍ଭ କରି ଆନ୍ଧ୍ର ଓ ଓଡିଶାର ଦକ୍ଷିଣ ସୀମାରେ ଆତଙ୍କ ସୃଷ୍ଟି କରିଥିବା 'ନକ୍ସାଲବାଦୀ'ଙ୍କୁ ବିଚାର କରାଯାଇପାରେ ।

'ଅଭିଯୋଗ' ଓ 'ପକ୍ଷପାତ'ର କେତୋଟି ଉଦାହରଣ ଦିଆଯାଇପାରେ । ସବୁ ବିପ୍ଳବୀ ଓ ସନ୍ତ୍ରାସବାଦୀଙ୍କ ଜୀବନର ଗୋଟିଏ ଗୋଟିଏ ଘଟଣା ହିଁ ସେମାନଙ୍କ ଜୀବନର ଗତିପଥକୁ ବଦଳାଇ ଦେଇଥିବାର ନଜିର୍ ଆମ ପାଖରେ ଅଭାବ ନାହିଁ । ଏଇମାନଙ୍କ ଭିତରୁ ମହାତ୍ମା ଗାନ୍ଧୀ, ହିଟଲର, ପ୍ରଭାକରନ୍ ଏବଂ ଓସାମା ବିନ୍ ଲାଦେନ୍‌ଙ୍କ ଜୀବନଗାଥା ପର୍ଯ୍ୟାଲୋଚନା କରାଯାଇପାରେ ।

ଦକ୍ଷିଣ ଆଫ୍ରିକାରେ ଥିବା ସମୟରେ ଥରେ ମହାତ୍ମାଗାନ୍ଧୀ ଏଇ ନିଷ୍କର୍ଷରେ ପହଞ୍ଚିଗଲେ ଯେ ପବିତ୍ର ବାଇବେଲ୍ ହିଁ ସମସ୍ତ ସମସ୍ୟାର ସହଜ ସମାଧାନ ଦେଇପାରିବ । ବାଇବେଲ ପଢ଼ି ଗଭୀର ଭାବେ ପ୍ରଭାବିତ ହେବା ପରେ ଗାନ୍ଧୀ ଖ୍ରୀଷ୍ଟଧର୍ମ ଗ୍ରହଣ ଉଦ୍ଦେଶ୍ୟରେ ନିକଟସ୍ଥ ଏକ ଚର୍ଚ୍ଚରେ ପହଞ୍ଚିଲେ । ସମବେତ ପ୍ରାର୍ଥନା ଚାଲିଥାଏ । ପ୍ରାର୍ଥନା ଶେଷରେ ଯେତେବେଳେ ମହାତ୍ମା ଗାନ୍ଧୀ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ଲାଗି ଚର୍ଚ୍ଚର ଫାଦରଙ୍କୁ ଅନୁରୋଧ କଲେ, ସେତେବେଳେ ଚର୍ଚ୍ଚର ଫାଦର ମହାତ୍ମା ଗାନ୍ଧିଙ୍କୁ ଜବାବ ଦେଲେ : କଳା ଲୋକଙ୍କୁ ଖ୍ରୀଷ୍ଟଧର୍ମରେ ଏଠି ଦିକ୍ଷୀତ କରାଯାଏନା । ଏହା ଗୋରା ଲୋକଙ୍କ ଚର୍ଚ୍ଚା ତମକୁ ଅଳ୍ପ ଦୂରରେ ଥିବା ଅନ୍ୟ ଏକ ଚର୍ଚ୍ଚକୁ ଯିବାକୁ ହେବ ।'' କଳା ଓ ଗୋରାଙ୍କୁ ନେଇ ଚର୍ଚ୍ଚରେ ଥିବା ଏଇ 'ପକ୍ଷପାତ' ନୀତି ମହାତ୍ମା ଗାନ୍ଧୀଙ୍କୁ ଏପରି ଉତ୍‌କ୍ଷିପ୍ତ କରିଥିଲା ଯେ ସେ ସାରା ଜୀବନ ଆଉ କୌଣସି ଚର୍ଚ୍ଚକୁ ଯାଇ ନଥିଲେ ।

'ହିଟଲର୍'ଙ୍କ କାହାଣୀ ବିଶ୍ୱବିଦିତ । ୧୯୧୩ ମସିହାରେ ଜର୍ମାନର ମ୍ୟୁନିକ୍ ସହରରେ ପହଞ୍ଚିବା ପରେ ଜଣେ ଇହୁଦୀ ତାଙ୍କୁ ଠକିବ ବୋଲି ତାଙ୍କର ଏକ ଭ୍ରାନ୍ତ ଧାରଣା ହୋଇଥିଲା ଏବଂ ସେଇଦିନଠୁ ସେ ପୃଥିବୀ ବକ୍ଷରୁ ଇହୁଦୀମାନଙ୍କୁ ନିର୍ମୂଳ କରିବାର ବଜ୍ର

ଶପଥ ନେଇଥିଲେ ।

ଏକଦା ମ୍ୟୁନିକ୍ ସହରରେ କଠିନ ପରିଶ୍ରମ କରି କାଳାତିପାତ କରୁଥିବା ହିଟଲର ନିଜକୁ ପ୍ରବଳ ଶୀତରୁ ରକ୍ଷା କରିବା ଲାଗି ସହରର ଏକ ଇହୁଦୀଙ୍କ ଘରେ ପହଞ୍ଚିଲେ । ଠିକ୍ ସେତିକିବେଳେ ଗୃହକର୍ତ୍ତା ତାଙ୍କ ପୋଷା କୁକୁରକୁ ଦୁଇଟି କମ୍ବଳରେ ଘୋଡାଇ ଦେଇ ଶୁଆଉଥା'ନ୍ତି । ହିଟଲର ଗୃହକର୍ତ୍ତାଙ୍କୁ ସେଇ କମ୍ବଳରୁ ଗୋଟିଏ ଦେବା ପାଇଁ ଅନୁରୋଧ କଲେ । ଗୃହକର୍ତ୍ତା ଖୁବ୍ ରୁକ୍ଷ ଭାବରେ କହିଲେ : ମୋ' କୁକୁରଠୁ କ'ଣ ତମର ମୂଲ୍ୟ ବେଶି ? ଏଇ ଅପମାନ ହିଁ ପରବର୍ତ୍ତୀ କାଳରେ ରୂପନେଲା ପ୍ରତିହିଂସାରେ । ସମଗ୍ର ଦୁନିଆ ସ୍ତମ୍ଭୀଭୂତ ହୋଇଗଲା ହିଟଲରଙ୍କ ଦୌରାତ୍ମ୍ୟରେ ।

ନିକଟରେ ଅନୀତା ପ୍ରତାପଙ୍ଗ ପ୍ରକାଶିତ ବହି 'ଆଇଲାଣ୍ଡ ଅଫ୍ ବ୍ଲଡ' ପଢ଼ିବାର ସୁଯୋଗ ମିଳିଲା । ଶ୍ରୀଲଙ୍କାରେ ତାମିଲ୍ ଉଗ୍ରବାଦୀ ନେତା ପ୍ରଭାକରନ୍‌ଙ୍କ କୈଶୋର ଜୀବନର ଘଟଣା ମଧ୍ୟ ଏଠି ଉଲ୍ଲେଖ କରାଯାଇପାରେ । ଛାତ୍ର ଜୀବନରେ ଖୁବ୍ ଶାନ୍ତ ଓ ସରଳ ଥିବା ପ୍ରଭାକରନ୍ ଏକଦା ତାଙ୍କର ଜଣେ ବନ୍ଧୁଙ୍କ ବିଧବା ମା'ଠାରୁ ସିଂହଳୀଙ୍କ ଦ୍ୱାରା ଅତ୍ୟାଚାରିତ ହୋଇଥିବା ତାମିଲଙ୍କ କାହାଣୀ ଶୁଣି ବ୍ୟଥିତ ହୋଇଉଠନ୍ତି । ଧୀରେ ଧୀରେ ସିଂହଳୀ ବିଦ୍ୱେଷୀ ପ୍ରଭାକରନ୍ ଯୁବକ ଅବସ୍ଥାରେ ଜଣେ ବ୍ରାହ୍ମଣ ପୂଜକ ହେବା ପରିବର୍ତ୍ତେ ସନ୍ତ୍ରାସବାଦୀ ହୋଇ ଉଠନ୍ତି । କେବଳ ତାମିଲମାନଙ୍କ ସ୍ୱାର୍ଥ ରଖିବା ଲାଗି । ଠିକ୍ ସେଇପରି ଏବେ ବିଶ୍ୱର ଘରେ ଘରେ ପରିଚିତ ସନ୍ତ୍ରାସବାଦୀ 'ଓସାମା ବିନ୍ ଲାଦେନ୍'ଙ୍କ ଜୀବନକୁ ବିଶ୍ଳେଷଣ କଲେ, କିଶୋର ବୟସରେ ଖୁବ୍ ଲାଜକୁଳା ଥିବା ବାଳକଟି କିପରି ବିଶ୍ୱରେ ସନ୍ତ୍ରାସବାଦର କାୟା ବିସ୍ତାର କରିପାରେ-ଭାବିବାକୁ ଆଶ୍ଚର୍ଯ୍ୟ ଲାଗେ । ସାଉଦିଆରବର ଏକ ସ୍ୱଚ୍ଛ ପରିଚିତ ରାଜପରିବାରରୁ ଆସିଥିବା 'ଲାଦେନ୍' ନିଜ ଦେଶରେ ବହୁକାଳ ଧରି ପ୍ରଭାବ ବିସ୍ତାର କରିଥିବା 'ଆମେରିକା' ପ୍ରତି ବିଦ୍ୱେଷ ଭାବ ପୋଷଣ କରିବା ସହ ଏହାର ଚରମ ଶତ୍ରୁ ହୋଇପଡିଲା । ପରବର୍ତ୍ତୀ ଧ୍ୱଂସଲୀଳା ଏବେ କେବଳ ଇତିହାସ ।

ଦୁର୍ବଳ ବିଦ୍ରୋହ କରେ ସମକକ୍ଷ ହେବା ପାଇଁ । ସମକକ୍ଷ ଥିବା ବ୍ୟକ୍ତି ବିଦ୍ରୋହ କରେ ଅନ୍ୟଠୁ ବଳୀୟାନ୍ ହେବାକୁ । ଏପରି ମାନସିକତା ଥିବା ବ୍ୟକ୍ତି ବିଦ୍ରୋହ କରିପାରେ ବୋଲି ଦାର୍ଶନିକ ଆରିଷ୍ଟୋଟଲ୍ କହିଛନ୍ତି ।

ମାତ୍ର ସନ୍ତ୍ରାସବାଦର ମୂଳ ଥାଏ 'ଅଜ୍ଞତା' ପାଖରେ । ପ୍ରକୃତ ଶିକ୍ଷା ହିଁ ମଣିଷକୁ ଶିଖାଇଥାଏ ସହନଶୀଳତା, କରୁଣା ଓ ସଂବେଦନଶୀଳତା । ସନ୍ତ୍ରାସବାଦୀର କୌଣସି ଧର୍ମ ନଥାଏ, କେବଳ ଧର୍ମାନ୍ଧତାର ଆହ୍ୱାନ ଦେବା ଛଡା । ପବିତ୍ର କୋରାନ୍ ଗ୍ରନ୍ଥରେ ନିଶାଦ୍ରବ୍ୟ ସେବନ ପ୍ରଚଳନକୁ ନିଷେଧ କରାଯାଇଛି । ଅଥଚ ତାଲିବାନ୍‌ର ସନ୍ତ୍ରାସବାଦୀ

ଅଫିମ ଓ ହିରୋଇନ୍ ପରି ବିଷାକ୍ତ ନିଶାଦ୍ରବ୍ୟ ଚାଷ କରିବା ସହ ବ୍ୟବସାୟ କରି ଅଜସ୍ର ଅର୍ଥ ଉପାର୍ଜନ କରୁଛନ୍ତି । ସେମାନେ ଯାହା ପ୍ରଚାର କରୁଛନ୍ତି ତାହା ଅଭ୍ୟାସ କରୁନାହାନ୍ତି । ମାତ୍ର ସେତିକି ଫରକ୍ ଯୋଗୁଁ ଗାନ୍ଧିଜୀ 'ମହାତ୍ମା' ହୋଇ ବିଶ୍ୱ ବନ୍ଦନୀୟ ହୋଇପାରିଲେ, ମାତ୍ର ହିଟ୍ଲର୍, ପ୍ରଭାକରନ ଏବଂ ଲାଦେନ ଘୃଣାର ପାତ୍ର ହୋଇ ଇତିହାସରେ ରହିଗଲେ । ପୋଲିସ୍ ପରି ଆତଙ୍କ ସୃଷ୍ଟି କରିବା ସେମାନଙ୍କ ଧର୍ମ ହୋଇଥିବାରୁ ଏକଦା ଔପନ୍ୟାସିକ ଯୋଶେଫ୍ କନ୍ରାଡ୍ କହିଥିଲେ : ସନ୍ତ୍ରାସବାଦୀ ଓ ପୋଲିସ୍ ଗୋଟିଏ ଟୋକେଇରୁ ଆସିଛନ୍ତି । (The terrorist and the policeman both come from the same basket).

ଆତଙ୍କ ନୁହେଁ ପ୍ରେମକରି ମଣିଷର ହୃଦୟକୁ ଜୟ କରାଯାଇପାରେ - ଅନ୍ତତଃ ଏଇ ବ୍ୟାକଟିର ମର୍ମ ସେମାନଙ୍କୁ କେହି ଯଦି ବୁଝାଇ ପାରନ୍ତା, ପୃଥିବୀର ଭାଗ୍ୟ ବଦଳି ଯା'ନ୍ତା ।

*ସମ୍ବାଦ*

# ଆବିଷ୍କାର

କ୍ଳାନ୍ତ ହୋଇ ସେ ଅଫିସ୍‌ରୁ ଫେରିଥାନ୍ତି । ପତ୍ନୀ ବଜାରକୁ ଯାଇଥାନ୍ତି ଏକା ଏକା ବିଶେଷ ଘରୋଇ କାମରେ । ଘରେ ଏକୁଟିଆ ଖେଳୁଥାଏ ଛୋଟ ପୁଅଟି 'ଆୟା' ସାଙ୍ଗରେ । ଏଥର ସେ ଘରକୁ ଫେରିବା ପରେ 'ଆୟା' ମଧ୍ୟ ପୁଅଟିକୁ ଛାଡି ଦେଇ ତା ଘରକୁ ଫେରିଗଲା । ଏଇଟା ହିଁ ଥିଲା ତା' ମାଲିକାଣୀଙ୍କ ନିର୍ଦ୍ଦେଶ । କମ୍ପାନୀ ଏକ୍‌ଜିକ୍ୟୁଟିଭ୍ ଚାକିରୀଟା ପ୍ରାୟତଃ ଏଇମିତି । ନିଜର ତଥା ସାମାଜିକ ଦାୟିତ୍ୱ ତୁଲାଇବା ଲାଗି ଆଦୌ ସମୟ ମିଳେନା ।

ଘରକୁ ଫେରିବା ପରେ ସୋଫା ଉପରେ ବସି ସେ ଟି.ଭି.ରୁ ନିଉଜ୍ ଦେଖୁଥାନ୍ତି । 'ଆୟା' ଚାଲିଯିବା ପରେ କୁନି ପୁଅଟି ତାଙ୍କ ସହ ଖେଳିବା ଲାଗି ବାରମ୍ବାର ବାଧ୍ୟ କରୁଥାଏ । ମାତ୍ର ଖେଳିବା ପାଇଁ ତାଙ୍କର ଇଚ୍ଛା ଆଦୌ ନଥାଏ । ଏଣୁତେଣୁ କହି ପିଲାଟିକୁ ଠିକିବାକୁ ସେ ଚେଷ୍ଟା କରୁଥାନ୍ତି, ହେଲେ ପିଲାଟି ଥିଲା ଖୁବ୍ ଜିଦ୍‌ଖୋର । କୌଣସି ମତେ ଛାଡିବାକୁ ନାରାଜ । ତା'ର ଏକା ଜିଦ୍: ବାପାଙ୍କ ସହ ଯେମିତି ହେଲେ ସେ ଖେଳିବ ।' ବାପାଙ୍କ କ୍ଳାନ୍ତି ବା ଅନିଚ୍ଛା ତା' ପାଇଁ ଏକ ଅବାନ୍ତର ପ୍ରଶ୍ନ ।

କୌଣସି ଉପାୟ ନପାଇ ଏଥର ସେ ପାଖରେ ପଡିଥିବା ଗୋଟେ କାଗଜର ଚିତ୍ରକୁ ଆଣି ଅନେକ ବାର ଚଉତାଇ ଚିରି ଟିକ୍ ଟିକ୍ କରି ଦେଲେ । ସେଇ କାଗଜଟିରେ ରଙ୍ଗୀନ୍ ତଥା ସୁଦୃଶ୍ୟ ପୃଥିବୀର ଚିତ୍ର ରହିଁ ରହିଥିଲା । ସେ ଏଥର ପୁଅଟିକୁ ଅନ୍ୟମନସ୍କ କରିବାର ଅଭିପ୍ରାୟ ନେଇ କହିଲେ: 'ଗୋଟେ ପୃଥିବୀର ଚିତ୍ରକୁ ମୁଁ ଚିରି ଟିକ୍ ଟିକ୍ କରିଛି । ତୁ ଏଇଟାକୁ ଏକାଠି କରି ସଜାଡି ଦେବା ପରେ ମୁଁ ତୋ ସାଥିରେ ନିଶ୍ଚିୟ ଖେଳିବି ।' ଏତକ କହି ସାରି ସେ ପୁଅ ହାତକୁ କାଗଜ ଟୁକୁଡାତକ ବଢ଼ାଇ ଦେଇ, ଟି.ଭି. ଦେଖିବାରେ ମନୋନିବେଶ କଲେ ।

ପୁଅଟି କାଗଜ ଟୁକୁଡାତକ ନେଇ ଦୂରକୁ ଚାଲିଗଲା ଏବଂ ଅଳ୍ପ ସମୟ ଭିତରେ ଠିକ୍ ଭାବରେ ସଜାଇ ତା'ର ବାପାଙ୍କ ପାଖକୁ ଫେରି ଆସିଲା । ପୁଅର ଏତାଦୃଶ ବିଚକ୍ଷଣ ବୁଦ୍ଧିର ପରିଚୟ ପାଇ ତା'ର ପିତା ଆଶ୍ଚର୍ଯ୍ୟ ହୋଇଗଲେ ।

: ଏତେ ଜଲ୍‌ଦି କେମିତି ଏ ପଜଲ୍ ତୁ ସମାଧାନ କରି ପାରିଲୁ ?' ସେ ପୁଅକୁ ପଚାରିଲେ । ପୁଅଟି ହସିହସି ବୁଝାଇ ଦେଲା ଯେ ଏଇଟା ଥିଲା ଖୁବ୍ ସହଜ । ଚାରିବର୍ଷର ପିଲାପାଇଁ ଏହା ନିଶ୍ଚିତ ଭାବେ ଏକ କଠିନ ପଜଲ୍ ଥିଲା ବୋଲି ତା'ର ବାପାଙ୍କୁ ଜଣାଥିଲା ।

: ପୃଥିବୀର ଚିତ୍ର ପଛପଟେ ଗୋଟେ ମଣିଷର ଛବି ଥିଲା । ଚିରାକାଗଜରୁ ମୁଁ

ତଳେ ଥିବା ମଣିଷର ଛବିଟି ସଜାଡୁ ସଜାଡୁ ଆପେ ଆପେ ପୃଥିବୀର ଚିତ୍ରଟି ତିଆରି ହୋଇଗଲା । ଏଇଟା ତ ଖୁବ୍ ସହଜ ଖେଳ ।' ପିଲାଟି ତା'ର ବାପାଙ୍କୁ ବୁଝାଇ ଦେଲା ।

ପ୍ରକୃତରେ ଏହା ଏକ ସହଜ ଖେଳ ନଥିଲା । ଏଇ ଖେଳ ପଛରେ ଲୁଚି ରହିଥିଲା ମଣିଷ ଆଉ ପୃଥିବୀ ଭିତରେ ରହିଥିବା ଏକ ଅଦୃଶ୍ୟ ସମ୍ପର୍କର ନିଗୂଢ଼ ରହସ୍ୟ । ପୃଥିବୀକୁ ଜୟ କରିବାକୁ ହେଲେ ମଣିଷକୁ ପ୍ରଥମେ ନିଜକୁ ଜିତିବାକୁ ପଡିବ । ସେଇଥି ପାଇଁ କୁହାଯାଇଛି: ପ୍ରତିଟି ମଣିଷହିଁ ନିଜର ନିକୃଷ୍ଟତମ ଶତ୍ରୁ ।' (Every man is his own worst enemy.)

ପୃଥିବୀକୁ ଜୟ କରିବା ଆଗରୁ ମଣିଷକୁ ନିଜକୁ ଜୟ କରିବାର କଳା ହାସଲ କରିବାକୁ ପଡିବ । ନିଜକୁ ଚିହ୍ନି ପାରିଲେ ସମଗ୍ର ବିଶ୍ୱକୁ ଚିହ୍ନିବାରେ ଅସୁବିଧା ହେବ ନାହିଁ । ସେଇଥି ପାଇଁ ତ ଦୁଃଖରେ ଥରେ ଜର୍ମାନୀ ନାଟ୍ୟକାର ଓ କବି ମୋଲିୟର୍ କରିଥିଲେ: ମୁଁ ନିଜକୁ ଜାଣେ ନା, ଭଗବାନ କ୍ଷମା କରନ୍ତୁ, ମୋ'ର ଜାଣିବା ଉଚିତ ଥିଲା (I do not know myself, and God for-bid that I should.)

ନିଜ ଭିତରୁ ଆତ୍ମଗୋପନ କରିଥିବା ଅଦୃଶ୍ୟ ଶକ୍ତିମାନଙ୍କୁ ଜୀବନ୍ୟାସ ଦେବା ହିଁ ପ୍ରତିଟି ମଣିଷର କର୍ତ୍ତବ୍ୟ ହେବା ଉଚିତ । ନିଜର ଅତୀତକୁ ବାରମ୍ବାର ମନେ ପକାଇ ଅଥବା ଅନାଗତ ଭବିଷ୍ୟତକୁ ନେଇ କଳ୍ପନାର ତାଜମହଲ ତୋଳିବା ଅପେକ୍ଷା ମଣିଷକୁ ନିଜର ବର୍ତ୍ତମାନକୁ ହିଁ ସର୍ବଶେଷ ସତ୍ୟ ଓ ସର୍ବଶକ୍ତିମାନ ବୋଲି ଗ୍ରହଣ କରିବାକୁ ହେବ । ସେଇଥି ପାଇଁ ତ ଇମରସନ୍ ଏକଦା କହିଥିଲେ: ଆମ ପଛରେ ଅଥବା ଆମ ଆଗରେ ଯାହା ଅଛି ତାହା ଆମ ଭିତରେ ଥିବା ଜିନିଷର ତୁଳନାରେ ନିହାତି ତୁଚ୍ଛ ।' (What lies behind us and what lies before us are tiny matters compared to what lies within us.)

ଦୁଃଖଦାୟକ ହେଲେ ବି, ଏକଥା ସ୍ୱୀକାର କରିବାକୁ ହେବ ଯେ ମଣିଷ ଭିତରେ ଲୁଚି ରହିଥିବା ସାମର୍ଥ୍ୟକୁ ନିଜେ ହିଁ ମଣିଷକୁ ଆବିଷ୍କାର କରିବାକୁ ହେବ । ଆବିଷ୍କାର ମନସ୍କ ମଣିଷ ସତତ ତାହାହିଁ ଦେଖି ଥାଏ ଯାହା ଅନ୍ୟ ସମସ୍ତେ ଦେଖିଥାନ୍ତି । ମାତ୍ର ସେ ଯାହା ସବୁ ଚିନ୍ତା କରିଥାଏ, ସେ କଥା ଅନ୍ୟମାନେ କଳ୍ପନା ସୁଦ୍ଧା କରିନଥାନ୍ତି । ସେଇଥିପାଇଁ ତ କୁହାଯାଏ, ସେଇମାନେ ହେଉଛନ୍ତି ଅଭାଗା ଆବିଷ୍କାରକ ଯେଉଁମାନେ ଭାବନ୍ତି ଯେ ସମୁଦ୍ରର ଜଳରାଜି ବ୍ୟତୀତ ଚେନାଏ ଭୂମି ହିଁ କେଉଁଠି ନାହିଁ ।

ଆସନ୍ତୁ ସ୍ୱପ୍ନ ପ୍ରବଣ ମଣିଷ ପାଇଁ, ନିଜକୁ ଆବିଷ୍କାର କରିବା ଲାଗି ହରାଇ ଥିବା ସାମର୍ଥ୍ୟ ଫେରାଇ ଦେବାରେ ପ୍ରତିଶ୍ରୁତି ଅନ୍ତତଃ ଦେବା । ତାହାହିଁ ଆଜିର ଆବଶ୍ୟକତା ଓ ପ୍ରତିଟି ଆବିଷ୍କାରର ମୂଳମନ୍ତ୍ର ।

# ଚାଲ, ନାଟକ ଦେଖିବା

ଓଡିଶାରେ ବରାବର ଗୋଟେ ଅଭିଯୋଗ ଶୁଣାଯାଏ: ପୃଷ୍ଟପୋଷକତା ଓ ଦର୍ଶକମାନଙ୍କ ଶ୍ରଦ୍ଧାର ଅଭାବରୁ ଓଡିଆ ନାଟ୍ୟକଳା ତା'ର ସତ୍ତା ହରାଇବାକୁ ବସିଲାଣି । ସହରମାନଙ୍କରେ ଥିବା ହାତଗଣା କେତୋଟି ସୌଖୀନ ନାଟ୍ୟସଂସ୍ଥା ଓ କାଁଭାଁ ଗାଁ ଗଣ୍ଡାରେ ଥିବା ଯୁବକ ସଂଘର ଉଦ୍ଧାମତା ହିଁ ଏହି କଳାକୁ ଯତ୍‌କିଞ୍ଚିତ ଜୀବନ୍ୟାସ ଦେଇଛି । ସିନେମା, ଭିଡିଓ ଏବଂ ଅସୁମାରି ଟି.ଭି. ଚାନେଲ୍ ଯୋଗୁଁ ଓଡିଆ ନାଟକର ଏ ଦୁର୍ଦ୍ଦଶା ହୋଇଛି ବୋଲି କୁହାଯାଉଛି । ମାତ୍ର ଏକଥା ଯଦି ସତ, ତେବେ କଲିକତା, ମୁମ୍ବାଇ ଏବଂ ଗୁଜୁରାଟ୍‌ରେ ନାଟକ ଏତେ ଲୋକପ୍ରିୟ ହୋଇପାରିଛି କିପରି ?

ପ୍ରସଙ୍ଗ କ୍ରମେ ଦୁଇଗୋଟି ଘଟଣା ମନେ ପଡୁଛି ।

ପ୍ରାୟ ପାଞ୍ଚବର୍ଷ ତଳେ ଭାରତର ବିଶିଷ୍ଟ ନାଟ୍ୟକାର ବାଦଲ ସରକାର ତାଙ୍କ ନାଟ୍ୟଦଳଙ୍କ ସହ ଆସି ଭୁବନେଶ୍ୱରରେ ନାଟକ କରୁଥାନ୍ତି । ସେଇ ସମୟରେ ମାତ୍ର ୪୫ ମିନିଟର ଛୋଟ ନାଟକ: 'ହତୋମାଲାର ଓପାରେ'ଟି ଦେଖିବାର ସୁଯୋଗ ମିଳିଥିଲା । ଏହି ନାଟକଟି ମୁକ୍ତ ରଙ୍ଗମଞ୍ଚରେ ଅଭିନୀତ ହୋଇ ଦର୍ଶକମାନଙ୍କୁ ଆକର୍ଷିତ କରିଥିଲା । ଷ୍ଟେଜ୍, ପ୍ରୋସେନିୟମ୍ ଅଥବା ଫ୍ଲଡ୍ ଲାଇଟ, ସାଉଣ୍ଡ ସିଷ୍ଟମର କୌଣସି ଆବଶ୍ୟକତା ନଥିଲା । ଓଡିଶାର ଗାଁ ଗଣ୍ଡାରେ ପୂର୍ବରୁ ହେଉଥିବା କେଳାକେଲୁଣୀ ନାଚ, ଦାସକାଠିଆ ଆଦି ପ୍ରଦର୍ଶିତ ହେବା ପରି ଅଭିନୟ ସ୍ଥଳର ଚାରିକଡକୁ ଘେରି ଦର୍ଶକମାନେ ସେଠାରେ ତଳେ ବସିଥିଲେ । ଖୁବ୍ କମ୍ ଖର୍ଚ୍ଚରେ କିଭଳି ନାଟକଟିଏ ହୋଇପାରିବ ଓ ଦର୍ଶକମାନଙ୍କୁ ମୁଗ୍ଧ ଚକିତ କରିପାରିବ- ତା'ରି ପରୀକ୍ଷା ନିରୀକ୍ଷା କରିଥାନ୍ତି ବାଦଲ୍ ସରକାର ଏଇ ନାଟକ ମାଧ୍ୟମରେ । ପଶ୍ଚିମବଙ୍ଗର ଗାଁଗଣ୍ଡାରେ ଏଇ ନାଟକ ପ୍ରଦର୍ଶନ କରି, ବେଶ୍ ସଫଳ ହୋଇଛନ୍ତି ବୋଲି ସେଦିନ ବାଦଲ ସରକାର ଘୋଷଣା କରୁଥାନ୍ତି ଓଡିଆ ଦର୍ଶକମାନଙ୍କୁ ।

ଏବେ, ପାଞ୍ଚବର୍ଷ ପରର ଘଟଣାଟି କହେଁ । ନିକଟରେ ସେଇ ଭୁବନେଶ୍ୱର ସହରରେ ଉତ୍କଳ ରଙ୍ଗମଞ୍ଚ ଟ୍ରଷ୍ଟ ତରଫରୁ ଅଭିନୀତ ହେଉଥିବା ନାଟକ 'ମୃଗୟା' ଦେଖିବାର ସୁଯୋଗ ମିଳିଲା । ଏଇ ନାଟକଟି ଓଡିଆ ନବ ନାଟ୍ୟ ଆନ୍ଦୋଳନର ଅନ୍ୟଜଣେ କର୍ଣ୍ଣଧାର ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କର ଏକ କାଳଜୟୀ କୃତି । ପ୍ରାୟ ତିରିଶ ବର୍ଷ ତଳେ 'ସୃଜନୀ' ସଂସ୍ଥାଦ୍ୱାରା ଅଭିନୀତ ଏଇ ନାଟକଟି ଓଡିଆ ନାଟକ ଇତିହାସରେ ଆଜି ମଧ୍ୟ ସ୍ୱତନ୍ତ୍ର ଆସନ ବଜାୟ

ରଖିଛି, ତା ନିଃସନ୍ଦେହ । ଏହାର ଆଂଶିକ ଓ ଆତ୍ମିକ ଆବେଦନ ଆଜିର ବିଲକ୍ଷଣ ସମାଜରେ ବି ପ୍ରାସଙ୍ଗିକ ମନେହୁଏ ।

ଉତ୍କଳ ରଙ୍ଗମଞ୍ଚ ଟ୍ରଷ୍ଟର ଏହା ଥିଲା ସପ୍ତମ ନାଟକ ଏବଂ 'ମୃଗୟା'ର ପଞ୍ଚଦଶତମ ଅଭିନୀତ ଦିବସ । ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ଅନନ୍ତ ମହାପାତ୍ରଙ୍କ ବଳିଷ୍ଠ ନିର୍ଦ୍ଦେଶନା ଓ ସଂଗୀତକାର ଶନ୍ତନୁ ମହାପାତ୍ରଙ୍କ ଦିଗ୍‌ଦର୍ଶନରେ ନାଟକଟି ବେଶ୍ ଉପଭୋଗ୍ୟ ହୋଇଥିଲା ସେଦିନ ସଂଧ୍ୟାରେ । ଅଧିକାଂଶ ଅଭିନେତା ପୁରୀ ସହରରୁ ପ୍ରତି ସଂଧ୍ୟାରେ ଆସି ଏଇ ନାଟକରେ ଅଭିନୟ କରୁଥିଲେ । ମୃତପ୍ରାୟ ନାଟ୍ୟକଳାକୁ ପୁନର୍ଜୀବନ ଦେବାର ସଂକଳ୍ପରୁ ହିଁ 'ଉତ୍କଳ ରଙ୍ଗମଞ୍ଚ'ର ସୃଷ୍ଟି ହୋଇଛି । ଭଲ ନାଟକ, ଉଚ୍ଚକୋଟୀର ଅଭିନୟ, ବଳିଷ୍ଠ ନିର୍ଦ୍ଦେଶନାରେ ଅଭନୀତ ହୋଇ ସାରିଥିବା ନାଟକମାନଙ୍କ ଭିତରେ ଅଛନ୍ତି ବିଜୟ ମିଶ୍ରଙ୍କ 'ଯନ୍ତା' ଏବଂ ବିଶ୍ୱଜିତ୍ ଦାସଙ୍କ 'ମହାମାୟା ଅପେରା' ଓ 'ପ୍ରତାପଗଡରେ ଦି' ଦିନ' । ଏଇ ସଂସ୍ଥାର ମଙ୍ଗୁଆଳ ତଥା ବିଶିଷ୍ଟ ନିର୍ଦ୍ଦେଶକ ଅନନ୍ତ ମହାପାତ୍ରଙ୍କ ଉଦ୍ୟମ ଓ ଉତ୍ସାହ ସର୍ବାଦୌ ପ୍ରଶଂସନୀୟ । ନୂତନ ନାଟ୍ୟକାର, ଅଭିନେତା/ଅଭିନେତ୍ରୀ ଚିହ୍ନଟ କରିବାରେ ମଧ୍ୟ ସେ ଆଗ୍ରହୀ ।

ତେବେ ସେଦିନ 'ମୃଗୟା' ନାଟକ ଦେଖାର ଦୁଃଖଦ ଅନୁଭୂତିଟି ଗଭୀର ଭାବେ ଆନ୍ଦୋଳିତ କରିଥିଲା ଏ ଲେଖକକୁ । ପଞ୍ଚଦଶତମ ଦିବସ ଅଭିନୟରେ ଦର୍ଶକ ସଂଖ୍ୟା ଥିଲେ ମାତ୍ର ନଅ । ଭୁବନେଶ୍ୱର ସହରରେ ଓଡିଶାର ସବୁଠୁ ବେଶି ବୁଦ୍ଧିଜୀବୀ, କଳାକାର ଓ ଧନୀ ତଥା ସମ୍ଭ୍ରାନ୍ତ ବ୍ୟକ୍ତି ରହନ୍ତି । ଜଣେ ବି କଳାପ୍ରେମୀ ଯୁବକଙ୍କ ସହ ଭେଟ ହେଲାନି ସେଠି । ଦୁଇଶହ କୋଡିଏ ଆସନ ବିଶିଷ୍ଟ ଏଇ ପ୍ରେକ୍ଷାଳୟଟିରେ ବସିଥିବା ନଅ ଜଣଙ୍କୁ ନେଇ କଳାକାରମାନେ ତାଙ୍କର ଅଭିନୟ କଲେ । ପରେ ଶୁଣିଲି, ସବୁଦିନ ଏଠି କ୍ଷତି ହେଉଛି । ଅଭିନେତା/ଅଭିନେତ୍ରୀଙ୍କୁ ଯତ୍‌କିଞ୍ଚିତ୍ ପାରିଶ୍ରମିକ ଦେବାକୁ ମଧ୍ୟ କଷ୍ଟ ହେଉଛି । ଏ ଅବସ୍ଥାରେ କେତେଦିନ ଏ ସଂସ୍ଥା ଚାଲିବ ?

ସେଦିନ ପ୍ରେକ୍ଷାଳୟରୁ ବାହାରିବା ବେଳେ ମୋ'ର ଅସ୍କାର ୱାଇଲଡଙ୍କ ସେଇ ଆପ୍ତବାକ୍ୟଟି ମନେ ପଡିଗଲା: 'ନାଟକଟି ସଫଳ ଭାବେ ଅଭିନୀତ ହୋଇଥିଲା, ମାତ୍ର ଦର୍ଶକମାନଙ୍କ ସଂଖ୍ୟା ଥିଲା ଖୁବ୍ କମ୍' (The play was great success, but the audience was a disaster.) ଏତେବଡ ସହରରେ ତିନି ହଜାର ଦର୍ଶକ ନାହାନ୍ତି ଭାବିଲେ ଦୁଃଖ ଲାଗେ । ନାଟ୍ୟକଳା ମରିଯାଉଛି ବୋଲି କେବଳ ଭାଷଣ ନ ଦେଇ ବରଂ ନାଟକ ଦେଖିବା ଲାଗି ଆଗେଇ ଆସିଲେ ହିଁ ନାଟ୍ୟକଳା ପୁନର୍ଜୀବନ ପାଇବ ।

ଚାଲନ୍ତୁ, ଏଣିକି ନାଟକ ଦେଖିବା ।

*ସଂବାଦ ୨୬.୫.୦୧*

# ପୁଷ୍ପଦନ୍ତର ପୃଥିବୀ

ପୌରାଣିକ ଉପାଖ୍ୟାନଟି ଏଇପରି: ଶିବଙ୍କ ବିଶ୍ୱସ୍ତ ଓ ପ୍ରିୟ ସହଚର ଭାବେ ପୁଷ୍ପଦନ୍ତର ବେଶ୍ ଖ୍ୟାତି ଥିଲା । ସେଇଥି ପାଇଁ ଶିବଙ୍କ ପାଖେ ପାଖେ ସର୍ବଦା ରହୁଥିଲା ସେ । ପ୍ରତିଦିନ ଶିବ, ପାର୍ବତୀଙ୍କୁ ଚମତ୍କାର ଗପ ଶୁଣାଉଥିବା ବେଳେ ପୁଷ୍ପଦନ୍ତ ସେମାନଙ୍କ ଆଢୁଆଳରେ ରହି ଗପଗୁଡିକ ନିଜେ ଶୁଣୁଥିଲା । ଗପଗଡିକ ଖୁବ୍ ହୃଦୟଗ୍ରାହୀ ଥିଲା । ତେଣୁ ପୁଷ୍ପଦନ୍ତ ସେଇ ଗପଗୁଡିକ ନିଜ ସ୍ତ୍ରୀ ଜୟା ପାଖରେ ପୁନରାବୃତ୍ତି କରୁଥିଲା । ଥରେ ଜୟା ଦେବୀପାର୍ବତୀଙ୍କ ସେବା କରୁଥିବା ସମୟରେ ଏଇ ଗପ ସବୁ କହି ପାର୍ବତୀଙ୍କ ମନ ହରଣ କରିବାକୁ ଚେଷ୍ଟା କଲା । ମାତ୍ର ଫଳ ହେଲା ବିପରୀତ । ଦେବୀ ପାର୍ବତୀ ମହାଦେବଙ୍କ ଉପରେ କୋପ କଲେ: ଯେଉଁ ଗପ ମୋ'ର ପରିଚାରିକା ପାଇଁ ଉଦ୍ଦିଷ୍ଟ, ତାହା ମୋ' ପାଇଁ କେବେ ବି ଉଦ୍ଦିଷ୍ଟ ହୋଇ ନ ପାରେ ।'

ଦିବ୍ୟଚକ୍ଷୁ ଉନ୍ମୋଚନ କରି ଶିବ ଏଇ ଗପ ଶୁଣିଥିବା ଦୋଷୀକୁ ଠାବ କଲେ ଏବଂ ଚିରାଚରିତ ପ୍ରଥାନୁଯାୟୀ ଅଭିଶାପ ମଧ୍ୟ ଦେଲେ । ମାତ୍ର ପରବର୍ତ୍ତୀ ସମୟରେ ସେ ତାଙ୍କ ପ୍ରିୟ ସହଚର ପୁଷ୍ପଦନ୍ତକୁ ଦେଇଥିବା ଅଭିଶାପ ଯୋଗୁଁ ଅନୁତାପ କରିବା ସହ, ଏହି ଅଭିଶାପରୁ ସେ କିପରି ମୁକ୍ତ ହେବ ସେଥିଲାଗି ଏକ ଉପାୟ ମଧ୍ୟ ବତାଇଲେ । ପର ଜନ୍ମରେ ପୁଷ୍ପଦନ୍ତ କୌଣସି ଏକ ଅଭିଶପ୍ତ ଆତ୍ମାକୁ ଶିବଙ୍କ ଠାରୁ ଶୁଣିଥିବା ସବୁ ଗପ ଶୁଣାଇବା ପରେ ପୁନଶ୍ଚ ସ୍ୱର୍ଗକୁ ପ୍ରତ୍ୟାବର୍ତ୍ତନ କରିପାରିବ ବୋଲି ଶିବ ଆଶ୍ୱାସନା ମଧ୍ୟ ଦେଲେ ।

ଅଭିଶପ୍ତ ପୁଷ୍ପଦନ୍ତ ପୁନଶ୍ଚ ଜନ୍ମଗ୍ରହଣ କଲେ ଓ ତାଙ୍କର ନାମକରଣ ଏଁଥର ହେଲା 'ଗୁଣଢ୍ୟ' ଏବଂ ପ୍ରାୟ ସାତ ଲକ୍ଷ ଶ୍ଳୋକ ରଚନା କଲେ ସେ । ଏହି ଶ୍ଳୋକ ସବୁକୁ ଏତକ୍ସ ସେ ଭେଟି ଦେଲେ ତତ୍କାଳୀନ ରାଜା କ୍ଷେମେନ୍ଦ୍ରଙ୍କୁ । ମାତ୍ର ରାଜା କ୍ଷେମେନ୍ଦ୍ର ଏହି ପଦ୍ୟ ସମ୍ବଳିତ କାହାଣୀକୁ ପ୍ରତ୍ୟାଖାନ କଲେ ତୁରନ୍ତ । କାରଣଟି ଥିଲା ଖୁବ୍ ତୁଚ୍ଛ ଏହି ପଦ୍ୟ ସବୁ ସଂସ୍କୃତ ଭାଷାରେ ଚରିତ ନ ହୋଇ ସାଧାରଣଲୋକଙ୍କ ଭାଷା ଅର୍ଥାତ୍ 'ପୈଶାଚିକ' ଭାଷାରେ ବର୍ଣ୍ଣିତ ହୋଇଥିବାରୁ ରାଜା କ୍ଷେମେନ୍ଦ୍ର ଏହାକୁ ଗ୍ରହଣ କରିବାକୁ ରାଜି ହୋଇ ନଥିଲେ ।

ଘୃଣା ଓ ଅପମାନରେ ଏଥର ଜର୍ଜରିତ 'ଗୁଣଢ୍ୟ' ଜଙ୍ଗଲକୁ ଚାଲିଗଲେ । ପର୍ବତର

ଶିଖରରେ ସେ ଅଗ୍ନି କୁଣ୍ଡଟିଏ ନିର୍ମାଣ କଲେ ଏବଂ ନିଜେ ରଚନା କରିଥିବା ପଦ୍ୟାବଳୀକୁ ସମବେତ ଶିଷ୍ୟମାନଙ୍କୁ ପଢ଼ି ଶୁଣାଇବା ପରେ ଗୋଟିକ ପରେ ଗୋଟିଏ ସେ ସବୁକୁ ଅଗ୍ନି କୁଣ୍ଡରେ ନିକ୍ଷେପ କଲେ ।

କାଳକ୍ରମେ ରାଜା 'କ୍ଷେମେନ୍ଦ୍ର' ଖୁବ୍ ଦୁର୍ବଳ ହୋଇ ପଡିଲେ । କାରଣ ପୂର୍ବଭଳି ରାଜାଙ୍କ ଦ୍ୱାରା ନିଯୁକ୍ତ ଶିକାରୀମାନେ ଜଙ୍ଗଲରୁ ସୁସ୍ୱାଦୁ ମାଂସ ସଂଗ୍ରହ କରିବାରେ ସକ୍ଷମ ହେଉଥିଲେ । ବରଂ, ଜଙ୍ଗଲର ଗୋଟିଏ ସ୍ଥାନରେ ଏକତ୍ରିତ ହୋଇ ସମସ୍ତ ପଶୁପକ୍ଷୀ ଓ ମଣିଷମାନେ ଜନୈକ ବ୍ୟକ୍ତିଙ୍କଠାରୁ କାହାଣୀ ଶୁଣୁଥିବାର ଖବର ପାଇ ରାଜା କ୍ଷେମେନ୍ଦ୍ର ତୁରନ୍ତ ସେଠାରେ ପହଞ୍ଚି 'ଗୁଣଢ୍ୟ'କୁ ଦେଖିଲେ ଓ ଅନୁତାପ ସହ କ୍ଷମା ମାଗିଲେ ଏବଂ ଅବଶିଷ୍ଟ ପାଣ୍ଡୁଲିପିକୁ ଅଗ୍ନିରେ ସମର୍ପଣ ନ କରିବା ଲାଗି ଅନୁରୋଧ କଲେ । ସେଇତକ ପାଣ୍ଡୁଲିପି ହିଁ ପରବର୍ତ୍ତୀକାଳରେ ପ୍ରଥମ କାହାଣୀ ପାଣ୍ଡୁଲିପି 'କଥା ସରିତ ସାଗରମ୍'ର ମାନ୍ୟତା ପାଇଛି ।

ଇହୁଦି ପ୍ରବାଦଟିଏ ଅଛି, 'କାହାଣୀ ଶୁଣିବା ଲାଗି ଈଶ୍ୱର ମଣିଷକୁ ସୃଷ୍ଟି କଲେ ।' ମୁହଁରୁ ମୁହଁକୁ ଯାତ୍ରା କରିବା ଓ ଶେଷରେ କାହାଣୀ ପାଲଟି ଯିବା ସବୁ ସଫଳ ଗଳ୍ପର ପ୍ରବୃତ୍ତି ।

ପୁଷ୍ପଦନ୍ତ କିମ୍ବଦନ୍ତୀଟି ଅନ୍ତତଃ ଏତିକି ସୂଚାଇଦିଏ ଯେ କାଳେ କାଳେ ସୃଜନ ଶିଳ୍ପୀକୁ ତା'ର ସ୍ୱାଭିମାନର ଅଗ୍ନି ପରୀକ୍ଷା ଦେବାକୁ ପଡିଛି । ପ୍ରାଚୀନ କାଳର, ଦୀନକୃଷ୍ଣ, ବଳରାମଙ୍କଠାରୁ ଆରମ୍ଭ କରି ସାଂପ୍ରତିକ ସମୟର ବିଶିଷ୍ଟ ଲେଖକ ସୋଲଝେନିତ୍ସିନ୍ ଓ ସଲମାନ୍ ରୁସ୍‌ଦୀଙ୍କୁ ଏଇ ପରୀକ୍ଷାର ସାମନା କରିବାକୁ ପଡିଛି । ଭବିଷ୍ୟତରେ ସତ୍ୟର ଅନ୍ୱେଷଣ କରୁଥିବା ତସଲିମା ନସ୍‌ରିନ୍‌ଙ୍କ ପରି ମଧ୍ୟ ଅନେକଙ୍କୁ ଏପରି ଅସମୟକୁ ସାମ୍ନା କରିବାକୁ ହେବ; ଏଥିରେ ଆଶ୍ଚର୍ଯ୍ୟ ଓ ଆତଙ୍କିତ ହେବାର କିଛି ନାହିଁ ।

ସୃଜନ ଶିଳ୍ପୀକୁ ଗୁରୁତ୍ୱ ଦେଇ ଏକଦା ବିଶିଷ୍ଟ କବି କଲ୍‌ରିଜ୍ କହିଥିଲେ: ପାଞ୍ଚଶହ ସାର୍ ଆଇଜାକ୍ ନିଉଟନଙ୍କ ଆତ୍ମା ମିଶି ଜଣେ ସେକ୍‌ସପିଅର ଅଥବା ଜଣେ ମିଲଟନ୍ ସୃଷ୍ଟି କରନ୍ତି ବୋଲି ମୋର ବିଶ୍ୱାସ ।''

ତେବେ ନିଜ ଚାରି ପାଖରେ ଏତେ ବିପୁଳ ସଂଖ୍ୟାର ଗଳ୍ପ ଓ କାହାଣୀ ମହଜୁଦ୍ ଥିବାବେଳେ ପୁଣି ଗଳ୍ପ ଲେଖିବାର ଅଭିପ୍ରାୟ କ'ଣ ହୋଇପାରେ ?

ପ୍ରତିଟି ଲେଖକର ନିଜସ୍ୱ ଏକ ପୃଥିବୀ ଅଛି; ଯେଉଁ ପୃଥିବୀକୁ ନେଇ ସେ ସ୍ୱପ୍ନ ଦେଖେ, ବିଚରଣ କରେ ଓ ସେଠି ଇନ୍ଦ୍ରଧନୁ ସୃଷ୍ଟି କରେ । ଏଇ ବିକଳ୍ପ ପୃଥିବୀର ପରିକଳ୍ପନା ଲେଖକ ପାଇଁ ଅପରିହାର୍ଯ୍ୟ ହୋଇପଡେ, ଖାସ୍ ତା'ର ପ୍ରିୟ ପାଠକମାନଙ୍କ ପାଇଁ । ସେଇ ବିକଳ୍ପ ପୃଥିବୀରେ ସେଇମାନେ ହିଁ ଲେଖକର ପ୍ରିୟ ପଡୋଶୀ ଭାବେ ବସତି

ସ୍ଥାପନ କରିଥାନ୍ତି । ସେଇଥିପାଇଁ ଏକଦା ସିରିଲ୍ କୋନୋଲି କହିଥିଲେ: ଜଣେ ବିଶିଷ୍ଟ ଲେଖକ ନିଜ ପାଇଁ ଏକ ପୃଥିବୀ ତିଆରି କରେ ଏବଂ ତା'ର ପାଠକମାନେ ଗର୍ବର ସହ ଏଥିରେ ବାସ କରନ୍ତି । ଅପେକ୍ଷାକୃତ କମ୍ ଜଣାଶୁଣା ଲେଖକ ମୁହୂର୍ତ୍ତକ ପାଇଁ ସେମାନଙ୍କୁ ମୋହିତ କରି ରଖେ, ମାତ୍ର ସେମାନେ ସେଠାରୁ ଖୁବ୍ ଶୀଘ୍ର ଅପସରି ଯାଉଥିବା ସେ ଲକ୍ଷ୍ୟ କରେ ।'

ଏକଥା ମଧ୍ୟ ସତ, ଆଗାମୀ ଦିନମାନଙ୍କରେ ପୁଷ୍ପଦନ୍ତମାନେ ନିଜର ବିକଳ୍ପ ପୃଥିବୀଟେ ତିଆରି କରିବା ସହ ସେମାନଙ୍କ ପ୍ରିୟ ପାଠକମାନଙ୍କୁ ସେଇ ପୃଥିବୀର ପଡୋଶୀ ହେବା ପାଇଁ ପ୍ରୟାସ ଜାରି ରଖିବେ । ତାହାହିଁ ଆଶା କରାଯାଉ ।

*ସମ୍ବାଦ ୩.୧୨.୦୧*

# ଅଶୁଭ ପୁତ୍ର ଉପାଖ୍ୟାନ

ପୃଥିବୀ ଉପରକୁ ସେଦିନ ସଂଧ୍ୟା ନଇଁ ଆସିଥିଲା ଯେପରି ଅପରେସନ୍ ଟେବୁଲ ଉପରେ ଅଚେତ ରୋଗୀଟି ଉପରେ ନଇଁ ଆସେ ଧଳା ଚଦର । ସଂଧ୍ୟାକୁ ଟିକେ ରଙ୍ଗୀନ୍ କରିବା ଉଦ୍ଦେଶ୍ୟରେ ସେ ତିନି ପେଗ୍ ହୁଇସ୍କ ପ୍ରଥମେ ପିଇଲେ ଓ ଏକା ଏକା ବିଲିୟାଡ୍ ଖେଳିବାକୁ ଲାଗିଲେ । ପ୍ରାୟ ରାତି ଆଠଟା ବାର ମିନିଟ୍‌ରେ ସେ ମାତ୍ର ମିନିଟିଏ ପାଇଁ ତାଙ୍କ ପ୍ରେମିକା ସହ କଥାବାର୍ତ୍ତା ହେଲେ । ଏହାର ସାତ ମିନିଟ୍ ପରେ ତାଙ୍କ ପ୍ରେମିକାଙ୍କ ଟେଲିଫୋନ୍ ଆସିଲା । ଚାରି ମିନିଟ୍ ଯାଏ ଦୁହିଁଙ୍କର ବାର୍ତ୍ତାଳାପ ଚାଲିଲା । ତା'ପରେ ସେ ତାଙ୍କ ହେପାଜତ ଦାୟିତ୍ୱରେ ଥିବା ମେଜର ଗଜେନ୍ଦ୍ର ବୋହ୍‌ରାଙ୍କୁ କିଛି ସିଗାରେଟ୍ ଆଣିବା ପାଇଁ କହିଲେ । ଜଣେ ପରିଚାରକଙ୍କ ସହାୟତାରେ ସିଗାରେଟ୍ ଭିତରେ ହାସିସ୍ ମିଶାଇ ତାଙ୍କୁ ଦିଆଗଲା ।

ନିଶାରେ ଚୁର୍ ହୋଇ ସେ ନିଜର ହିତାହିତ ଜ୍ଞାନ ଭୁଲିଗଲେ ଏବଂ ଠିକ୍ ଆଠଟା ଅଣଚାଳିଶ ମିନିଟ୍‌ରେ ତାଙ୍କ ପ୍ରେମିକାଙ୍କୁ ଶେଷ ଟେଲିଫୋନ୍ କରି କହିଲେ, ''ଶୁଭରାତ୍ରି ! ମୁଁ ଏବେ ଶୋଇବାକୁ ଯାଉଛି । କାଲି ପୁଣି ଆମେ କଥାବାର୍ତ୍ତା ହେବା ।'' ଏହା ପରେ ଯୁଦ୍ଧ ପୋଷାକ ପିନ୍ଧି ସେ ହାତରେ ସବ୍ ମେସିନ୍ ଗନ୍, ସ୍ପ୍ରେଞ୍ଚ ଟେଲିସ୍କୋପିକ୍ ରାଇଫଲ ଓ ପିସ୍ତଲ ଧରି ବାହାରି ପଡିଲେ । ପରବର୍ତ୍ତୀ ଘଟଣା ଏବେ ଇତିହାସ ପାଲଟିଗଲାଣି ।

ଯୁବରାଜ ଦୀପେନ୍ଦ୍ର ନେପାଳର ନରବିଷ୍ଣୁ ତଥା ରାଜା ବୀରେନ୍ଦ୍ର, (ପିତା) ରାଣୀ ଐଶ୍ୱର୍ଯ୍ୟ (ମାତା), ଶ୍ରୁତି (ଭଉଣୀ) ଏବଂ ନିରଞ୍ଜନ (ଭାଇ) ସମେତ ରାଜପରିବାରର ଅନ୍ୟ ସମସ୍ତ ସଦସ୍ୟଙ୍କୁ ଯେଭଳି ଭାବେ ହତ୍ୟା କଲେ ତାହା ସମସ୍ତ ବିଶ୍ୱକୁ ହତବାକ୍ କରି ଦେଇଛି । ପ୍ରେମିକା ଦେବଯାନୀଙ୍କୁ ବିବାହ କରିବା ଲାଗି ତାଙ୍କର ନିଷ୍ପତ୍ତି ଓ ମାତାଙ୍କର ଭବିଷ୍ୟବାଣୀ ଯୋଗୁଁ ଏହାକୁ ବିରୋଧ କରିବା ଯୋଗୁଁ ଯୁବରାଜ ଦୀପେନ୍ଦ୍ର ଏପରି ପଦକ୍ଷେପ ନେଇଛନ୍ତି ବୋଲି କୁହାଯାଉଛି । ଏହି ଘଟଣାର ଅନେକ କଥା ଏବେ ବି ରହସ୍ୟାଚ୍ଛନ୍ନ, ତଥାପି ଇତିହାସ ଆଖିରେ ଯୁବରାଜ ଦୀପେନ୍ଦ୍ର ହିଁ ଏ ସବୁର ମୂଳ କାରଣ ବୋଲି ପ୍ରଚାରିତ ହେଉଛି । ଇତିହାସର ସୁଦୀର୍ଘ ପୃଷ୍ଠାରେ ଠାଏ ଠାଏ ଏପରି ରକ୍ତର ଛିଟା ଲାଗିଥିବା କଥା ଆମେ ଜାଣୁଁ । ଲୁଣ୍ଠନ, ଯୁଦ୍ଧ, ରାଜ୍ୟ ଜୟ ପରି ପିତୃହତ୍ୟାର ବି କରୁଣ ଚିତ୍ର ଆମ ସାମ୍ନାରେ ଜୀବନ୍ୟାସ ପାଏ ବେଳେବେଳେ ।

ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପ 'ପିତା ଓ ପୁତ୍ର' ଏବେ ବି ମନେ ପକାଇଦିଏ କିପରି ପୁତ୍ର ଅଜାତଶତ୍ରୁ ବନ୍ଦୀ କରି ନିର୍ଯ୍ୟାତନା ଦେଇଛନ୍ତି ପିତା ବିମ୍ବିସାରଙ୍କୁ । ସେଠି ବି ଭବିଷ୍ୟବାଣୀ ତା'ର

କାୟା ବିସ୍ତାର କରିଛି: 'ସେ ହେବେ ପିତୃହନ୍ତା' । ପରବର୍ତ୍ତୀ ସମୟରେ ନିଜର ପୁତ୍ରଲାଭ ମୁହୂର୍ତ୍ତରେ ସେ ଅନୁତାପ କରି ପିତାଙ୍କୁ ବନ୍ଦୀଶାଳାରୁ ମୁକ୍ତ କରିବାକୁ ଚେଷ୍ଟା କରି ବିଫଳ ହୋଇଛନ୍ତି ।

ମୋଗଲ ଶାସନ କାଳରେ ପିତାପୁତ୍ର କଳହ ଥିଲା ଏକ ସାଧାରଣ ଘଟଣା । ନିଷ୍ଠୁର ଆଓରଙ୍ଗଜେବ ହିଁ ବନ୍ଦୀ କରିଥିଲେ ନିଜର ପିତା ଶାହାଜାହାନଙ୍କୁ ଏବଂ ଆଗ୍ରା ଦୁର୍ଗରେ ଆଲୋକ, ଜଳ ଓ ଖାଦ୍ୟ ପ୍ରବେଶକୁ ନିଷେଧ କରିଥିଲେ । ନିଜର ଭାଇମାନଙ୍କୁ ମଧ୍ୟ ମୃତ୍ୟୁ ମୁଖକୁ ଠେଲି ଦେଇଥିଲେ ସେ । ପିତା ଶାହାଜାହାନ୍ ଆଗ୍ରା ଦୁର୍ଗ ଭିତରୁ ଯମୁନା କୂଳର ଅନତିଦୂରରେ ଥିବା ତାଜମହଲକୁ ଚାହିଁ ଚାହିଁ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

ବିଶ୍ୱର ପ୍ରଥମ ନାଟକ ଗ୍ରୀକ୍ ଭାଷାରେ ଲେଖାଯାଇଛି; ଯାହାର ମୁଖ୍ୟ ନାୟକ 'ଅଡିପସ୍' । ତାଙ୍କ ଜନ୍ମ ସମୟରେ ଜ୍ୟୋତିଷମାନେ କହିଥିଲେ ଏଇ ଅଶୁଭ ପୁତ୍ର ଦିନେ ତା'ର ପିତାଙ୍କୁ ବଧ କରିବ ଏବଂ ମାତାଙ୍କୁ ବିବାହ କରିବ । ତାହା ହିଁ ଘଟିଛି ପରବର୍ତ୍ତୀ ସମୟରେ । ସମ୍ଭବତଃ, ମନୋବିଜ୍ଞାନୀମାନେ ମଣିଷର ଅବଚେତନ ସ୍ତରରେ, ବିଶେଷ କରି ମାତା ଓ ପୁତ୍ରଙ୍କ ଭିତରେ ଥିବା ଦୁର୍ବଳତାକୁ 'ଅଡିପସ୍ କଂପ୍ଲେକ୍ସ' ବୋଲି ଅଭିହିତ କରିଥାନ୍ତି ।

କେବଳ ଇତିହାସ ନୁହେଁ, ପୌରାଣିକ ଉପଖ୍ୟାନମାନଙ୍କରେ ବି ପିତାଙ୍କୁ ନିର୍ଯ୍ୟାତନା ଦେବାର ଅନେକ ନଜିର ଅଛି । ମହାଭାରତରେ କଂସ ଚରିତ୍ରଟି ଏହି ଶ୍ରେଣୀର । ନିଜ ଭଗ୍ନୀର ଅଷ୍ଟମ ଗର୍ଭର ସନ୍ତାନ ଦ୍ୱାରା ସେ ନିହତ ହେବ ବୋଲି ଦୈବବାଣୀ ହେବା ପରେ ଦେବକୀ ଓ ବସୁଦେବଙ୍କୁ ବନ୍ଦୀ କରି ରଖିବା ସହ ନିଜର ପିତାଙ୍କୁ ନଗ୍ରର କଟୁଆଳ କରି ରଖିଛି ।

ଏ ସବୁ ପୌରାଣିକ ତଥା ଐତିହାସିକ ଘଟଣାକୁ ବାଦ୍ ଦେଇ ଆମ ସମୟ ଓ ସମାଜକୁ ବିଚାରକୁ ମଧ୍ୟ ନିଆଯାଇପାରେ । ଆମ ସମସାମୟିକ ସମାଜରେ ବି ଅନେକ କଂସ, ଆଓରଙ୍ଗଜେବ, ଅଡିପସ୍ ଓ ଦୀପେନ୍ଦ୍ର ଅଛନ୍ତି ବିଭିନ୍ନ ରୂପରେ ।

ପୁତ୍ର ସମ୍ପର୍କରେ 'ବାଇବେଲ୍‌ରେ ଗୋଟିଏ ପ୍ରବାଦ ଅଛି: ଜଣେ ଗୁଣୀ ପୁତ୍ର ତା'ର ପିତାଙ୍କୁ ସୁଖି କରାଇଥାଏ ।' (A wise son maketh a glad father) ଠିକ୍ ସେଇପରି କବି ଓସ୍‌କାର ୱାଇଲ୍ଡ ଏକଦା କହିଥିଲେ: ପିଲାମାନେ ବାପାମାଆଙ୍କୁ ଭଲ ପାଇବାରୁ ହିଁ ଜୀବନ ଆରମ୍ଭ କରନ୍ତି, ପରେ ସେମାନେ ଯେତିକି ବଡ ହେଉଥାନ୍ତି ସେମାନଙ୍କୁ ସେତିକି ବୁଝିବାକୁ ଚେଷ୍ଟା କରନ୍ତି, ବେଳେବେଳେ ସେମାନଙ୍କୁ କ୍ଷମା ବି କରି ଦିଅନ୍ତି ।' (children begin by loving their parents; as they grow older they Judge them; sometimes they forgive them.)

ପରିତାପର କଥା, ଅଶୁଭ ପୁତ୍ରମାନଙ୍କ ପାଖରେ ଏଇ ଆପ୍ତବାକ୍ୟମାନ ଆଦୌ ପ୍ରଯୁଜ୍ୟ ନୁହେଁ ।

*ସଂବାଦ ୧୪.୭.୦୧*

# ଚା' କପ୍‌ରେ ଝଡ଼

ଇଂରାଜୀରେ ଥିବା ରଢ଼ିଟି ବିଷୟରେ ଆମେ ସମସ୍ତେ ପ୍ରାୟତଃ ଅବଗତ । ସେଇଟି ହେଉଛି: ଷ୍ଟର୍ମ ଇନ୍ ଟି କପ୍ ।' ଛୋଟ କଥାକୁ ନେଇ ହେଉଥିବା ତୁମୁଳ କାଣ୍ଡକୁ ପ୍ରକାଶ କରିବା ଲାଗି ଏ ରଢ଼ିର ପ୍ରୟୋଗ ସାଧାରଣତଃ ହୋଇଥାଏ । ଏହାର ଓଡିଆ ପ୍ରତିରୂପ ହେଉଛି: ଚା' କପ୍‌ରେ ଝଡ ।'

ୟା' ଭିତରେ ଭାରତର ପ୍ରଧାନମନ୍ତ୍ରୀ କି ପାକିସ୍ତାନର ରାଷ୍ଟ୍ରପତିଙ୍କ ମଧ୍ୟରେ ଆଗ୍ରାଠାରେ ଆଲୋଚନା ବିଫଳ ହୋଇ ସାରିଥିବା କଥା ମଧ୍ୟ ଆମେ ଜାଣୁଁ । ଆଲୋଚନା ବିଫଳ ହେବାର କାରଣ ସଂପର୍କରେ ପ୍ରତିଦିନ କିଛି ନା କିଛି ପୋଷ୍ଟମର୍ଟମ ଚାଲିଛି ଖବର କାଗଜମାନଙ୍କରେ । ଦୁଇ ରାଷ୍ଟ୍ର ପକ୍ଷରୁ ସାମ୍ବାଦିକ ସମ୍ମିଳନୀରେ ମଧ୍ୟ ଏ ସଂପର୍କରେ ବିସ୍ତୃତ ବିବୃତ୍ତି ଦିଆଯାଇଛି ।

ତେବେ ଶ୍ରୀ ବାଜପେୟୀ ଏବଂ ଶ୍ରୀ ମୁସାରଫଙ୍କ ମଧ୍ୟରେ ଆଲୋଚନା ଆରମ୍ଭ ହେବାର ଅନେକ ଆଗରୁ ଏହା ବିଫଳ ହୋଇ ସାରିଥିଲା ବୋଲି ଏ ଲେଖକ ଅନୁଭବ କରେ । ଯେଉଁଦିନ ଭାରତରେ ରହୁଥିବା ପାକିସ୍ଥାନର ହାଇ କମିଶନର ଅସରଫ୍ ଜାହାଙ୍ଗିର କାଜି ରାଷ୍ଟ୍ରପତି ମୁସାରଫ୍‌ଙ୍କ ସମ୍ମାନାର୍ଥେ ଏକ ଚା' ଭୋଜିର ଆୟୋଜନ କରିବା ସହ ଏହି ଭୋଜକୁ କାଶ୍ମୀର୍‌ର ହୁରିୟାଦ୍ ନେତାମାନଙ୍କୁ ଆମନ୍ତ୍ରଣ କରିବେ ବୋଲି ଘୋଷଣା କଲେ, ସେଇଦିନ ହିଁ ଭାରତ ଓ ପାକିସ୍ତାନ ଭିତରେ ଆରମ୍ଭ ହେଉଥିବା ସମ୍ପର୍କ ମଝିରେ ଗୋଟେ ପାଚେରୀ ଠିଆ ହୋଇଗଲା ।

ଚା' ଭୋଜିର ଅଦଉତି ସଂପର୍କରେ ମଧ୍ୟ ଇତିହାସ ତା'ର ପେଡିରେ ଅନେକ ଘଟଣା ଓ ଅଘଟଣ ସାଇତି ରଖିଥିବା ଆମେ ଜାଣୁଁ । ସେଥିରୁ ଗୋଟିଏ ହେଲା 'ବୋଷ୍ଟନ ଟି ପାର୍ଟି' କଥା । ଘଟଣାଟି ଏଇପରି : ଉତ୍ତର ଆମେରିକାର ବୋଷ୍ଟନ ସହରରେ ୧୭୭୩ ମସିହା ଡିସେମ୍ବର ୧୬ ତାରିଖ ଦିନ ଏଇ ଘଟଣାଟି ଘଟିଥିଲା । ଶତାଧିକ ଲୋକ ସେଦିନ ବୋଷ୍ଟନର ଏକ ବନ୍ଦରରେ ଥିବା ଜାହାଜ ଭିତରକୁ ବଳପୂର୍ବକ ପଶି, ସେଠାରେ ରଖା ଯାଇଥିବା ଚା' ପେଟିକୁ ସମୁଦ୍ରର ଅତଳ ଗର୍ଭକୁ ନିକ୍ଷେପ କରିଥିଲେ । ସେଇଦିନଠୁ ଯଦିଓ ଲୋକେ ପରିହାସ ଛଳରେ ଏହାକୁ 'ବୋଷ୍ଟନ ଟି ପାର୍ଟି' ବୋଲି କହିଥାନ୍ତି, ମାତ୍ର ଏହାଥିଲା ବ୍ରିଟିଶ୍ ଶାସନ ବିରୋଧରେ ଶାସିତ ଆମେରିକାବାସୀ ମାନଙ୍କର ପ୍ରତିବାଦର ସ୍ୱର ।

ଏହା ଥିଲା ବ୍ରିଟିଶ୍ ଶାସନ ବିରୋଧରେ ଆମେରିକାବାସୀଙ୍କ ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ପଦକ୍ଷେପ । ଦୀର୍ଘ ଛ' ବର୍ଷ କାଳ ଅବିରାମ ଲଢ଼େଇ ପରେ ବ୍ରିଟିଶ ସେନାବାହିନୀ ଆମେରିକା ପାଖରେ ଆତ୍ମ ସମର୍ପଣ କରିଥିଲେ । ପ୍ରକାରାନ୍ତରେ କହିବାକୁ ଗଲେ, ବ୍ରିଟିଶ ସରକାର କବଳରୁ ଆମେରିକା ନିଜକୁ ମକ୍ତ କରିବାର ପ୍ରଥମ ଘଟଣା ହେଉଛି ଏଇ 'ବୋଷ୍ଟନ ଟି ପାର୍ଟି' । ପ୍ରତିଟି ଆମେରିକୀୟ ପାଇଁ ଏହା ଏକ ସ୍ମୃତି ସଂପଦ ।

ମାତ୍ର ଗତ ଜୁଲାଇ ୧୪ ତାରିଖରେ ଅସରଫ୍ ଜାହାଙ୍ଗିର କାଜିଙ୍କ ବଗିଚାରେ ହୋଇଥିବା ଟି ପାର୍ଟି ଦୁଇଦେଶ ମଧ୍ୟରେ ଥିବା ସମ୍ପର୍କର ଫାଟକୁ ବେଶ୍ ସୁଦୃଶ୍ୟ କରି ଦେଖାଇବାରେ ସଫଳ ହୋଇଛି ।

କାଶ୍ମୀରର ହୁରିୟାତ୍ କନ୍‌ଫରେନସ୍ ନେତାମାନଙ୍କୁ ଆମନ୍ତ୍ରଣ କରିବା ଫଳରେ ବାଜପେୟୀଙ୍କ ଜାତୀୟ ଗଣତାନ୍ତ୍ରିକ ମେଣ୍ଟ ସରକାର ଏହି ଚା' ଭୋଜିରେ ଯୋଗ ଦେବନି ବୋଲି ରୋକ୍‌ଠୋକ୍ ମନା କରିଦେଲା । ତାଙ୍କର ଯୁକ୍ତି ଥିଲା: ଏଇ ଚା' ଭୋଜିକୁ କାଶ୍ମୀରର କୌଣସି ମନ୍ତ୍ରୀ ଅଥବା ସାଂସଦଙ୍କୁ ଆମନ୍ତ୍ରଣ କରାଯାଇନି ।' ସରକାରଙ୍କ ମତିଗତି ଦେଖି ବିରୋଧୀ ଦଳ ଅର୍ଥାତ୍ କଂଗ୍ରେସ ପାର୍ଟି ତା'ର କନିଷ୍ଠ·ସଦସ୍ୟମାନଙ୍କୁ ପଠାଇବା ସହ ଏହାକୁ ଗୁରୁତ୍ୱ ଦେଉ ନାହିଁ ବୋଲି ପ୍ରମାଣିତ କରିବାକୁ ଚେଷ୍ଟା କଲା । ଏପରିକି ପ୍ରାକ୍ତନ୍ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର, ଦେବେଗୌଡା, ବିଶ୍ୱନାଥ ପ୍ରତାପ ସିଂ ଏବଂ ଇନ୍ଦ୍ର କୁମାର ଗୁଜରାଲ ମଧ୍ୟ ଏଇ ଭୋଜିରେ ଯୋଗ ଦେବାରୁ ନିବୃତ୍ତ ରହିଲେ । ଘଟଣା ଏପରି ଅବସ୍ଥାକୁ ଗତି କରିଥିଲା, ଯେତେବେଳେ ଏଇ ଚା' ଭୋଜିକୁ ବାତିଲ କରାଯିବ ବୋଲି ପାକିସ୍ତାନ ତରଫରୁ ଘୋଷଣା କରାଯାଇଥିଲା

ମାତ୍ର ବାଜପେୟୀ-ମୁସାରଫଙ୍କ ଆଲୋଚନାର ଅଳ୍ପଦିନ ପୂର୍ବରୁ ଘଟଣାର ମୋଡ ବଦଳି ଗଲା । ନିର୍ଦ୍ଧାରିତ ସମୟରେ ମୁସାରଫ ଦିଲ୍ଲୀରେ ପହଞ୍ଚିଲେ, ଅନ୍ୟାନ୍ୟ କାର୍ଯ୍ୟକ୍ରମ ସହ ଚା' ଭୋଜିରେ ମଧ୍ୟ ଯୋଗ ଦେଲେ । ଏବଂ ମିଳିତ ଘୋଷଣାନାମା ପ୍ରକାଶ କରି ନପାରି ୧୬ ଜୁଲାଇର ବିଳମ୍ବିତ ରାତ୍ରିରେ ଇସ୍‌ଲାମାବାଦ ଫେରିଗଲେ ।

ପ୍ରସଙ୍ଗକ୍ରମେ ମନେ ପଡୁଛି ଠେକୁଆ ଓ ସିଂହଙ୍କ କାହାଣୀଟିଏ । ଜଙ୍ଗଲର ଏକ ଛତ୍ର ସମ୍ରାଟ ସିଂହ ଏକଦା ପଶୁମାନଙ୍କ ସଭାରେ ସଭାପତିତ୍ୱ କରିଥିବା ବେଳେ ଘୋଷଣାକଲା ଯେ ପ୍ରତ୍ୟେକ ପଶୁ ଠିଆ ହୋଇ ଗୋଟିଏ ଗପ କହିବେ ଏବଂ ଏଇ ଗପ ଶୁଣି ସଭାସ୍ଥଳରେ ଥିବା ସମସ୍ତ ପଶୁବୃନ୍ଦ ଯଦି ନ ହସନ୍ତି ତେବେ ସିଂହ ଗପ କହିଥିବା ପଶୁଟିକୁ ମାରି ଖାଇବ । ପ୍ରଥମେ ବାଘର ପାଳି ଥିଲା । ଗପଟିଏ ସେ କହିସାରିବା ପରେ ସଭାସ୍ଥିତ ସମସ୍ତ ପଶୁ ହସି ଉଠିଲେ । କେବଳ ଠେକୁଆ ହସିଲା ନାହିଁ । ନିୟମାବଳୀ ଅନୁଯାୟୀ ବାଘର ପ୍ରାଣଗଲା । ପରେ ପରେ ଉଠିଲା ବିଲୁଆ । ଅନେକ ଅଭିଜ୍ଞତା ଥିବାରୁ

ସେ ସୁନ୍ଦର ଭାବେ ତା'ର କାହାଣୀଟି ବର୍ଣ୍ଣନା କରନ୍ତେ ସମସ୍ତ ସମବେତ ପଶୁ ହସିବାକୁ ଲାଗିଲେ । ଏଥର ବି ଠେକୁଆ ହସିଲାନି । ତେଣୁ ବିଲୁଆର ପ୍ରାଣ ମଧ୍ୟ ନାଶ ହେଲା । ତା'ପରେ ପାଳି ପଡିଲା ମିରିଗର । ତରିଡରି ଏଥର ସେ ତା' କାହାଣୀଟି ବର୍ଣ୍ଣନା କରୁଥାଏ, ଏତିକିବେଳେ ଠେକୁଆଟି ଠୋ ଠୋ ହସି ଉଠିଲା । ସିଂହ ଟିକେ ବିରକ୍ତି ହୋଇ କହିଲା: ତା' କଥା ନ ସରୁଣୁ ହସୁଛ କିଆଁ ?' ଠେକୁଆଟି ଧୀର ସ୍ୱରରେ ଉତ୍ତର ଦେଲା: ନାଇଁ ମଣିମା, ମୁଁ ବାଘ କହୁଥିବା ଗପଟି ମନେ ପକେଇ ହସୁଥିଲି ।' ଅଥଚ ବାଘଟି ଅନେକ ଆଗରୁ ମରି ସାରିଥିଲା । ଠିକଣା ସମୟରେ ନ ହସିବା ଫଳରେ ଏପରି ଘଟିଲା ।

ଅନୁରୂପ ଭାବେ, ଟା କପ୍‌ରେ ଉଠିଥିବା ଝଡ ବେଳେ ବାଜପେୟୀ ଓ ମୁସାରଫ୍‌ଙ୍କ ଆଲୋଚନାର ପରିଣତି ସମ୍ପର୍କରେ ଯାହା ଆଶଙ୍କା କରାଯାଉଥିଲା, ତାହା ହିଁ ଘଟିଲା । ଅନେକ ଆଗରୁ ସେ ସୂଚନା ମିଳି ସାରିଥିଲେ ବି ଆମର ନେତୃବୃନ୍ଦ ତାହା ମାନିବାକୁ ପ୍ରସ୍ତୁତ ନଥିଲେ । ଠିକଣା ସମୟରେ ଏଇ ପ୍ରତୀକ ସୂଚନାଟିକୁ ବୁଝି ପାରିଥିଲେ ଆମେ ହୁଏତ ଅନେକ ସମୟ ଓ ଅର୍ଥର ଅପବ୍ୟୟରୁ ବର୍ତ୍ତି ଯାଇପାରିଥାନ୍ତୁ । ନୁହେଁ କି ?

*ସମ୍ବାଦ ୧୧.୧.୦୧*

# ବ୍ୟାଘ୍ରାରୋହଣ

ଏବେ ହାଇସ୍କୁଲ ଏବଂ ଯୁକ୍ତ ଦୁଇ ପରୀକ୍ଷାଫଳ ପ୍ରକାଶ ପାଇବା ପରେ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ ନାମଲେଖାର ଆୟୋଜନ ଚାଲିଛି । ଗତ ପରୀକ୍ଷାଫଳ ପ୍ରକାଶ ପାଇବା ସହ ପ୍ରଥମ ଦଶ କିମ୍ବା କୋଡିଏ ସ୍ଥାନ ଅଧିକାର କରିଥିବା ଛାତ୍ରଛାତ୍ରୀଙ୍କ ସାକ୍ଷାତ୍‌କାର ସବୁ ଖବରକାଗଜରେ ସ୍ଥାନୀତ ହେଉଛି । ଉତ୍ତର ଦେବାକୁ ଯାଇ ଏଇ ଛାତ୍ରଛାତ୍ରୀମାନେ ସେମାନଙ୍କ ଭବିଷ୍ୟତ ସ୍ୱପ୍ନ ଓ ଜୀବନର ଲକ୍ଷ୍ୟ ସମ୍ପର୍କରେ ମଧ୍ୟ ଅବତାରଣା କରୁଛନ୍ତି । ପ୍ରାୟ ଅଧିକାଂଶ ଛାତ୍ର/ଛାତ୍ରୀ ଡାକ୍ତର, ଇଞ୍ଜିନିୟର ଓ ଆଇ.ଏ.ଏସ୍. ଅଫିସର ହେବାକୁ ଚାହୁଁଛନ୍ତି ବୋଲି ଖବର କାଗଜମାନେ ପ୍ରଚାର କରୁଛନ୍ତି ।

ପରୀକ୍ଷା ଫଳ ପ୍ରକାଶ ହେବା ମାତ୍ରେ ଏ ପ୍ରକାର ପ୍ରଚାର ପ୍ରାୟ କିଛି ବର୍ଷ ହେଲା ମିଡିଆ ତରଫରୁ ଚାଲିଛି । ଅଥଚ ବିଗତ ଦଶ ବର୍ଷ ଭିତରେ ପ୍ରକାଶିତ ଫଳାଫଳକୁ ବିଶ୍ଳେଷଣ କରି, ଆମ ଶିକ୍ଷା ବ୍ୟବସ୍ଥାରେ ଥିବା ତ୍ରୁଟିକୁ ସୁଧାରିବା ପାଇଁ ସ୍ୱର ଉତ୍ତୋଳନ କରିବା କଥାଟି ମିଡିଆ ପୂରାପୂରି ଭୁଲିଯାଇଛି । ଏକଥା ବି ଭୁଲିଯାଇଛି ଯେ ମାତ୍ର ଦଶ କିମ୍ବା କୋଡିଏ ଜଣଙ୍କ ସ୍ୱପ୍ନକୁ ପ୍ରଚାର କରି ଏହା ଆହୁରି ଅନେକ ମେଧାବୀ ଛାତ୍ରଛାତ୍ରୀଙ୍କ ମନରେ କୁପ୍ରଭାବ ପକାଇଛି । ସେମାନଙ୍କ ପ୍ରତି ମିଡିଆର କ'ଣ କିଛି କର୍ତ୍ତବ୍ୟ ନାହିଁ ? ଆମେରିକାର ରାଷ୍ଟ୍ରପତି ଜନ୍.ଏଫ୍. କେନେଡି 'ସଫଳତା' ସଂପର୍କରେ ମନ୍ତବ୍ୟ ଦେଇ କହିଥିଲେ: ବିଜୟର ହଜାରେ ବାପା ଅଛନ୍ତି ମାତ୍ର ପରାଜୟ ଗୋଟେ ବାପାମା' ଛେଉଣ୍ଡ ।' (Victory has a thousand fathers but defeat is an orphan) ଯେଉଁ ଛାତ୍ରଛାତ୍ରୀମାନେ ଭବିଷ୍ୟତରେ ଡାକ୍ତର, ଇଞ୍ଜିନିୟର, ଆଇ.ଏ.ଏସ୍. ଅଫିସର ହେବାର ସ୍ୱପ୍ନ ଦେଖୁଛନ୍ତି- ସେମାନେ କ'ଣ ପ୍ରକୃତରେ 'ନିଜେ' ଏ ସ୍ୱପ୍ନ ଦେଖୁଛନ୍ତି ? ପ୍ରସଙ୍ଗକ୍ରମେ ମନେ ପଡୁଛି ଫ୍ରାନ୍‌ଜ କାଫ୍‌କାଙ୍କ କଥା । ମୃତ୍ୟୁ ମୁଖରେ ପଡିଥିବା ସମୟରେ କାଫ୍‌କା ତାଙ୍କର ପ୍ରିୟ ବନ୍ଧୁ ମାକସ୍ ବ୍ରଡ୍‌ଙ୍କୁ ଅନୁରୋଧ କଲେ- ସେ ଲେଖି ଯାଇଥିବା କେତେଗୁଡାଏ ଲେଖାକୁ ତାଙ୍କ ମୃତ୍ୟୁ ପରେ ପୋଡି ନଷ୍ଟ କରି ଦେବାକୁ । ବନ୍ଧୁଙ୍କ ମୃତ୍ୟୁ ପରେ ମାକସ୍ ବ୍ରଡ ଗୋଟିଏ ଡ୍ରାବଲରେ ରଖାଯାଇଥିବା ହାତ ଲେଖାକୁ ପୋଡି ଦେବା ପୂର୍ବରୁ ଉତ୍ସୁକତାର ସହ ପଢ଼ିବାକୁ ଲାଗିଲେ ଏବଂ ଉକ୍ତ ଲେଖାଗୁଡିକ କାଳେ ବିଶ୍ୱବାସୀଙ୍କ କାମରେ ଆସିବ ଭାବି ସେ ସବୁକୁ ପ୍ରକାଶିତ କରିଦେଲେ । ସେଇ ଲେଖା ଭିତରେ ଥିଲା ତେର ବର୍ଷର ଡାଏରୀ । କାଫ୍‌କାଙ୍କ 'ଦିନଲିପି'ରେ

ପ୍ରଥମରୁ ସେ ଲେଖିଥିଲେ ଯେ ପାଠ ପଢ଼ିବା ଫଳରେ ସେ ନଷ୍ଟ ହୋଇଗଲେ ।

ପାଠପଢ଼ି ନଷ୍ଟ ହୋଇଯିବା କଥାଟା ହୁଏତ ସେ ପ୍ରଥମେ କହିଥିଲେ । ତାଙ୍କର ଦୁଃଖକୁ ପ୍ରମାଣିତ କରିବାକୁ ଯାଇ ସେ ଲେଖିଥିଲେ- ପାଠ ପଢ଼ିବା ବେଳେ, ତାଙ୍କ ବାପା ମା'ଙ୍କ ଇଚ୍ଛା, ସ୍କୁଲରେ ଶିକ୍ଷକଙ୍କ ଇଚ୍ଛା ଏବଂ ସର୍ବୋପରି ସମାଜରେ ଥିବା ଅନ୍ୟାନ୍ୟ ବ୍ୟକ୍ତିଙ୍କ ଇଚ୍ଛାକୁ ପୂରଣ କରିବାକୁ ଯାଇ ସେ ନିଜ ଇଚ୍ଛା ବା ସ୍ୱପ୍ନକୁ ହତ୍ୟା କରିଛନ୍ତି ।

ତା'ରି ପୁନରାବୃତ୍ତି ହିଁ ଘଟି ଚାଲିଛି ଆମ ଦେଶରେ । ସବୁ ବାପା ମା', ଶିକ୍ଷକ ଓ ସମାଜ ସ୍ୱପ୍ନର ଇମାରତ୍ ଗଢ଼ନ୍ତି ଛାତ୍ରଟି ପାଇଁ । ରୋଗୀ ସେବା କରି ଫ୍ଲୋରେନ୍ସ୍ ନାଇଟିଙ୍ଗେଲ୍ ହେବାର ସ୍ୱପ୍ନ ଦେଖନ୍ତି ନାହିଁ ବରଂ ପ୍ରାଇଭେଟ୍ 'ପ୍ରାକ୍ଟିସ୍ କରି ରୋଗୀଠୁ ଅର୍ଥ ଆଦାୟ କରିବା ପାଇଁ ଏମାନେ ଡାକ୍ତର ହୁଅନ୍ତି । ସାର୍ ବିଶ୍ୱେଶରାୟା ନ ହୋଇ ପୋଲ ଓ କୋଠା ନିର୍ମାଣ କରି ନିଜ ସମ୍ପତ୍ତି ଠୁଳ କରିବା ପାଇଁ ଏମାନଙ୍କୁ ଇଞ୍ଜିନିୟର କରିବାର ସ୍ୱପ୍ନ ଦେଖାଯାଏ । ସ୍ୱପ୍ନ ଦେଖୁଥିବା ଏଇ ଛାତ୍ରଛାତ୍ରୀଙ୍କ ଭିତରୁ କେହି କେବେ ତ କହୁନି ମୁଁ ଏମ୍.ଏଫ୍.ହୁସେନ୍‌ଙ୍କ ପରି ଚିତ୍ରଶିଳ୍ପୀ ହେବି, ରବି ଶଙ୍କରଙ୍କ ପରି ସୀତାରବାଦକ ଅଥବା ଜୟ ପ୍ରକାଶଙ୍କ ପରି ମୂଲ୍ୟବୋଧ ରାଜନୀତି କରିବି । ଗୋଟାଏ ସୁସ୍ଥ, ସମୃଦ୍ଧ ଓ ସଂସ୍କୃତି ସଂପନ୍ନ ସମାଜ ନିର୍ମାଣରେ କ'ଣ ଏମାନଙ୍କର କିଛି ଅବଦାନ ନାହିଁ ?

ପ୍ରତିଟି ମଣିଷ ସ୍ୱପ୍ନାକ୍ରାନ୍ତ । ଜଣେ ମଣିଷର ସଫଳ ଜୀବନ ପାଇଁ ଏହାର ଆବଶ୍ୟକତା ଅପରିହାର୍ଯ୍ୟ । ମାତ୍ର ସଫଳ ଜୀବନ ଅପେକ୍ଷା ଏକ ସାର୍ଥକ ଜୀବନ ଜୀଇଁବାର ଇଚ୍ଛା ହିଁ ଏକ ଅର୍ଥପୂର୍ଣ୍ଣ ସ୍ୱପ୍ନଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଥରେ ସେ ସ୍ୱପ୍ନର କାଳେସୀ ଲାଗିଲେ ଆଉ ସେଥିରୁ ମୁକ୍ତି ମିଳେନା ଜୀବନସାରା । ପ୍ରକାରାନ୍ତରେ ଇଂରାଜୀରେ ଏକ ପ୍ରବାଦ ଅଛି: ଯିଏ ବ୍ୟାଘ୍ରାରୋହଣ କରିଥାଏ ସେ ତଳକୁ ଓହ୍ଲାଇବାକୁ ଡରେ । (He who rides a tiger is afraid to dismount) ସ୍ୱପ୍ନ ଦେଖିବା ଓ ବାଘ ପିଠିରେ ବସିବା ଏକା କଥା ।

ଅବାଟରେ ଚାଲି ନିଜ ସହ ଅନ୍ୟ ପାଇଁ ବି ବାଟ ତିଆରି କରିବା ଏବଂ ପାରମ୍ପରିକତାର ପ୍ରତିକୂଳ ସ୍ରୋତରେ ପହଁରି ନୂତନ କୂଳଟିଏ ଆବିଷ୍କାର କରିବା ହିଁ ସାର୍ଥକ ଜୀବନର ଲକ୍ଷ୍ୟ । ସେ ପ୍ରକାର ଜୀବନକୁ ଆପଣେଇ ନେବାଲାଗି ଆଜିର ଯୁବ ସମାଜ ପାଇଁ ଅପ୍ରାସଙ୍ଗିକ ହେବନାହିଁ ବୋଲି ଆଶା କରାଯାଉ ।

*ସଂବାଦ ୨୮.୭.୦୧*

# ଭୋକ

ଏବେ କାଶୀପୁରରେ ଅନାହାର ମୃତ୍ୟୁ ସମ୍ବାଦ ନେଇ କେବଳ ରାଜ୍ୟ କାହିଁକି, ଭାରତ ସରକାରଙ୍କ ମୁଣ୍ଡବ୍ୟଥା ଆରମ୍ଭ ହୋଇଛି । ଓଡିଶା ସରକାରଙ୍କ ସଫେଇ ହେଉଛି: ଏ ମୃତ୍ୟୁ ସବୁ ଅନହାରଜନିତ ନୁହେଁ, ବରଂ ଅଖାଦ୍ୟ ବା ବିଷାକ୍ତ ଖାଦ୍ୟ ଖାଇବା ଯୋଗୁଁ ହୋଇଛି ।' ବିରୋଧୀଦଳଙ୍କ ଅଭିଯୋଗ ହେଉଛି: ଭୋକିଲାଙ୍କୁ ଖାଦ୍ୟ ଯୋଗାଇବାରେ ସରକାର ସଂପୂର୍ଣ୍ଣ ବିଫଳ ହୋଇଛନ୍ତି । ଯଦି ଲୋକଙ୍କକ ପାଖରେ ଚାଉଳ ଥା'ନ୍ତା ତେବେ ସେମାନେ ଫିମ୍ପି ମାରି ଯାଇଥିବା କୋଇଲି ଖାଇ ମୃତ୍ୟୁକୁ ଆଲିଙ୍ଗନ କରି ନଥାନ୍ତେ ।

ରାଜନୈତିକ ନେତାମାନଙ୍କ ଆରୋପ ଓ ପ୍ରତ୍ୟାରୋପ କିଛି ନୂଆ କଥା ନୁହେଁ । ଖବର କାଗଜ ଆଉ ଦୂରଦର୍ଶନ ପର୍ଦ୍ଦାରେ ସେମାନଙ୍କ ଯୁକ୍ତି ଶୁଣିବା ପରେ ମନେ ପଡେ ଅଲ୍‌ଫୋନସ୍ ଡି.ଏଲ୍. ମାର୍ଟିନେଙ୍କ ଉକ୍ତିଟି: 'ଲୋକ ପ୍ରତିନିଧିମାନଙ୍କୁ ମୁଁ ଯେତେ ଅଧିକ ଥର ଦେଖେ, ସେତେ ଅଧିକ ମୁଁ ମୋ'ର କୁକୁରମାନଙ୍କୁ ତାରିଫ କରେ ।'

ପରମାଣୁ ଶକ୍ତିର ଅଧିକାରୀ ହୋଇଥିବା ଭାରତ ବର୍ଷର ଶହେ କୋଟି ଲୋକଙ୍କ ଭିତରୁ ପ୍ରାୟ ତିନି କୋଟି ଲୋକ ପ୍ରତିରାତିରେ ଭୋକରେ ହିଁ ଶୁଅନ୍ତି ଯଦିଓ ଖାଦ୍ୟ ଶସ୍ୟର ପ୍ରାଚୁର୍ଯ୍ୟରେ ଏ ଦେଶ ବୁଡି ରହିଥିବାର ପରିସଂଖ୍ୟାନ ବାରମ୍ବାର ଖବରକାଗଜମାନଙ୍କରେ ପ୍ରକାଶିତ ହୁଏ । ଭାରତବର୍ଷ ଏକ ବିରୋଧାଭାସର ଦେଶ । ଏଠି ପ୍ରକୃତି ଗରିବ ନୁହେଁ । ଅଥଚ ମଣିଷ ନିଜ ପାଇଁ ଦୁଃଖ ଓ ଦାରିଦ୍ର୍ୟକୁ ଆପଣେଇ ନେବାରେ ପ୍ରମୁଖ ଭୂମିକା ଗ୍ରହଣ କରେ । ଶିକ୍ଷା, ସ୍ୱାସ୍ଥ୍ୟ ଓ ଜୀବନ ଯାପନ ପ୍ରଣାଳୀକୁ ଆଧାର କରି ପ୍ରକାଶିତ ହେଉଥିବା ବିବରଣୀର ନିମ୍ନସ୍ତରରେ ସବୁବେଳେ ଭାରତ ନିଜକୁ ରଖି ଆସିଛି ବିଶ୍ୱସ୍ତରରେ । ହୁଏତ ଏକ ବିଂଶ ଶତାବ୍ଦୀରେ ଏ ପରିସଂଖ୍ୟାନରେ ପରିବର୍ତ୍ତନ ଆସିବ, ଏପରି ବିଶ୍ୱାସ ମଧ୍ୟ ଏ ଲେଖକର ନାହିଁ ।

କଥାଟିଏ ମନେ ପଡୁଛି । ଲୋକପ୍ରିୟ ତଥା ସମ୍ଭ୍ରାନ୍ତ ପତ୍ରିକା 'ରିଡର୍‌ସ୍ ଡାଇଜେଷ୍ଟ' ତରଫରୁ ଏକ କୌତୁହଳୋଦ୍ଦୀପକ ସର୍ଭେ ବିଭିନ୍ନ ଦେଶରେ କରାଯାଇଥିଲା । ବିଭିନ୍ନ ଦେଶର ଚର୍ଚ୍ଚ, ସିନେମାହଲ, ପାର୍କ ଓ ଟ୍ରେନ୍ ତଥା ଅନ୍ୟାନ୍ୟ ଜନଗହଳି ସ୍ଥାନରେ ଏଇ ପତ୍ରିକା ପକ୍ଷରୁ ଏଗାର ଶହଟି ମନିପର୍ସରେ ଉକ୍ତ ଦେଶର ସମତୁଲ ଦୁଇ ହଜାର ଟଙ୍କାର ମୁଦ୍ରା ରଖାଯାଇ ଫୋପାଡି ଦିଆଗଲା । ଉକ୍ତ ମନିପର୍ସ ଭିତରେ ପତ୍ରିକା ସହ ସଂପୃକ୍ତ

ଜଣେ ଲେଖାଏଁ ବ୍ୟକ୍ତିଙ୍କ ଠିକଣା ଓ ଟେଲିଫୋନ୍ ନମ୍ବର ରହିଥିଲା । ପରେ ଦେଖାଗଲା ନରୱେ ଦେଶରୁ ଶତକଡା ଶହେ ଭାଗ ମନିପର୍ସ, ଠିକଣା ଦିଆଯାଇଥିବା ବ୍ୟକ୍ତିଙ୍କ ପାଖକୁ ଫେରି ଆସିଛି ଏବଂ ଜାପାନରେ ଶତକଡା ସତୁରୀ, ଆମେରିକାରେ ଶତକଡା ସତଷଠୀ, ବ୍ରିଟେନ୍‌ରେ ଶତକଡା ପଞ୍ଚଷଠୀ, ଇଟାଲିରେ ଶତକଡା ପଞ୍ଚତ୍ରିଶ, ଚୀନ୍‌ରେ ଶତକଡା ତିରିଶ ଏବଂ ମେକ୍ସିକୋରେ ଶତଦଡା ଏକୋଇଶି ଭାଗ ମନିପର୍ସ ଠିକଣା ରଖାଯାଇଥିବା ବ୍ୟକ୍ତିଙ୍କ ପାଖକୁ ଫେରି ଆସିଥିଲା । ସ୍ୱତଃ ମନରେ ପ୍ରଶ୍ନ ଉଠୁଛି- ଭାରତରେ କ'ଣ ହେଲା ? ଅଥଚ ପତ୍ରିକା ପକ୍ଷରୁ ଭାରତରେ ସର୍ଭେ କରାଗଲା ନାହିଁ । କାରଣ, ସେମାନେ ଭାରତୀୟ ଲୋକ ଚରିତ୍ର ସମ୍ପର୍କରେ ଆଗରୁ ଅବହିତ ଥିଲେ । ଜାଣିଶୁଣି ପଇସା ହରାଇବାକୁ କାହାକୁ ଭଲ ଲାଗେ ? ସେମାନେ ଜାଣନ୍ତି ଭାରତ ବର୍ଷର ଜନତା କେତେ ଭୋକିଲା ।

ଭୋକକୁ ନେଇ ଏବେ ସୁନ୍ଦର ରାଜନୀତି ଚାଲିଛି ସବୁଆଡେ । ସରକାର (ଉଭୟ ରାଜ୍ୟ ଓ କେନ୍ଦ୍ର), ବିରୋଧୀଦଳ ଓ ନେତୃବର୍ଗ, ଜାତୀୟ ମାନବିକ ଅଧିକାର ଆୟୋଗ, ସାମ୍ବାଦିକଗଣ, ସୁପ୍ରିମ୍ କୋର୍ଟର ମାନ୍ୟବର ବିଚାରପତିଙ୍କ ଦୃଷ୍ଟି ଏବେ କାଶୀପୁରର 'ଅନାହାର ମୃତ୍ୟୁ' ଉପରେ ନିବଦ୍ଧ । ଦୁଃଖର କଥା, ଜଣେ ହେଲେ ଲେଖକଙ୍କୁ 'କାଶୀପୁର'ର ଘଟଣା ବିଚଳିତ କରିପାରିନି ଏ ଯାକେ । ସେମାନେ ଆଗାମୀ 'ପୂଜାସଂଖ୍ୟା'ର ପତ୍ରିକା ପାଇଁ ଲେଖା ପ୍ରସ୍ତୁତ କରିବାରେ ଏତେ ବ୍ୟସ୍ତ ଯେ ଏଇ ଦୁଃଖଦ ସମ୍ବାଦ ମଧ୍ୟ ଶୁଣିବାକୁ ଅଥବା ଦେଖିବାକୁ ସମୟ ନାହିଁ ସେମାନଙ୍କର । କେହି କେହି ଏକଥା ଶୁଣି ନାକ ଟେକୁଛନ୍ତି: ଏଇଟା ଆମ ଦାୟିତ୍ୱ ନୁହେଁ ସରକାରଙ୍କର ।' ଏମାନେ ଭୋକ ଉପରେ ଦେଉଥିବା ଭାଷଣ ଏକ କୃତ୍ରିମତା ଛଡା ଆଉ କିଛି ନୁହେଁ । ୧୯୬୩ ମସିହା ଜୁନ୍ ଚାରି ତାରିଖରେ 'ବିଶ୍ୱ ଖାଦ୍ୟ ସମାବେଶ'ରେ ଭାଷଣ ପ୍ରସଙ୍ଗରେ ଜନ୍.ଏଫ୍. କେନେଡି ଯେଉଁ ବିବୃତି ଦେଇଥିଲେ, ତାହା ସେମାନଙ୍କୁ ସୂଚାଇ ଦେବା ଉଚିତ ହେବ : ଭୋକ ବିରୋଧରେ ଲଢ଼େଇ ହିଁ ପ୍ରକୃତରେ ମଣିଷ ସମାଜର ମୁକ୍ତି ପାଇଁ ଲଢ଼େଇ ।'

ସାମାଜିକ ଅବ୍ୟବସ୍ଥା ପରିପ୍ରେକ୍ଷୀରେ ଲେଖକଟିର କ'ଣ କିଛି ଦାୟିତ୍ୱ ନାହିଁ ? ସେ କ'ଣ ଘର ପୋଡି ଯାଉଥବା ବେଳେ କେବଳ ବୀଣାବାଦନ ହିଁ କରି ଚାଲିଥିବ ? ପ୍ରସଙ୍ଗକ୍ରମେ ଦୁଇଜଣ ପ୍ରଥିତ ଯଶା ଲେଖକଙ୍କ କଥା ମନକୁ ଆସେ । ଅମିତାଭ ଘୋଷ ଓ ଅରୁନ୍ଧତୀ ରାୟ । ଯଦିଓ ଇଂରାଜୀରେ ଲେଖି ଖ୍ୟାତି ଅର୍ଜନ କରିଛନ୍ତି ମାତ୍ର ଭାରତୀୟ ସାମାଜିକ ତଥା ରାଜନୈତିକ ଉଷ୍ମତା ସମ୍ପର୍କରେ ସେମାନେ ଆବଶ୍ୟକ ସ୍ଥଳେ ପ୍ରତିବାଦର ସ୍ୱର ଉଠେଇଛନ୍ତି ।

୧୯୯୮ ମସିହା ମେ' ୧୧ ତାରିଖରେ ଭାରତ ସରକାର ପୋଖରାନ୍‌ଠାରୁ

୨୦ ମାଇଲ ଦୂରରେ କରିଥିବା ପାଞ୍ଚଗୋଟି ପରମାଣୁ ବୋମା ବିସ୍ଫୋରଣ ପରେ ସେ ସ୍ଥାନକୁ ଯାଇ ନିଜେ ତାଙ୍କ ଭ୍ରମଣ କାହାଣୀ 'କାଉଣ୍ଟ ଡାଉନ୍'ରେ ଶ୍ରୀ ଘୋଷ ଲେଖିଥିଲେ: ଉପମହାଦେଶରେ ପରମାଣୁ ବୋମା ବିସ୍ଫୋରଣ ଏକ ଗୃହଯୁଦ୍ଧ ସହ ସମାନ । କାରଣ, ଶାସକମାନଙ୍କ ମନରେ ଯାହା ବିରୋଧରେ ଏଇ ବିସ୍ଫୋରଣ ଉଦ୍ଦିଷ୍ଟ ଥାଏ ସେମାନେ ଅବଶେଷରେ ତାଙ୍କ ନିଜ ଲୋକଙ୍କ ବ୍ୟତୀତ ଅନ୍ୟ କେହି ନୁହେଁ ।'

ଅନୁରୂପ ଭାବେ ଅରୁନ୍ଧତୀ ରାୟ ମଧ୍ୟ ସେ କଥା ଦୋହରାଇଥିଲେ ତାଙ୍କ ବହି 'ଦି ଏଣ୍ଡ ଅଫ୍ ଇମାଜିନେସନ୍'ରେ । ପାକିସ୍ତାନ ବିରୋଧରେ ପରମାଣୁ ବୋମା ପ୍ରୟୋଗକୁ ସମାଲୋଚନା କରି ସେ କହିଥିଲେ: ଯଦିଓ ଆମେ ଅଲଗା ଅଲଗା ଦେଶ, ଆମେ ଗୋଟିଏ ଆକାଶ, ପବନ ଆଉ ପାଣିର ଅଂଶୀଦାର । ପରମାଣୁ ବୋମା ବିସ୍ଫୋରଣ ଜନିତ ତେଜସ୍କ୍ରିୟ ବସ୍ତୁର ଗତି ଏଇ ପାଣି ଓ ପବନର ଗତି ଉପରେ ନିର୍ଭର କରେ । ଲାହୋର ଏବଂ ଅମୃତସର ସହର ଭିତରେ ଦୂରତା ମାତ୍ର ତିରିଶ ମାଇଲ୍ । ଆମେ ଲାହୋରରେ ବୋମା ପକାଇଲେ ଏହା ପଞ୍ଜାବକୁ ଜାଳିଦେବ । ଆମେ କରାଚିରେ ବୋମା ବିସ୍ଫୋରଣ କଲେ, ଗୁଜରାଟ, ରାଜସ୍ଥାନ ଏପରିକି ବମ୍ବେ ମଧ୍ୟ ଜଳିଯିବ । ପାକିସ୍ତାନ ବିରୋଧରେ କୌଣସି ପରମାଣୁ ଯୁଦ୍ଧ ଆମ ନିଜ ଲୋକଙ୍କ ବିରୋଧରେ ଲଢ଼ିବା ପରି ହେବ ।' ଏମାନଙ୍କ ପ୍ରତିବାଦ ବୁଦ୍ଧିଜୀବୀ ମହଲରେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା ସେତେବେଳେ ।

ଏଇ ପରିପ୍ରେକ୍ଷୀରେ ଓଡିଶାର ବୁଦ୍ଧିଜୀବୀ ଓ ଲେଖକମାନେ ଫ୍ରେଞ୍ଚ କବି ଫୋଣ୍ଟାନେଙ୍କ ସହ ସମସ୍ୱରରେ ''ବୁଭୁକ୍ଷୁର ଭାଷଣ ଶୁଣିବାକୁ ବେଳ ନାହିଁ'' ବୋଲି ଗାଇ ଉଠିବେ-ଅନ୍ତତଃ ଏତିକି ଆଶା କରାଯାଉ ।

*ସଂବାଦ ୧୭.୯.୦୧*

# ମାଲୁଣୀର ଫୁଲ

ଯେଉଁମାନେ କଟକ ସହରର ବାସିନ୍ଦା ଅଥବା ଉକ୍ତ ସହରକୁ ଭ୍ରମଣରେ ଆସିଥିବେ, ସେଇ ବ୍ୟକ୍ତିଙ୍କ ଦୃଷ୍ଟିରୁ ଗୋଟିଏ କଥା ନିଶ୍ଚୟ ବାଦ୍ ପଡିନଥିବ । ବାଦାମବାଡିର ରାସ୍ତାକଡରେ ସଗର୍ବେ ଠିଆ ହୋଇଥିବା ହୋର୍ଡିଂଗୁଡିକ ଆଖି ସାମ୍ନାକୁ ନିଶ୍ଚୟ ଆପେ ଆପେ ଆସିଯିବ । ଏହି ବିଜ୍ଞାପନ ସବୁ ଦେଖିଲେ ମନେ ହେବ- ଏ ରାଜ୍ୟରେ ଆଉ କିଛି ହେଉ ବା ନ ହେଉ, ସଂଗୀତର ଆଦର ବେଶ୍ ବଢ଼ି ଚାଲିଛି; ସାଂସ୍କୃତିକ ଆନ୍ଦୋଳନରେ ଏ ରାଜ୍ୟ ଆଦୌ ପଛୁଆ ନୁହେଁ ।

ଛତୁ ଫୁଟିଲା ପରି, ଏଇ ହୋର୍ଡିଂମାନଙ୍କରେ ନୂଆ ନୂଆ କ୍ୟାସେଟ୍ ତିଆରି କରୁଥିବା ସଂଗୀତ ନିର୍ଦ୍ଦେଶକ, ଗାୟକ, ଗାୟିକା ଓ ଗୀତିକାରଙ୍କ ନାଁ ସବୁ ଦେଖିବାକୁ ମିଳେ । ପୁଣି ମାସେ କି ଦୁଇମାସ ଭିତରେ ସେ ସବୁ ନାଁର ପରିବର୍ତ୍ତନ ହୋଇ ସେଠି ନୂଆ ନାଁ ବସିଯାଏ । ଏଇ ବିଜ୍ଞାପନ-ବିପଣୀରେ ମିଳୁଥିବା କ୍ୟାସେଟ୍, ଗୀତିକାର ଏବଂ ସଂଗୀତ ନିର୍ଦ୍ଦେଶକଙ୍କୁ ଲୋକେ ଏତେ ଜଲଦି ଭୁଲିଯାଆନ୍ତି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ଅବଶ୍ୟ ଏଠି କହିବା ପ୍ରାସଙ୍ଗିକ ହେବ ଯେ ଓଡିଆରେ ଏବେ ଲେଖା ଯାଉଥିବା ଅନେକ ଗୀତ ନିମ୍ନ ରୁଚିର ଏବଂ ଏଥିରେ ଦିଆଯାଉଥିବା ସଂଗୀତ ଓ କଣ୍ଠଶିଳ୍ପୀଙ୍କର ଆଦୌ ସାଧନା ଥିବା ପରି ମନେହୁଏ ନାହିଁ । ହୁଏତ ସେଇ କାରଣରୁ ଏମାନେ ଜନସାଧାରଣଙ୍କ ମାନସପଟରେ କୌଣସି ଦୀର୍ଘସ୍ଥାୟୀ ପ୍ରଭାବ ପକାଇ ପାରୁନାହାନ୍ତି ।

ସାଧନା ଥାଉ କି ନ ଥାଉ, କ୍ୟାସେଟ୍ କମ୍ପାନୀଗୁଡିକ ଛତୁ ଫୁଟିବା ପରି ଜନ୍ମ ନେଇ ସାରିଛନ୍ତି । ଏକଥା କେବଳ ଓଡିଶାରେ ନୁହେଁ, ସାରା ଭାରତବର୍ଷକୁ ସଂକ୍ରମିତ କରିଛି । ଏଇ କଂପାନୀର କଣ୍ଠ ଶିଳ୍ପୀମାନଙ୍କ ଉଦ୍ଦେଶ୍ୟରେ ବିଶିଷ୍ଟ ଗଜଲ ଗାୟକ ଜଗ୍‌ଜିତ୍ ସିଂ ମନ୍ତବ୍ୟ ଦେଇ ଥରେ କହିଥିଲେ, ''ଏମାନେ ବାଥରୁମ୍‌ରେ ଗୁଣୁଗୁଣୁ ହୋଇ ଗୋଟେ ଗୀତ ଗାଇଦେଇ ଏବଂ ସଂଗେ ସଂଗେ ଷ୍ଟୁଡିଓକୁ ଆସି ତାକୁ ରେକର୍ଡିଂ କରୁଛନ୍ତି ।'' କେବଳ କଣ୍ଠଶିଳ୍ପୀ କାହିଁକି ଗୀତିକାରମାନଙ୍କ କଥା ମଧ୍ୟ ଉଣା ଅଧିକେ ତଦ୍ରୂପ । ଅତୀତରେ ଲେଖାଯାଉଥିବା ଗୀତ ଗୁଡିକରେ ଯେଉଁଭଳି ଚକିତ କରିଦେବା ଗୁଣ ବା ସର୍‌ପ୍ରାଇଜିଂ ଏଲିମେଣ୍ଟ ଥିଲା ଓ ଭାବୋଦ୍ଦୀପକ ହୋଇ ପାରୁଥିଲା, ଆଜିକାଲିର ଗୀତରେ ସେ ସବୁ ଦେଖିବାକୁ ମିଳୁ ନାହିଁ ।

ଯେଉଁ ସଂଗୀତ ତା'ର ଶବ୍ଦଗତ ଧ୍ୱନି ଓ ଛନ୍ଦଗତ ସୁର୍‌ରେ ଶ୍ରୋତାର ହୃଦୟ କନ୍ଦରକୁ ଉଦ୍ବେଳିତ କରୁଥିଲା, ଚିତ୍ତବୃତ୍ତିକୁ ସ୍ତବ୍ଧ କରି ରଖୁଥିଲା, ତଥାକଥିତ ଆଧୁନିକତା

ଅପସଂସ୍କୃତିର ସଂକ୍ରମଣରେ ସେଠି ସ୍ୱପ୍ନ, କଳ୍ପନାବିଳାସ, ପ୍ରେମ, ଭକ୍ତି ଓ ରହସ୍ୟମୟତାର ଅପମୃତ୍ୟୁ ହେଲା । ଅସୂୟାକୁ ଆରାଧ୍ୟ ଦେବତାର ସମ୍ମାନ ମିଳିଲା । ଅଶ୍ଳୀଳ ବାସ୍ତବତାବାଦର ରାକ୍ଷସ ରାଜରାସ୍ତାରେ ନିଜର ଅହଂକାରକୁ ସାବ୍ୟସ୍ତ କରିବସିଲା ।

ଗୀତକୁ ଲୋକପ୍ରିୟ କରିବାରେ ସଂଗୀତ ସଂଯୋଜନାର ଗୁରୁତ୍ୱ ରହିଚି ସବୁବେଳେ । ଏବେ ଗୁଡାଏ ହାଉ ଯାଉ କରୁଥିବା ଧ୍ୱନିକୁ ସଂଗୀତ କୁହାଯାଉଛି । ଏକଦା କୁହାଯାଉଥିଲା: ଯେମିତି ଦୃଷ୍ଟି ବିଜ୍ଞାନ ହେଉଛି ଆଲୋକର ଜ୍ୟାମିତି, ଠିକ୍ ସେଇପରି ସଂଗୀତ ହେଉଛି ଶବ୍ଦର ଗଣିତ ।' (Music is arithmetic of sounds as optics is the geometry of Light) ଯେଉଁ ସଂଗୀତ ତା'ର ସ୍ୱପ୍ନିଳ ଡେଣାରେ ତା'ର ଶ୍ରୋତାକୁ ଅଜଣା ଇଲାକାକୁ ନେଇ ଯାଉଥିଲା ଏବେ ସେଇ ସଂଗୀତ ତା'ର ପ୍ରିୟ ଶ୍ରେତାକୁ ରୌଦ୍ରତପ୍ତ ମରୁଭୂମି ମଝିରେ ଛାଡି ଦେଇ ଆସୁଛି । ମଣିଷର ନିସଂଗପଣିଆକୁ ଜାହିର୍ କରିବା ଲାଗି ସଂଗୀତର ଜନ୍ମ ହୋଇଥିଲା । ମାତ୍ର ଏବେ ସଂଗୀତକାରମାନେ ସୃଷ୍ଟି କରୁଥିବା ସଂଗୀତକୁ ଶୁଣିଲେ ଆପେ ଆପେ ମନେ ପଡନ୍ତି ସଂଗୀତକାର ରୋସିନି: ''ମତେ ଧୋବା ଲୁଗାର ତାଲିକାଟେ ଦିଅ, ମୁଁ ତା' ଭିତରେ ସଂଗୀତ ସୃଷ୍ଟି କରିଦେବି ।''

ଏବେ ସଂଗୀତ ଜଗତରେ ଅପମିଶ୍ରଣ ପ୍ରାଦୁର୍ଭାବ ଏତେ ପରିମାଣରେ ବେଶି ଯେ ଭଲ ସଂଗୀତ ଓ ଖରାପ ସଂଗୀତ ଭିତରେ ପାର୍ଥକ୍ୟ ଅନୁଭବ କରିବା ମୁସ୍କିଲ୍ ବ୍ୟାପାର ହୋଇଯାଇଛି । କିଛି ବର୍ଷ ପୂର୍ବେ ଯେଉଁ ଅଶ୍ଳୀଳ ସଂଗୀତଗୁଡିକ ପରିବାରର ଲୋକଙ୍କ ସହ ଶୁଣିବା ଅସହ୍ୟ ହୋଇ ପଡୁଥିଲା ଏବେ ସେ ପ୍ରକାରର ଯନ୍ତ୍ରଣା ଅନୁଭବ କରୁନାହାନ୍ତି ଶ୍ରୋତାଗଣ । ମାଦକଦ୍ରବ୍ୟ ପରି ଏହା ଧୀରେ ଧୀରେ ମାନସିକତାକୁ ଗ୍ରାସ କରିବା ଆରମ୍ଭ କରିଛି । ମନେପଡୁଛି ଲୋକ କଥାଟିଏ । ଥରେ ଶୁଖୁଆ ବିକ୍ରି କରୁଥିବା କିଛି ମହିଳା ସେମାନଙ୍କ ଶୁଖୁଆ ବିକ୍ରି କରିବା ପରେ ବଜାରରୁ ନିଜ ଗାଁକୁ ଫେରୁଥିଲେ । ରାସ୍ତାରେ ଅନ୍ଧାର ହୋଇ ଯିବାରୁ ନିକଟସ୍ଥ ଏକ ମାଲୁଣୀର ଘରେ ରାତିଟି କଟାଇବା ପାଇଁ ଗଲେ । ମାଲୁଣୀର ଘର ସାରା ନାନା ରକମର ସୁଗନ୍ଧିତ ଫୁଲର ମହମହ ବାସ୍ନା । ଯଦିଓ ମାଲୁଣୀଟି ସେମାନଙ୍କୁ ଶୋଇବା ଲାଗି ସମ୍ମତି ଦେଇଥିଲା, ମାତ୍ର ସେମାନେ ଫୁଲର ବାସ୍ନାରେ ଆଦୌ ଅଭ୍ୟସ୍ତ ନ ଥିବାରୁ ରାତି ସାରା ଶୋଇ ପାରିନଥିଲେ । ଫଳରେ ରାତି ଅଧରେ ସେମାନଙ୍କ ପାଖରେ ରହିଯାଇଥିବା ଶୁଖୁଆକୁ ଆଣି ନିଜ ପାଖରେ ରଖିବାରୁ ନିଦ ହୋଇଥିଲା । ଶୁଖୁଆ ଗନ୍ଧରେ ଅଭ୍ୟସ୍ତ ନାକ, ଫୁଲର ମହକ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲା । ଏବେକାର ଗୀତ ଓ ସଂଗୀତ ଶୁଖୁଆର ତୀବ୍ର ଗନ୍ଧରେ ସଂକ୍ରମିତ ।

ମାତ୍ର ଏକବିଂଶ ଶତାବ୍ଦୀରେ ଆମେ ପୁଣି ମାଲୁଣୀର ଫୁଲର ମହକ ଆଘ୍ରାଣ କରିବା ଓ ସଂଗୀତର ମଧୁର ଝଙ୍କାରରେ ବିମୋହିତ ହେବା- ସେ ଆଶା ଖୁବ୍ ତୀବ୍ରତର ହେଲାଣି ଏବେ ।

*ସଂବାଦ ୧୪.୫.୦୧*

# ନିଶବ୍ଦ ବଜ୍ରପାତ

ପ୍ରାୟ ଚାରିବର୍ଷ ତଳର କଥା । ଏକ ଅଳସ ଅପରାହ୍ନରେ ଜଣେ ଅଗ୍ରଜ ବନ୍ଧୁଙ୍କ ସହ ବସି ଆଳାପ କରୁଥାଏ । ଠିକ୍ ଏତିକି ବେଳେ ଜଣେ ଭଦ୍ରବ୍ୟକ୍ତି କୋଠରୀ ଭିତରକୁ ପଶି ଆସିଲେ । ସୌମ୍ୟ, ଶାନ୍ତ ଓ ସରଳ ଚେହେରା ଭିତରେ ଦୁଇଟି ଚଞ୍ଚଳ ଆଖି ତାଙ୍କର ମୋ ଉପରେ ପଡିଲା । ମୁହଁରେ ହସ ଖେଳାଇବା ଆଗରୁ ମୋର ବନ୍ଧୁ ତାଙ୍କ ସହ ପରିଚୟ କରାଇ ଦେଲେ ।

କାଳୀଚରଣ ପଣ୍ଡାଙ୍କ ସହ ତାହାହିଁ ଥିଲା ପ୍ରଥମ ପରିଚୟ ।

: ତମେ ପରା ଲେଖାଲେଖି କରୁଛ ? ୟାଙ୍କ ଖବରକାଗଜକୁ ଲେଖା ଦଉନ ?'

ବନ୍ଧୁ କହିଲେ । ଅବଶ୍ୟ ସେତେବେଳକୁ ମୁଁ ପ୍ରାୟ ଲେଖାଲେଖି ପ୍ରକାଶ କରିବାରୁ ନିବୃତ୍ତ ରହୁଥିଲି । ଏକ ଅନାଗ୍ରହର ଶିକାର ହୋଇଥାଏ ଯେମିତି ।

: ମନୋଜ ଦାସଙ୍କ ଲେଖା ଛାପୁଛନ୍ତି, କେତେ ଟଙ୍କା ତାଙ୍କୁ ଦେଉଛନ୍ତି ଲେଖା ବାବଦରେ ? ଏହା ଥିଲା କାଳୀବାବୁଙ୍କୁ ମୋର ପ୍ରଥମ ପ୍ରଶ୍ନ । ସେ ମୋ' କଥାର ଇସାରା ଠିକ୍ ଧରି ପାରିଲେ ଏବଂ ସଂଗେ ସଂଗେ ଜବାବ୍ ଦେଲେ;

: ଆପଣ ତା'ହେଲେ ଟଙ୍କା ନ ପାଇଲେ ଲେଖିବେନି ଆମ ଖବର କାଗଜରେ ?

ମୁଁ ତା'ର ଉତ୍ତର ଦେବାକୁ ଯାଇ କହିଲି: ଆପଣ ଠିକ୍ ବୁଝିଛନ୍ତି ମୋ କଥା ।

ଏଥର କାଳୀବାବୁ ମୋ ଉପରେ ଗୋଟିଏ ଭୋକିଲା ବାଘ ପରି କୁଦି ପଡିଲେ : 'ସେଇଥିପାଇଁ ତ ଓଡିଆ ଭାଷା ଆଉ ସାହିତ୍ୟର ଉନ୍ନତି ହେଉନି ।' ମୁଁ ବି ଛାଡିବା ଲୋକ ନଥିଲି । ପ୍ରତି ଆକ୍ରମଣ କରି ଚିତ୍‌ପଟାଙ୍ଗ କରିବା ଉଦ୍ଦେଶ୍ୟରେ ଏଥର ମୁଁ ମୋର ବ୍ରହ୍ମାସ୍ତ୍ର ପ୍ରୟୋଗ କଲି : 'ଆପଣ ଖବରକାଗଜଟି ପ୍ରକାଶ କରିବା ଲାଗି କାଗଜ, କାଳିଠାରୁ ଆରମ୍ଭ କରି କାଗଜ ବାଣ୍ଟୁଥିବା ହକର ଯାଏଁ ସମସ୍ତଙ୍କୁ ପଇସା ଦେବେ ଅଥଚ ଆପଣଙ୍କ ଖବରକାଗଜ ପାଇଁ ଲେଖା ଲେଖୁଥିବା ବ୍ୟକ୍ତିକୁ ତା'ର ମୂଲ୍ୟ ଦେବେନି । ୟା' ଦ୍ୱାରା ଓଡିଶାରେ ସ୍ୱାବଲମ୍ବୀ ଓ ସ୍ୱାଭିମାନୀ ଲେଖକର ଜନ୍ମ କିପରି ହେବ ?'

ଅନେକ ସମୟ ଯାଏ ସେଦିନ ଆମ ଦୁହିଁଙ୍କର କଥା କଟାକଟି, ଯୁକ୍ତି ପ୍ରତିଯୁକ୍ତି ଭିତରେ ଆମେ ଦୁହେଁ ପରସ୍ପରକୁ ଆନ୍ତରିକ ଭାବେ ଭଲ ପାଇ ବସିଥିଲୁ ଆମ ଅବଚେତନ ସ୍ତରରେ, ଆମ ଅଲକ୍ଷ୍ୟରେ । ସବୁ ଭଲ ପାଇବା ବୋଧେ ଏଇମିତି । ମାପିଚୁପି ଭଲ

ପାଇବା କୃତ୍ରିମ ଜୀବନ ଯାପନର ଏକ ଅନୁଭୂତି ହୋଇ ପାରେ । କଥା ପ୍ରସଙ୍ଗରେ କାଳୀବାବୁ ମୋତେ ଅନୁରୋଧ କଲେ ବ୍ରହ୍ମପୁରରେ ତାଙ୍କ ଅନୁଷ୍ଠାନକୁ ଯିବା ପାଇଁ ଏବଂ ସାଥିରେ କିଛି ଲେଖା ନେବା ପାଇଁ । ତା'ପରେ ତାଙ୍କୁ ବ୍ରହ୍ମପୁରସ୍ଥ 'ଅନୁପମ ଭାରତ' ଅଫିସ୍‌ରେ ଭେଟିବା, ସମ୍ପାଦକ ଶରତ ବାବୁଙ୍କ ସହ ଭାବ ବିନିମୟ କରିବା ଏବଂ 'ଅନୁପମ ଭାରତ' ପାଇଁ ପ୍ରତି ସପ୍ତାହରେ 'ସମୟ ସ୍ରୋତରେ' ସ୍ତମ୍ଭ ପାଇଁ ଲେଖିବା ଆଜି କେବଳ ଇତିହାସ । ଏସବୁ ସମ୍ଭବ ହୋଇଛି କେବଳ କାଳୀ ବାବୁଙ୍କ ଯୋଗୁଁ । ଜଣେ ବାରବୁଲା ଲେଖକର ଜୀବନ ଜୀଇଁଥିବା ବ୍ୟକ୍ତିକୁ ସେ ଯେପରି ଭାବେ ଶଗଡ ଗୁଳାରେ ପକାଇ ଦେଲେ, ସେ କଥା ଆଜି ଭାବିଲେ ନିଜେ ମୁଁ ଆଶ୍ଚର୍ଯ୍ୟ ହେଉଛି । ମଣିଷ ମାତ୍ରେ ହିଁ ସ୍ୱପ୍ନ ବିଳାସୀ । ମାତ୍ର ସ୍ୱପ୍ନକୁ ସାକାର କରିବା ଲାଗି ଯେଉଁ ଅଦମ୍ୟ ଓ ନିରବଚ୍ଛିନ୍ନ ସାଧନାର ଆବଶ୍ୟକତା, ଏକାଗ୍ରତା ଓ ସାହସ ଲୋଡା ସେ ସବୁ ତାଙ୍କ ପାଖରେ ଥିଲା । ଏତେ କମ୍ ବୟସରେ ବି ସେ ଏ କଥା ପ୍ରତିପାଦିତ କରିପାରିଛନ୍ତି ତାଙ୍କ ଜୀବନ କାଳରେ । କାଳର ବିଚିତ୍ର ନିୟମ । ଯେଉଁମାନଙ୍କ ବର୍ତ୍ତମାନରେ ଆମ ସମୟ ଓ ସଂସାର ଆହୁରି ସୁନ୍ଦର ହେବାର ଅପେକ୍ଷା ରଖେ, ଈଶ୍ୱର ହଠାତ୍ ସେମାନଙ୍କୁ ଆମନ୍ତ୍ରଣ କରନ୍ତି । ପାଚିଲାକୁ ଛାଡି କଞ୍ଚାକୁ ନେବା ସହ ବନ୍ଧୁ, ପରିଜନ ଓ ସହୋଦରଙ୍କୁ ଦାରୁଣ ଦୁଃଖ ଦିଅନ୍ତି । ଖ୍ରୀଷ୍ଟପୂର୍ବ ୩୦୦ ବର୍ଷ ତଳେ ଗ୍ରୀକ୍ ନାଟ୍ୟକାର ମେନାଣ୍ଡର ସେଇ କଥା ହିଁ କହିଥିଲେ : ଭଗବାନ ଭଲପାଉଥିବା ଲୋକେ ଯୁବକ ଅବସ୍ଥାରେ ମୃତ୍ୟୁ ଲଭନ୍ତି ।''

ଖୁବ୍ କମ୍ ସମୟ ଭିତରେ ବିମୋହିତ କରିଦେବାର କଳା ତାଙ୍କର ଥିଲା । ଫଳତଃ ସମଗ୍ର ଓଡିଶା ସାହିତ୍ୟ, କଳା, ରାଜନୀତି ଓ ଧାର୍ମିକାନୁଷ୍ଠାନରେ ସେ ଏକ ପରିଚିତ ନାମ ଭାବେ ଖ୍ୟାତି ଅର୍ଜନ କରିଥିଲେ । ଓଡିଶା ପାଇଁ ତାଙ୍କର ଦରଦ କୁମ୍ଭୀର କାନ୍ଦଣା ନଥିଲା । ସେଇଥି ପାଇଁ 'ଅନୁପମ ଭାରତ'ର ପ୍ରତି ପୃଷ୍ଠାରେ ଓଡିଶାର ଭାଷା ଓ ସ୍ୱାଭିମାନକୁ ନେଇ ସେ ଯେପରି ଭାବେ ପ୍ରଚାର କରୁଥିଲେ, ଅନ୍ୟ କୌଣସି ଖବରକାଗଜରେ ଏହାର ଦୃଷ୍ଟାନ୍ତ ମିଳେନାହିଁ ।

କିଛିମାସ ତଳର କଥା । ଏକ ଅନିବାର୍ଯ୍ୟ କାରଣବଶତଃ 'ଅନୁପମ ଭାରତ'ରେ ସାପ୍ତାହିକ ସ୍ତମ୍ଭ ଲେଖିବାରୁ ବିରତ ରହିବାକୁ ପଡିଲା ଏ ଲେଖକକୁ । ମାତ୍ର ମୋର ନିଷ୍ପତ୍ତି ତାଙ୍କୁ ଜଣାଇବାର ସାହସ ନଥିଲା ପାଖରେ । ତେବେ ପେଟର ପିଲାକୁ ତ ଧାଈ ପାଖରୁ ଲୁଚାଇ ରଖିବା ସମ୍ଭବ ନୁହେଁ । ସାହସ ବାନ୍ଧି ଦିନେ ତାଙ୍କୁ ଟେଲିଫୋନରେ ମନ କଥା ଜଣାଇଲି ।

ସବୁକଥା ଶୁଣିବା ପରେ ସେ ଦୁଃଖ ପ୍ରକାଶ କରିବା ପରିବର୍ତ୍ତେ ମୋ ନିଷ୍ପତ୍ତିକୁ ସ୍ୱାଗତ ଜଣାଇଲେ । ତାଙ୍କ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ତାହାହିଁ ତାଙ୍କ ଉଦାର ଗୁଣ

ଏବଂ ପ୍ରଶସ୍ତ ମାନସିକତାର ପରିଚୟ ଦିଏ । ଅନେକ ସମୟରେ ଏକାନ୍ତ ଭାବେ କାଳୀ ବାବୁଙ୍କ ସହ ବିତେଇବାର ସୁଯୋଗ ପାଇଥିଲା ଏ ଲେଖକ । ଏବେ ସେ ମଧୁର ସ୍ମୃତି ସବୁ ବୃଶ୍ଚିକର ଦଂଶନ ପରି ମନକୁ ଯନ୍ତ୍ରଣା ଦେଉଛି । ତାଙ୍କ ବିୟୋଗ କେବଳ ଏ ଲେଖକକୁ ନୁହେଁ, ସମଗ୍ର ରାଜ୍ୟର ସୃଜନଶୀଳ ଲେଖକ, ସାମ୍ବାଦିକ ଓ ରାଜନୀତିଜ୍ଞଙ୍କ ପାଇଁ ଏକ ନିଶବ୍ଦ ବଜ୍ରପାତ ଭଳି । ଏତେ ଶୀଘ୍ର ଓ ସହଜରେ ସେ ଜ୍ୱାଳାରୁ ଯେପରି ମୁକ୍ତି ନାହିଁ । ଏବେ ତାଙ୍କ ଶରୀର ପଞ୍ଚଭୂତରେ ଲୀନ ହୋଇଯାଇଛି । ମୃତ୍ୟୁ ହିଁ ମୃତ୍ୟୁ, ତାହା ଯେପରି ଭାବେ ଆସୁ ପଛେ ମଣିଷ ପାଖକୁ ।

ମନେପଡୁଛି, ଖ୍ରୀଷ୍ଟପୂର୍ବ ଚାରିଶହ ବର୍ଷ ତଳେ ଚାଇନାର ପ୍ରସିଦ୍ଧ ଦାର୍ଶନିକ କୁଆଙ୍ଗ୍-ଘୁ ଯେତେବେଳେ ମୃତ୍ୟୁ ଶଯ୍ୟାରେ ପଡିଥା'ନ୍ତି, ତାଙ୍କର ଶରୀର ସଂସ୍କାର ସମ୍ପର୍କରେ କେତେଜଣ ଶୁଭେଚ୍ଛୁ ପ୍ରଶ୍ନ କରନ୍ତେ, କୁଆଙ୍ଗ-ଘୁ କହିଲେ: ମାଟି ଉପରେ ମୁଁ ଚିଲମାନଙ୍କର ଖାଦ୍ୟ ହେବି ଏବଂ ମାଟି ତଳେ ମୁଁ ଝିଙ୍କାରି ଏବଂ ପିମ୍ପୁଡିମାନଙ୍କ ଖାଦ୍ୟ ହେବି । ଜଣକ ପାଖରୁ ଲୁଟି ନେଇ ଅନ୍ୟ ଜଣକୁ ଖୁଆଇବି କାହିଁକି ?

ସ୍ୱାଭାବିକ୍ ଅଥବା ଦୁର୍ଘଟଣାଜନିତ ମୃତ୍ୟୁ- ଯାହା ହେଲେ ବି ଏଣିକି ସାରା ଜୀବନ କାଳୀବାବୁଙ୍କ ଅବର୍ତ୍ତମାନରେ ତାଙ୍କର ବନ୍ଧୁ, ପରିଜନ ଓ ମାନସପୁତ୍ର 'ଅନୁପମ ଭାରତ' ଅନୁଷ୍ଠାନକୁ ବଞ୍ଚିବାକୁ ପଡିବ ।

ଦୁଃଖଦ ହେଲେ ବି ଏହାଛଡା ଅନ୍ୟକିଛି ବିକଳ୍ପ ନାହିଁ ।

*ଅନୁପମ ଭାରତ ୨୭.୧୧.୨୦୦୧*

# ଗୋଧୂଳି ରଙ୍ଗର ଗଳିରେ କବି

'ଜଣେ ଆମେରିକୀୟ ଯୁବକ କବି ଜୀବନାନନ୍ଦ ଦାଶଙ୍କ ଉପରେ କାମ କରିବେ ବୋଲି ଆସି କଲିକତାରେ ପହଞ୍ଚିଲେ । ସେ ପ୍ରଥମେ ବଙ୍ଗଳା ଭାଷା ଶିଖିଲେ । ତା'ପରେ ଜୀବନାନନ୍ଦଙ୍କ ଜନ୍ମସ୍ଥାନ ବରିଶାଲ (ବାଂଲାଦେଶ) ଗଲେ । ସେଠି ସେ ପାଞ୍ଚବର୍ଷ କାଳ ଅବସ୍ଥାନ କଲେ । ଜୀବନାନନ୍ଦଙ୍କ ପୈତୃକ ଘରେ ରହିଲେ ଏବଂ ତାଙ୍କର ଜୀବନୀ ରଚନା କଲେ । ସେ ଘର ପ୍ରାୟ ଭାଙ୍ଗି ପଡିଥିଲା । ଇଂରାଜି ଭାଷାରେ ରଚିତ ଉକ୍ତ ପୁସ୍ତକ ପାଇଁ ହାଭାର୍ଡ ବିଶ୍ୱ ବିଦ୍ୟାଳୟ ତାଙ୍କୁ ଡି. ଲିଟ୍‌ରେ ଭୂଷିତ କଲା ।'

ମୃତ୍ୟୁର ଠିକ୍ ଚଉଦମାସ ତଳେ (୧୫.୯.୨୦୦୦) କବି ଭାନୁଜୀ ରାଓ ଏକ ବ୍ୟକ୍ତିଗତ ପତ୍ରରେ ଏକଥା ଲେଖିଥିଲେ ଏ ଲେଖକକୁ । ଭକ୍ତ କବି ମଧୁସୂଦନ ରାଓଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବା ଲାଗି କବି ଭାନୁଜୀ ରାଓଙ୍କ ଜୀବନୀ ଲେଖିବାର ପ୍ରସ୍ତାବକୁ ବିନମ୍ରତାର ସହ ପ୍ରତ୍ୟାଖ୍ୟାନ କରି ସେ ଉପରୋକ୍ତ ପତ୍ରଟି ଦେଇଥିଲେ । ଯା'ପରେ ଅବଶ୍ୟ କବିଙ୍କ ସହ ଭେଟ ହୋଇପାରି ନଥିଲା । ଆଉ ହବାର ବି ନାହିଁ ।

ଓଡିଆ କବିତା ରାଜ୍ୟରେ କବି ଭାନୁଜୀ ରାଓ ଏକ ପ୍ରିୟ ତଥା ସଶ୍ରଦ୍ଧ ନାମ । ଛୟାଳିଶି ବର୍ଷ ତଳେ (୧୯୫୫) 'ସମୁଦ୍ରସ୍ନାନ'ର କବି ତଥା 'କାଳ ପୁରୁଷ'ର ସ୍ରଷ୍ଟା ଗୁରୁପ୍ରସାଦ ମହାନ୍ତିଙ୍କ ସହ ମିଶି କବି ଭାନୁଜୀ ରାଓ 'ନୂତନ କବିତା' ନାମରେ ଏକ କବିତା ବହି ପ୍ରକାଶ କରିଥିଲେ । ଏହା ଆଧୁନିକ ଓଡିଆ କବିତା ଇତିହାସରେ ଏକ ମାଇଲ୍ ଖୁଣ୍ଟ ଭାବେ ଆଜି ବି ମାନ୍ୟତା ପାଉଛି । ଜଣେ ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ଭାବେ ଭାନୁଜୀଙ୍କର ଖ୍ୟାତି ମଧ୍ୟ ଥିଲା ।

୧୯୭୦ ମସିହାରେ ମସୌରୀସ୍ଥିତ ଲାଲ୍ ବାହାଦୂର ଶାସ୍ତ୍ରୀ ପ୍ରଶାସନିକ ଏକାଡେମୀରେ ଓଡିଆ ଓ ବଙ୍ଗଳା ଭାଷା ଶିକ୍ଷକ ଭାବେ ଯୋଗ ଦେବା ବେଳକୁ ସେ ଓଡିଆ କବିତା ଇତିହାସରେ ନିଜ ପାଦଚିହ୍ନ ଖୁବ୍ ସ୍ପଷ୍ଟ କରି ସାରିଥିଲେ । ଏବଂ ଏହା ପୂର୍ବରୁ ସାହିତ୍ୟ ପତ୍ରିକା ସମ୍ପାଦନା କରିବା ସହ ସାମ୍ବାଦିକତା ପେସାରେ ମଧ୍ୟ ନିଜକୁ ସଂଶ୍ଲିଷ୍ଟ ରଖିଥିଲେ । ହେଲେ ମୁସୌରୀରେ ଚାକିରି କରୁଥିବା ବେଳେ ତାଙ୍କର କବିତା ରାଜ୍ୟରୁ ଆତ୍ମ ନିର୍ବାସନ, ସାହିତ୍ୟ ପ୍ରେମୀଙ୍କୁ ଖୁବ୍ କଷ୍ଟ ଦେଇଥିଲା । ଆଶ୍ୱସନାର ବିଷୟ ୧୯୮୫ରେ ଚାକିରିରୁ ଅବସର ନେବା ପରେ ଭାନୁଜୀ ରାଓ ଗୋଟିକ ପରେ ଗୋଟିଏ

କବିତା ବହି ପ୍ରକାଶ କରି ଓଡିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଏକ ସାର୍ଥକ ଅବସର ଜୀବନ ଜୀଇଁଥିଲେ ସେ ।

ସମୟାନୁବର୍ତ୍ତିତା ତାଙ୍କର ଏକ ବିଶିଷ୍ଟ ଗୁଣ ଥିଲା । ଥରେ ତାଙ୍କୁ ଭେଟିବା ଲାଗି ଟେଲିଫୋନ୍‌ରେ ପଚାରିଥିଲି । ଏଗାରଟାରେ ଆସିବାକୁ କବି ପରାମର୍ଶ ଦେଲେ । ଅନ୍ୟ କାମ ଥିବାରୁ ଏ ଲେଖକ ପ୍ରାୟ ପନ୍ଦର ମିନିଟ୍ ପୂର୍ବରୁ ତାଙ୍କ କାଳୀଗଳିସ୍ଥିତ ବାସଭବନରେ ପହଞ୍ଚି ଖବର ପାଇଲା ଯେ କବି ଭାନୁଜୀ ରାଓ କୌଣସି ବ୍ୟକ୍ତିଗତ କାର୍ଯ୍ୟରେ ନିକଟସ୍ଥ ବ୍ୟାଙ୍କକୁ ଯାଇଛନ୍ତି । ଦେଖା ହୋଇ ପାରିବନି ବୋଲି ଭାବି ଫେରି ଆସିବାକୁ ଉଦ୍ୟତ ହୁଅନ୍ତେ ଘରର ଜଣେ ଭଦ୍ରମହିଳା ପ୍ରଶ୍ନ କଲେ- ଆପଣଙ୍କୁ ସମୟ କେତେବେଳେ ଦେଇଥିଲେ ?'

: 'ଏଗାରଟା ।' ମୁଁ ଜବାବ୍ ଦେଲି ।

: 'ଏବେ ଏଗାରଟା ହେଇନି । ଆପଣ ଅପେକ୍ଷା କରନ୍ତୁ । ସେ ଏଗାରଟା ବେଳକୁ ନିଶ୍ଚୟ ଆସିଯିବେ ।' ଭଦ୍ର ମହିଳା କହିଲେ ।

ଆଶ୍ଚର୍ଯ୍ୟଜନକ ଭାବେ ମୁଁ ଦେଖିଲି ଠିକ୍ ଏଗାରଟା ବେଳକୁ କବି ନିଜ ବାସଭବନର ବାହାର ଫାଟକ ଖୋଲିଲେ । ଭାରତୀୟ ପ୍ରଶାସନିକ ସେବା ଶିକ୍ଷା ସଂସ୍ଥାର ଜଣେ ବରିଷ୍ଠ କର୍ମକର୍ତ୍ତା ଭାବେ ତାଙ୍କର ଏଇ ଆଚରଣ ଅନ୍ୟମାନଙ୍କୁ ନିଶ୍ଚୟ ପ୍ରଭାବିତ କରିଥିବ ।

ଅବସର ଜୀବନର ପ୍ରତିଟି ଦିନ ଗୋଟିଏ ଲେଖାଁ କବିତା ସେ ରଚନା କରୁଥିବା କଥା ଏ ଲେଖକକୁ କହିଥିଲେ । ସେଇଥି ଲାଗି ଛଅସ୍ତରୀ ବର୍ଷରେ ବି ଛବିଶି ବର୍ଷ ଯୁବକର ଉଦ୍ଦୀପନା ତାଙ୍କ ପାଖରେ ଥିଲା ।

ସାରା ଜୀବନ ଅବିବାହିତ ରହି ସେ ଜଣେ ଯୋଗୀର ଜୀବନ ଅତିବାହିତ କରୁଥିଲେ । ନିଜର ଢ଼ୋଲ ପିଟିବା ଲାଗି ଆଦୌ ପସନ୍ଦ କରୁ ନଥିଲେ ସେ । କୌଣସି ସାହିତ୍ୟ ସଭା, ଅଥବା କବିତା ପାଠୋତ୍ସବରେ ତାଙ୍କର ଦେଖା ମିଳୁ ନଥିଲା । ନିଜ ସମ୍ପର୍କରେ ବଖାଣିବା ତ ଦୂରର କଥା, ଭାରତର ବିଭିନ୍ନ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ପର୍କୀୟ ହୋଇ ମଧ୍ୟ ସେ ତା'ର କୌଣସି ଫାଇଦା ନେବାକୁ ଇଚ୍ଛା କରୁ ନଥିଲେ । ସ୍ୱାଧୀନତା ସଂଗ୍ରାମୀ ଅରୁଣା ଆସଫ୍ ଅଲ୍ଲୀ ଏବଂ ବିଶିଷ୍ଟ ଚଳଚ୍ଚିତ୍ର ନିର୍ଦ୍ଦେଶକ ସତ୍ୟଜିତ୍ ରାୟଙ୍କର ସମ୍ପର୍କୀୟ ଥିଲେ ସେ ।

ସେ ଥିଲେ ଜଣେ ନିରବ ସାଧକ । 'ନଈ ଆର ପାରି' କବିତା ବହି ପାଇଁ ତାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ପୁରସ୍କୃତ କରାଯାଇଥିଲା ୧୯୮୬ ମସିହାରେ । ପୁରସ୍କାର ଅନେକ ସୃଜନ ଶୀଳ ଲେଖକଙ୍କ ସୃଷ୍ଟି ପ୍ରକ୍ରିୟାକୁ ବ୍ୟାହତ କରିଥିବା ବେଳେ,

କବି ଭାନୁଜୀ ରାଓଙ୍କ ଉପରେ ଏହା ସବାର ହୋଇ ପାରି ନଥିଲା । 'ଗୋଧୂଳି ରଙ୍ଗର ଗଳି' ଶେଷ ପ୍ରକାଶିତ ବହି । ଅଧିକାଂଶ କବିତାରେ ଜୀବନର ଶେଷ ପର୍ଯ୍ୟାୟ ଏବଂ ଚାଲିଯିବା ବେଳ କଥା ସେ କହିଛନ୍ତି । ଶୀର୍ଷକ କବିତାର ଆରମ୍ଭ ଏଇପରି ହୁଏ : 'ସବୁ କିଛି ସରିଯାଏ ଦିନେ/ଛଅଁାଣର ତୀର୍ଯ୍ୟକ୍ ଉଡାଣ/କାଶତଣ୍ଡୀ ବଣ/ନିଛାଟିଆ ନଈପଠା/ ମଲାଜହ୍ନ ଶୋଇଛି ଯେଉଁଠି ।'

ଜୀବନର ଆର ପାରିକୁ ଚାଲିଯାଇଥିବା ଏଇ ପ୍ରଥିତ ଯଶା କବିଙ୍କ 'ନଈ ଆର ପାରି' କବିତାର ଶେଷ ପଙ୍‌କ୍ତିମାନ ଆଜି ମନେ ପଡି ଯାଉଛି: ସେ ପାରିରେ ଯେତେ ସ୍ୱପ୍ନ/ପ୍ରତ୍ୟାଶାର ହାତ ଧରି ଚାଲିଯିବି ଦିନେ ଆରପାରି/ଦିଗ୍‌ବଳୟ ବୋଲି ହେବି ମୁଠା ମୁଠା ମାୟାବୀ ଅବିର/ଠିକ୍ ଯାଇ ପାହଞ୍ଚିବି ଚନ୍ଦନ ବନରେ/ଯେଉଁଠାରେ ବସିଥିଲେ ଏକଦା ଈଶ୍ୱର ।'

ଚନ୍ଦନବନରେ ଥିବା ଈଶ୍ୱରଙ୍କ ପାଖରେ ଗତ ନଭେମ୍ବର ପନ୍ଦର ତାରିଖରୁ କବି ଭାନୁଜୀ ରାଓ ବସି ଆଳାପରତ ଥିବେ ନିଶ୍ଚୟ ।

*ସଂବାଦ ୧୭.୧୨.୦୧*

# ନୀଳ ତାରକାର କଥା

କିଛିମାସ ପୂର୍ବେ ବିବାଦୀୟ ଲେଖକ ସଲମାନ୍ ରୁସ୍‌ଦୀଙ୍କୁ ମୃତ୍ୟୁ ମୁହଁରୁ ବଞ୍ଚାଇବା ପାଇଁ ଇଂଲଣ୍ଡର ନିରାପତ୍ତା କର୍ତ୍ତୃପକ୍ଷ ତାଙ୍କର ନାମ ପରିବର୍ତ୍ତନ କରିବାକୁ ପରାମର୍ଶ ଦେଇଥିଲେ । ମାତ୍ର ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବା ଅବସରରେ ରୁସ୍‌ଦୀ କହିଥିଲେ: 'ଅନ୍ୟଜଣଙ୍କର ଜୀବନ ଜୀଇଁବାକୁ ମୁଁ ଚାହିଁ ନ ଥିଲି । ଏ କଥା ଭାବିଲେ ଲାଗେ, ଏପରି କରିବାର ପରିଣତି ମରିବାଠାରୁ ଆହୁରି ଖରାପ ଏବଂ ମୃତ୍ୟୁର ଦ୍ରୁତ ପରିସମାପ୍ତି ।' ଇଂଲଣ୍ଡର 'ମେଟ୍ରୋ' ସମ୍ବାଦପତ୍ରକୁ ଏକ ସାକ୍ଷାତକାରରେ ସେ ଏ କଥା କହିଛନ୍ତି ।

ରୁସ୍‌ଦୀଙ୍କ ଏଇ ଚିନ୍ତାଧାରା ପ୍ରକାଶ ପାଇବା ସମୟରେ, ଭାରତର ପ୍ରସିଦ୍ଧ ଲେଖିକା କମଳା ଦାସ ତାଙ୍କ ନାମ ପରିବର୍ତ୍ତନ କରି ସୁରେୟା ରଖିଥିବା କଥା ସମସ୍ତ ଖବରକାଗଜର ଶିରୋନାମାରେ ସ୍ଥାନିତ ହୋଇଛି । କେବଳ ନାମ ନୁହେଁ ସେ ହିନ୍ଦୁ ଧର୍ମରୁ ନିଜକୁ ମୁକ୍ତ କରି ଇସଲାମ୍ ଧର୍ମ ଗ୍ରହଣ କରି ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ଦେଇଛନ୍ତି । ସୁରେୟାର ଆକ୍ଷରିକ ଅର୍ଥ ହେଲା- କଳଙ୍କହୀନ ନୀଳ ତାରକା । ମାତ୍ର କମଳା ଦାସଙ୍କ ଜୀବନ ଯାପନ ପ୍ରଣାଳୀ ତାଙ୍କୁ ଅଧିକାଂଶ ସମୟରେ କେବଳ ବିବାଦୀୟ କରିନି ବରଂ ଅପଖ୍ୟାତି ମଧ୍ୟ ଦେଇଛି ।

ଇଂରାଜୀ ଭାଷାରେ କବିତା ଏବଂ ଗଳ୍ପ ଲେଖିଥିବା କମଳା ଦାସ, ମାଲୟାଲାମ୍ ସାହିତ୍ୟରେ କବି ଓ ଗାଳ୍ପିକ । 'ମାଧବୀ କୁଟ୍ଟୀ' ଭାବେ ବେଶ୍ ଲୋକପ୍ରିୟ । ସତୁରୀ ଦଶକର ଶେଷ ଭାଗରେ ନିଜ ଜୀବନୀ 'ମୋ କଥା' (My Story) ଲେଖି ବେଶ୍ ଚହଳ ସୃଷ୍ଟି କରିଥିଲେ ସେ । ଜଣେ ସମ୍ବେଦନଶୀଳ ତଥା ଉଚ୍ଚକୋଟୀର କବୟିତ୍ରୀ ଭାବେ ତାଙ୍କର ପ୍ରସିଦ୍ଧି ମଧ୍ୟ ଅଛି । କିଛି ବର୍ଷ ପୂର୍ବେ କମଳା ଦାସ 'ପେଣ୍ଟିଂ' କରିବା ଆରମ୍ଭ କରିଥିଲେ ଏବଂ କଳା ସମାଲୋଚକମାନଙ୍କ ଦ୍ୱାରା ଏହା ବେଶ୍ ଆଦୃତ ମଧ୍ୟ ହୋଇଥିଲା । ଅଥଚ ପଞ୍ଚଷଠୀ ବର୍ଷ ବୟସରେ କ୍ଳାନ୍ତିହୀନ ଅନ୍ୱେଷଣ ପ୍ରକ୍ରିୟାରେ ନିମଗ୍ନ ଥିବା ଏଇ ଲେଖିକା ହଠାତ୍ ତାଙ୍କ ଧାର୍ମିକ ବିଶ୍ୱାସ ବଦଳାଇ ଦେବା ସହ, ଏଥିପାଇଁ ଯେଉଁ ଯୁକ୍ତିର ଆଶ୍ରୟ ନେଇଛନ୍ତି ତାହା ତାଙ୍କୁ ବେଶ୍ ବିବାଦୀୟ କରିଛି । ଏ ଯାବତ୍ ଶ୍ରୀକୃଷ୍ଣଙ୍କ ଉପାସକ ଥିବା କମଳା ଦାସଙ୍କ ମତ ହେଲା : 'ହିନ୍ଦୁ ଦେବାଦେବୀମାନେ କେବଳ ଶାସ୍ତି ଦିଅନ୍ତି ମାତ୍ର ଆଲ୍ଲା କ୍ଷମା ପ୍ରଦାନ କରନ୍ତି । ମୁଁ ଜଣେ କ୍ଷମାଶୀଳ ଠାକୁରଙ୍କୁ ଚାହେଁ ।' (Hindu gods Punish, Allah forgives sin. I want a forgiving god) ହିନ୍ଦୁ ମାନଙ୍କ ପରି ମୃତ୍ୟୁ ପରେ ବି ସେ ତାଙ୍କ ଶରୀରକୁ

ପରମ୍ପରାନୁଯାୟୀ ନିଆଁରେ ଜଳାଇ ଦେବାକୁ ଚାହାଁନ୍ତି ନାହିଁ ବୋଲି ଯୁକ୍ତି କରିଛନ୍ତି ।

ତାଙ୍କ ଯୁକ୍ତିର ଅନ୍ତଃସାର ଶୂନ୍ୟତା ଏବଂ ଦୁଇଟି ଧାର୍ମିକ ବିଶ୍ୱାସ ଭିତରେ ଥିବା ତାରତମ୍ୟକୁ ଏଠି ଆଲୋଚନା କରିବା ଅନାବଶ୍ୟକ । କାରଣ ଭାରତବର୍ଷ ପରି ଏକ ମୁକ୍ତ ବିଚାର ଓ ସ୍ୱ-ଇଛା ବ୍ୟକ୍ତ କରିବା ଭଳି ଦେଶ ପ୍ରାୟତଃ ବିରଳ । ବାକି ଜୀବନ ପର୍ଦ୍ଧା ତଥା ବୁର୍ଖାର ଅନ୍ତରାଳରେ ରହି କମଳା ଦାସ କିପରି ତାଙ୍କର ଅରଣା ମନକୁ ଆକଟ କରିବେ, ତାହା ହିଁ ତାଙ୍କୁ ଜାଣିଥିବା ଲେଖକ ଓ ସମାଲୋଚକଙ୍କ ଭ୍ରୁକୁଞ୍ଚନର କାରଣ ହୋଇଛି । ଯୌନ ଉଦ୍ଦୀପନା, କାମନା ଓ ମାନସିକ ନିର୍ଯ୍ୟାତନାର ଚିତ୍ରକୁ ବେଶ୍ ସାହସିକତାର ସହ ଚିତ୍ରଣ କରିପାରୁଥିବା ଲେଖିକାଙ୍କ ପାଇଁ ଆଉ ଜଣେ ବିଶିଷ୍ଟ ଲେଖକ ବାଲ୍‌ଡୱିନ୍‌ଙ୍କ ଧର୍ମ ଓ ଭଗବାନଙ୍କ ସମ୍ପର୍କୀୟ ଚିନ୍ତାଧାରାକୁ ଏଠି ଉଦ୍ଧାର କରିବା ପ୍ରାସଙ୍ଗିକ ହେବ : 'ଈଶ୍ୱରୀୟ ବିଚାରର ଏବେ ଯଦି କିଛି ପ୍ରାସଙ୍ଗିକତା ଓ ଆବଶ୍ୟକତା ଥାଏ ତେବେ ତାହା କେବଳ ଆମକୁ ଅଧିକ ପରିବ୍ୟାପ୍ତ, ମୁକ୍ତ ଏବଂ ପ୍ରେମମୟ କରି ରଖିବ । ଯଦି ଈଶ୍ୱର ଏହା କରି ପାରିବେ ନାହିଁ ତେବେ ତାଙ୍କୁ ପରିତ୍ୟାଗ କରିବାର ଏହା ହିଁ ଅସଲ ସମୟ ।' (If the Concept of God has any validity or use, it can only be to make us larger, freer, and more loving. If God cannot do this, then it is time to get rid of Him.)

ଧର୍ମର ଅସ୍ତିତ୍ୱକୁ ସମାଲୋଚନା କରିବାକୁ ଯାଇ ବିଶିଷ୍ଟ ମନୋବୈଜ୍ଞାନିକ ଫ୍ରଏଡ୍ ଏହା ଅବାସ୍ତବ ଏବଂ ଏକ ଭ୍ରମ ବୋଲି କହିଛନ୍ତି । ଧର୍ମ ସହ ବିଜ୍ଞାନର ସମ୍ପର୍କରେ ତର୍ଜମା କରି ବିଶିଷ୍ଟ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ଥରେ କହିଥିବଲେ ; 'ଧର୍ମରହିତ ବିଜ୍ଞାନ ଗୋଟିଏ ଲେଙ୍ଗଡା ଲୋକ ପରି ଏବଂ ବିଜ୍ଞାନରହିତ ଧର୍ମ ହେଉଛି ଜଣେ ଅନ୍ଧ ଲୋକ ।' (Science without religion is lame, religion without science is blind) ବିଜ୍ଞାନ ହେଉଛି ବାସ୍ତବ ଏବଂ ଧର୍ମ ଅବାସ୍ତବ । ଛାଇ ଆଉ ଆଲୋକର ଖେଳ ପରି ।

ଧର୍ମ ଅଫିମ ପରି ସମାଜକୁ ନିଶାସକ୍ତ କରି ରଖିଛି । ତେବେ ନିଶାସକ୍ତ ବ୍ୟକ୍ତିର ଆଚରଣ ପରି ଧର୍ମାନ୍ଧର ବ୍ୟବହାର ଓ ଆଚାର ମଣିଷ ସମାଜକୁ ନଷ୍ଟଭ୍ରଷ୍ଟ କରିବାରେ ସହାୟକ ହୋଇଛି । ଏଇ ଧାର୍ମିକ ବିଶ୍ୱାସର ଚେର ମଣିଷ ମନର ଏତେ ଗଭୀରତାକୁ ପ୍ରବେଶ କରିଛି ତା'ର ପ୍ରମାଣ ମିଳେ ଇରାନ୍‌ର ଧାର୍ମିକ ନେତା ସ୍ୱର୍ଗତ ସ୍ୱର୍ଗତଃ ଆୟାତୋଲ୍ଲା ଖୋମିନୀ ଲେଖକ ସଲମାନ୍ ରୁସ୍‌ଦୀଙ୍କ ବହି ଉପରେ ଦେଇଥିବା ପ୍ରତିକୂଳ ମନ୍ତବ୍ୟରୁ । ୧୯୮୯ ମସିହା ଫେବୃୟାରୀ ୧୪ ତାରିଖ ଦିନ ଭାଷଣ ପ୍ରସଙ୍ଗରେ ଏଇ ସିହା ସଂପ୍ରଦାୟ ନେତା କହିଲେ : 'ଇସଲାମ୍, ମହମ୍ମଦ ଓ କୋରାନ୍ ବିରୁଦ୍ଧରେ ଲେଖିଥିବା 'ସାଟାନିକ୍ ଭର୍ସେସ୍'ର ଲେଖକ ଏବଂ ଏହାର ବିଷୟବସ୍ତୁ ଜାଣିବା ପରେ ହିଁ ଏହାର ପ୍ରକାଶକଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉଛି । ସେମାନଙ୍କୁ ଯେଉଁଠି ପାଇଲେ ବି ହତ୍ୟା କରିବାକୁ ମୁଁ ସମସ୍ତ ମୁସଲମାନଙ୍କୁ ଆଦେଶ ଦେଉଛି । ଠିକ୍ ସେଇଦିନ ଖୋମିନୀଙ୍କ

ଘୋଷଣା ବିରୁଦ୍ଧରେ ଲେଖକ ରୁସ୍‌ଦୀ ଏକ ପ୍ରେସ୍ ବିଜ୍ଞପ୍ତିରେ ଘୋଷଣା କଲେ । 'ମୋ ବହି ଓ ଏପରିକି ମୋ ଜୀବନଠାରୁ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ 'କଳ୍ପନାର ସ୍ୱାଧୀନତା' ସପକ୍ଷରେ ଅଣ୍ଟାଭିଡ଼ି ଠିଆ ହେବାକୁ ମୁଁ ଏଇ ଦେଶର ତଥା ବିଦେଶର ବୁଦ୍ଧିଜୀବୀ ସଂପ୍ରଦାୟକୁ ଆହ୍ୱାନ କରୁଛି ।' (I call upon the intellectual Community in this country and abroad to stand up, for freedom of Imagination, an issue much larger than my book or indeed my life)

ଏଯାବତ୍ ଏଇ ଦ୍ୱନ୍ଦ ଓ ସମସ୍ୟାର ସମାଧାନ ହୋଇପାରିନାହିଁ । ଏବେବି ଲେଖକ ରୁସ୍‌ଦୀ ଆତ୍ମଗୋପନର ଜୀବନ ଜୀଉଁଛନ୍ତି । ଧର୍ମାନ୍ଧତାର ଏଇ କରୁଣ ପରିଣତି ସମ୍ଭବତଃ ବିଂଶ ଶତାବ୍ଦୀର ସବୁଠାରୁ ଦୁଃଖଦ ଘଟଣା । ତେବେ ଈଶ୍ୱରଙ୍କୁ କୌଣସି ଧର୍ମ ସହ ଯୋଡ଼ିବା ହୁଏତ ମଣିଷ ସମାଜର ସବୁଠାରୁ ଏକ ବଡ ଭୁଲ୍ ବୋଲି କେହି କେହି କହିଥାନ୍ତି । ଈଶ୍ୱର ଜଣେ ବିଶିଷ୍ଟ ଚିତ୍ରକର ଯିଏ ଜିରାଫ୍, ହାତୀ ଏବଂ ବିଲେଇ ଉଦ୍ଭାବନ କରିଛନ୍ତି ମଣିଷ ସମାଜ ପାଇଁ । ସେ ଈଶ୍ୱରଙ୍କୁ କୃଷ୍ଣ, ଆଲ୍ଲା ଅଥବା ଯୀଶୁ କହି ମଣିଷ ଜାତି ନିଜ ପାଇଁ ସଂକୀର୍ଣ୍ଣ କ୍ଷେତ୍ରଟିଏ ତିଆରି କରିଛି ମାତ୍ର । ଆଉ ଲେଖିକା କମଳା ଦାସ ସେ ସଂକୀର୍ଣ୍ଣତାର ଆଉ ଏକ ସଂଜ୍ଞା ତିଆରି କରିଛନ୍ତି ମାତ୍ର । ତେବେ ଦୀର୍ଘ ପଞ୍ଚଷଠି ବର୍ଷକାଳ ଗୋଟିଏ ଧର୍ମ, ସଂସ୍କୃତି ଓ ବିଶ୍ୱାସ ତଥା ପରମ୍ପରାରେ ଜୀବନଯାପନ କରିବା ପରେ ହଠାତ୍ ଉକ୍ତ ପରମ୍ପରା ଓ ଧାର୍ମିକ ବିଶ୍ୱାସକୁ ଛାଡି ଅନ୍ୟ ଏକ ଧର୍ମର ଆଶ୍ରୟ ନେବା ଘଟଣାକୁ ସମାଲୋଚକମାନେ ଗୋଟିଏ ଡଙ୍ଗାରୁ ଆଉ ଏକ ବୁଡା ଜାହାଜକୁ ଲମ୍ଫ ପ୍ରଦାନ କରିବା ସହ ତୁଳନା କରିଛନ୍ତି । ମାତ୍ର କମଳା ଦାସ ଉକ୍ତ ଡଙ୍ଗାଟିକୁ ଗୋଟିଏ ଫୁଟା ଡଙ୍ଗା ଭାବେ ଚିତ୍ରଣ କରିଥିବାରୁ ଅନ୍ୟ ଯାତ୍ରୀମାନେ ଏଥିରେ ଯାତ୍ରା କରିବା ନେଇ ପ୍ରଶ୍ନବାଚୀ ସୃଷ୍ଟି କରିଛି ।

କମଳା ଦାସଙ୍କ ଜୀବନ ଚର୍ଯ୍ୟାରେ ନିହିତ ନିର୍ଭୀକତା ସୃଜନଶୀଳ ଲେଖକଙ୍କୁ ଚିରକାଳ ପ୍ରଭାବିତ କରି ଆସିଛି । ପ୍ରଶଂସାକ୍ରମେ ମନେ ପଡୁଛି, ସ୍ୱର୍ଗତଃ ଇନ୍ଦିରା ଗାନ୍ଧୀଙ୍କ ହତ୍ୟାପରେ 'ନିଉୟର୍କ ରିଭ୍ୟୁ ଅଫ୍ ବୁକ୍‌ସ' ଲେଖିଥିଲେ: 'ଗୋ ମାଂସ ଭକ୍ଷଣ କରାଯାଇପାରେ ବୋଲି ଜନସାଧାରଣଙ୍କୁ ବୁଝାଇବା ପାଇଁ ଚେଷ୍ଟା କରିବା ଭଳି ସାହସ ଏବେ ଭାରତରେ ଆଉ କୌଣସି ରାଜନୀତିଜ୍ଞ ନାହାନ୍ତି ।' (There exists no politician in India daring enough to attempt to explain to the masses that cows can be eaten) । ନିଜ ପାଇଁ ସତତ ନୂଆ ପରିଚୟ ତିଆରି କରିବା ଓ ଅବାଟରେ ଚାଲି ନୂଆ ବାଟ ସୃଷ୍ଟି କରିବା ସହ ନିଜକୁ ଆବିଷ୍କାର କରିଚାଲିବା ହେଉଛି ତାଙ୍କର ସ୍ୱତନ୍ତ୍ର୍ୟ । ସେଇଥିପାଇଁ କମଳା ଦାସ ଅନ୍ୟମାନଙ୍କଠାରୁ ନିଆରା ।

*ଅନୁପମ ଭାରତ*

# ଈଶ୍ୱରଙ୍କ ପୁତ୍ର

ଏବର୍ଷର ମେ ମାସର ଶେଷ ସପ୍ତାହ ଓ ଜୁନ୍‌ର ପ୍ରଥମ ସପ୍ତାହ ଓଡିଶା ପାଇଁ ଥିଲା ଅଭିଶପ୍ତ ସମୟ । ନାହିଁ ନଥିବା ଅସହ୍ୟ ତାପମାତ୍ରା ଯୋଗୁଁ ଅନ୍ୟୁନ ଆଠଶହ ବ୍ୟକ୍ତିଙ୍କର ପ୍ରାଣହାନୀ ଘଟିବା ସହ ସହସ୍ରାଧିକ ପୀଡିତ ହେଲେ ଅଂଶୁଘାତରେ । ଏହା କେବଳ ଓଡିଶାବାସୀଙ୍କ ପାଇଁ ଦାରୁଣ ଦୁଃସଂବାଦ ନୁହେଁ ବରଂ ସମଗ୍ର ଦେଶବାସୀ ମଧ୍ୟ ଜଳବାୟୁର ବିଚିତ୍ର ବ୍ୟବହାରରେ ସନ୍ତୁଳିତ ଓ ଆଶ୍ଚର୍ଯ୍ୟାନ୍ୱିତ ।

ପ୍ରକୃତିର ଏଇ ବିଚିତ୍ର ବ୍ୟବହାର ପାଇଁ ମଣିଷ ତ ପ୍ରତ୍ୟକ୍ଷ ଭାବେ ଦାୟୀ; ମାତ୍ର ପ୍ରକୃତିକୁ ସଂପୂର୍ଣ୍ଣ ନିର୍ଦ୍ଦୋଷ କରାଯାଇ ନ ପାରେ । ନିଜର ପ୍ରାକୃତିକ, ଖଣିଜ ଓ ବନ ସଂପଦ ପାଇଁ ପ୍ରସିଦ୍ଧି ଅର୍ଜନ କରିଥିବା ଏଇ ମାଟିରେ ଅଂଶୁଘାତରେ ପ୍ରାଣହରାଇଥିବା ଘଟଣାର ବିବରଣୀ ସଂବାଦପତ୍ର ଓ ଇଲେକ୍ଟ୍ରୋନିକ୍ସ ମିଡିଆରେ ମୁଖ୍ୟ ସ୍ଥାନ ଗ୍ରହଣ କରିଥିଲା । ଏଇ ମର୍ମନ୍ତୁଦ ଘଟଣା ଓଡିଶାବାସୀଙ୍କ ହୃଦୟ ଥରାଇ ଦେଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ସବୁ କାରଣ ଯୋଗୁଁ ଏହା ହେଲା ତା ମଧ୍ୟରେ 'ଏଲ୍ ନିନୋ' ପ୍ରଭାବ ହିଁ ଗୋଟିଏ । ପ୍ରକୃତିର ଏକ ବିଚିତ୍ର ନିୟମ ଅଛି- ଆପଣ ତାକୁ ଯାହା ଦେବେ ଠିକ୍ ସେତିକି ପରିମାଣରେ ସେ ଆପଣଙ୍କୁ ଫେରାଇ ଦବ ।'' ତାହା ଭଲ ହୋଇପାରେ ଖରାପ ବି ହୋଇପାରେ । ଆପଣଙ୍କ ଦବା ସମ୍ପର୍କରେ ତାହା ନିର୍ଭର କରେ । ନିଜର ସୁଖ, ସମୃଦ୍ଧି ପାଇଁ ପ୍ରକୃତିକୁ ଯେତିକି ପରିମାଣରେ ନିଜର କ୍ରୀତଦାସ ଭାବେ ନିର୍ଯ୍ୟାତନା ଦେବା ଲାଗି ଚେଷ୍ଟା କରିଛି (ଖଣିଜ ଓ ବନଜ ସଂପଦ ଲୁଟ୍ କରିବାରେ) ପ୍ରକୃତି ସେଇ ପରିମାଣରେ ମଣିଷ ଜାତିକୁ ଫେରାଇ ଦେଇଛି- ମରୁଡି, ବାତ୍ୟା, ବଢ଼ି, ଭୂକମ୍ପ ଓ ଦୁରାରୋଗ୍ୟ ବ୍ୟାଧି ସମଗ୍ର ।

ନିକଟରେ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ଏକ ସର୍ବେକ୍ଷଣରୁ ଜାଣିବାକୁ ମିଳିଛି- ଦକ୍ଷିଣ-ପୂର୍ବ ଏସିଆର୍ ଦେଶସମୂହ, ଦକ୍ଷିଣ ଆମେରିକା ଓ ଆଫ୍ରିକାର ଦେଶମାନଙ୍କରେ ଏବେ ମ୍ୟାଲେରିଆ, ହଇଜା, ସିଗେଲୋସିସ୍ ନାମକ ଏକ ପ୍ରକାର ପତଳା ଝାଡା, ଉପତ୍ୟକା ଜ୍ୱରର ମାତ୍ରା ବଢ଼ିବାରେ ଲାଗିଛି । ସର୍ବେକ୍ଷଣର ବିବରଣୀରେ ଦର୍ଶାଯାଇଛି ଯେ, ଉକ୍ତ ରୋଗଗୁଡିକ ସହ 'ଏଲ ନିନୋ'ର ସମ୍ପର୍କ ଅତ୍ୟନ୍ତ ନିବିଡ । ଗତ ବର୍ଷକ ଭିତରେ ଏଇ ପ୍ରଭାବ ଯୋଗୁଁ ଆଫ୍ରିକାରେ ଚାରିହଜାରରୁ ଅଧିକ ଲୋକ ହଇଜାରେ ମୃତ୍ୟୁବରଣ କରିଛନ୍ତି

ଏବଂ ପ୍ରାୟ ବୟାଅଶି ହଜାର ଲୋକ ଆକ୍ରାନ୍ତ ହୋଇଛନ୍ତି । ଗତ ସାତ ବର୍ଷ ଭିତରେ ଦକ୍ଷିଣ ଆମେରିକୀୟ ଦେଶମାନଙ୍କରେ ପ୍ରାୟ ସତର ହଜାର ଲୋକ ଏଇ ରୋଗରେ ପ୍ରାଣ ହରାଇଛନ୍ତି । ପ୍ରକାରାନ୍ତରେ କହିବାକୁ ଗଲେ ଏଇ 'ଏଲ୍ ନିନୋ'ର ପ୍ରଭାବ ବିଶ୍ୱର ପରିବେଶକୁ ବିପର୍ଯ୍ୟସ୍ତ କରି ଦେଇଛି । ଗତବର୍ଷ ଆଫ୍ରିକାର ପୂର୍ବାଞ୍ଚଳରେ କ୍ରମାଗତଃ ଚାରିମାସ ଧରି ପ୍ରବଳ ବର୍ଷ ହେବା ଫଳରେ ମଶା ଦ୍ୱାରା ସଂକ୍ରମିତ ଆର୍.ଭି.ଏଫ. ଜ୍ୱରର ମାତ୍ରା ବୃଦ୍ଧି ପାଇ ଏହା ମଣିଷ ଓ ପଶୁ ଉଭୟଙ୍କ ମୃତ୍ୟୁର କାରଣ ହୋଇଛି । ଠିକ୍ ଅନୁରୂପ ଭାବେ ଚିନ୍ତା ଆସେ, ଓଡିଶାର ସାଂପ୍ରତିକ ଅସହ୍ୟ ଉତ୍ତାପ 'ଏଲ ନିନୋ'ର ପ୍ରଭାବ ନୁହେଁ ତ ? ସାଧାରଣତଃ ପ୍ରଶାନ୍ତ ମହାସାଗରୀୟ ଜଳବାୟୁର ପ୍ରବାହ ପ୍ରକ୍ରିୟା ହେଉଛି ପଶ୍ଚିମରେ ଉଦ୍ଭବ ହୋଇଥିବା ଲଘୁଚାପ ଅଂଚଳ ପୂର୍ବରେ ଥିବା ଗୁରୁଚାପ ଅଂଚଳର ବାୟୁକୁ ନିଜ ଆଡକୁ ପ୍ରବଳ ବେଗରେ ଆକର୍ଷଣ କରିଥାଏ । ଫଳତଃ ଉଷ୍ମ ଜଳ ସ୍ରୋତ ପଶ୍ଚିମାଞ୍ଚଳକୁ ପ୍ରବାହିତ ହୋଇଥାଏ । ମାତ୍ର କିଛି ବର୍ଷର ବ୍ୟବଧାନରେ ଏଇ ପ୍ରକ୍ରିୟାରେ ବ୍ୟତିକ୍ରମ ଦେଖାଯାଏ । ଲଘୁଚାପ ଅଂଚଳଟି ଧୀରେ ଧୀରେ ପୂର୍ବ ଦିଗକୁ ଗତି କରିଥାଏ ଓ ଏହା ଫଳରେ ଗୁରୁଚାପ ଅଂଚଳର ପ୍ରଭାବ ଆସ୍ତେ ଆସ୍ତେ ହ୍ରାସ ହୋଇଥାଏ ଓ ଉଷ୍ଣ ଜଳ ସ୍ରୋତର ପ୍ରବାହ ପଶ୍ଚିମ ପରିବର୍ତ୍ତେ ପୂର୍ବ ଦିଗକୁ ଗତି କରେ । ଏହି ପ୍ରକ୍ରିୟାକୁ 'ଏଲ୍ ନିନୋ' କୁହାଯାଏ । ଏହା ଫଳରେ ଗ୍ରୀଷ୍ମମାସ ବେଳକୁ ଉତ୍ତର ମେରୁ ଓ ବିଷୁବ ରେଖା ଅଂଚଳର ସମୁଦ୍ର ଜଳର ଉତ୍ତାପ ବଢ଼ିଯାଏ । ଫଳ ସ୍ୱରୂପ, ଟୁନା ଓ ଆଙ୍କୋଭି ଭଳି ସାମୁଦ୍ରିକ ମାଛମାନେ ସମୁଦ୍ର କୂଳ ଅଂଚଳ ଛାଡି ଚାଲିଯାଆନ୍ତି । କାରଣ ସେମାନଙ୍କର ପ୍ରିୟ ଖାଦ୍ୟ ଶୈବାଳ ଉଷ୍ଣ ଜଳରେ ବଢ଼ି ପାରେ ନାହିଁ । 'ଏଲ୍ ନିନୋ' ପ୍ରକ୍ରିୟାଟି ଆରମ୍ଭ ସମୟରେ ସାମାନ୍ୟ ମନେ ହୋଇପାରେ ମାତ୍ର ବିଶ୍ୱ ପରିବେଶ ପାଇଁ ଏହାର ପ୍ରତିକୂଳ ପ୍ରଭାବ ଅତ୍ୟନ୍ତ ସୁଦୂରପ୍ରସାରୀ । ସ୍ପେନ୍ ଭାଷାର ଏଇ 'ଏଲ୍ ନିନୋ'ର ଅର୍ଥ ହେଉଛି ଈଶ୍ୱରଙ୍କ ପୁତ୍ର ।

୧୯୮୨ ଓ ୧୯୮୩ ମସିହାରେ ଏଇ 'ଏଲ୍ ନିନୋ'ର ପ୍ରଭାବ ଖୁବ୍ ସାଂଘାତିକ ଥିଲା ଓ ଏହାର ଆଗମନ ସମ୍ପର୍କରେ ଜଳବାୟୁ ବିଶାରଦମାନେ ସୂଚନା ପାଇ ନଥିଲେ । ଯଦିଓ ବୈଜ୍ଞାନିକମାନେ ଅନୁଭବ କରନ୍ତି 'ଏଲ୍ ନିନୋ' ଏକ ସ୍ଥାୟୀ ପ୍ରକ୍ରିୟା ମାତ୍ର ଏହାର କାରଣ ସମ୍ପର୍କରେ ସେମାନେ ଏଯାବତ୍ ତଥ୍ୟ ଯୋଗାଇ ପାରି ନାହାନ୍ତି । ପ୍ରକୃତିର ଏଇ ରହସ୍ୟ ମାନବର ସୀମାବଦ୍ଧ ଜ୍ଞାନ ଗାରିମାଠାରୁ ଅନେକ ଦୂରରେ ।

ଏଥର ମୂଳ ପ୍ରଶ୍ନକୁ ଫେରିଯାଏ । ମଣିଷ ନିଜର ଚାତୁରୀପଣକୁ ପୁଞ୍ଜି କରି ଯେତେ ଦିନ ପ୍ରକୃତି ସହ ଅନ୍ୟାୟ କରୁଥିବ, ସେତେ ଦିନ ଯାଏ ପ୍ରକୃତିର ତାଣ୍ଡବଲୀଳାର ଶିକାର ସେ ନିଜେ ହେଉଥିବ । ପ୍ରକୃତିର ଏଇ ରୋଷ ମଣିଷର ଅଜ୍ଞାନତାକୁ ଦୂର କରିବା ପାଇଁ

ଯଥେଷ୍ଟ ସୂଚନା ବୋଲି ବୁଝିବାକୁ ହେବ ।

ପ୍ରସଂଗକ୍ରମେ ଗଙ୍ଗା ନଦୀର ଧୀବର କଥା ହିଁ କୁହାଯାଇପାରେ । ଗଙ୍ଗାନଦୀ କୂଳରେ ଥାଏ ଜଣେ ଧୀବର । ପ୍ରତି ସଂଧ୍ୟାରେ ନିଜ ଡଙ୍ଗା ଓ ଜାଲଟିଏ ଧରି ନଦୀର ଗଭୀର ଅଂଚଳକୁ ଚାଲିଯାଏ ମାଛଧରିବା ପାଇଁ । ଅନେକ ଦିନ ଯାଏ ଏଇ ପ୍ରକ୍ରିୟାଟି ଚାଲେ, ମାତ୍ର ତାର ଜାଲରେ ମାଛଟିଏ ପଡେ ନାହିଁ । ସେଥିପାଇଁ ତା'ର ଦୁଃଖ ଥାଏ । ଦିନେ ରାତିରେ ନଦୀରେ ଜାଲ ପକାଉଥିବା ସମୟରେ ଓଜନିଆ ମାଛଟିଏ ଜାଲ ଭିତରକୁ ଆସିଛି ବୋଲି ତାର ମନେ ହେଲା । ଧୀରେ ଧୀରେ ଜାଲଟି ଟାଣି ଧୀବରଟି ନଦୀ କୂଳକୁ ଆସିଲା ଓ ତୁରନ୍ତ ଜାଲଟିକୁ ଟାଣି ବାହାରେ ଦେଖେ ତ, ଜାଲ ଭିତରେ ଅଛି ଛୋଟ ଛୋଟ ପଥର ଖଣ୍ଡ । ରାତିର ଗଭୀର ଅଂଧାକାର ଭିତରେ ପୁନଶ୍ଚ ଉଦାସ ହୋଇଗଲା ଧୀବରଟି । ରାଗ ଓ ଦୁଃଖରେ ବସି ପଡି ସେଇ ପଥର ଖଣ୍ଡଟିମାନ ନଦୀ ଭିତରକୁ ପକାଇ ଚାଲିଥାଏ ସେ । କ୍ରମଶଃ ସକାଳ ହେଇ ଆସୁଥାଏ । ପ୍ରଭାତ ଆକାଶର ଫର୍ଚ୍ଚାରେ ଶେଷ ପଥର ଖଣ୍ଡକ ସ୍ପଷ୍ଟ ଭାବରେ ନିଜ ହାତରେ ଧରି ଧୀବରଟି ଚିନ୍ତା କଲା - ପଥରଟିକୁ ନେଇ ଜହୁରୀ କି ଦେଖେଇବି ।'' ଅତଏବ ସକାଳୁ ସକାଳୁ ଯାଇ ଜହୁରୀ ପାଖରେ ପହଞ୍ଚିଲା ଧୀବରଟି । ଜହୁରୀ ଅନେକ ପ୍ରଶ୍ନ କଲା ପରେ ସୂଚନା ଦେଲା ଯେ - ଏହା ସାମାନ୍ୟ ପଥର ଖଣ୍ଡ ନୁହେଁ, ମୂଲ୍ୟବାନ ହୀରା ।

''ମୁଁ ତ ସବୁ ପଥର ପାଣି ମୁଝିକୁ ଫିଙ୍ଗି ଦେଲି'' ମୁଣ୍ଡରେ ହାତ ରଖି ଧୀବରଟି ଜହରୀକୁ କହିଲା ।

''ତୁ ଗୋଟେ ଅଜ୍ଞାନୀ'' ଜହୁରୀ କହିଲା ।

ଠିକ୍ ସେଇପରି ନିଜକୁ ସୁଧାରି ନେବା ଲାଗି ଏବେ ବି ମଣିଷର ସମୟ ଅଛି । ନଚେତ୍, ଉତ୍ତରପୁରୁଷଙ୍କଠାରୁ ତାକୁ ଅଜ୍ଞାନୀ ଓ ପାଷାଣ୍ଡର ପ୍ରମାଣପତ୍ର ମିଳିବା ଲାଗି ଆଉ ବେଶି ଡେରି ନାହିଁ ।

*ଅନୁପମ ଭାରତ ୯.୬.୯୮*

# ବସ୍ତ୍ରହରଣ ଦୃଶ୍ୟ

'ମହାଭାରତ'ର ଦ୍ରୌପଦୀଙ୍କ ବସ୍ତ୍ରହରଣ ଉପଖ୍ୟାନଟି ପ୍ରାୟ ପ୍ରତିଟି ଭାରତୀୟ ଜାଣନ୍ତି । ଯେଉଁମାନେ ସେ ସମ୍ପର୍କରେ ଅଳ୍ପ ଜାଣିଥିଲେ ଅଥବା ଜାଣିନଥିଲେ ଆମର ଟିଭି ଚ୍ୟାନେଲ୍‌ରେ ପ୍ରଦର୍ଶିତ ହୋଇ ଉପାଖ୍ୟାନଟି ବେଶ୍ ହୃଦୟସ୍ପର୍ଶୀ ହୋଇ ପାରିଥିଲା ଦର୍ଶକମାନଙ୍କ ପାଇଁ । ଦ୍ରୌପଦୀଙ୍କ ବସ୍ତ୍ରହରଣ ସଭାରେ କୌରବମାନଙ୍କ ସମେତ ସମସ୍ତ ପାଣ୍ଡବ ଭ୍ରାତା ଅର୍ଥାତ୍ ଦ୍ରୌପଦୀଙ୍କ ସ୍ୱାମୀମାନେ ମଧ୍ୟ ଉପସ୍ଥିତ ଥିଲେ । ଦ୍ରୋଣାଚାର୍ଯ୍ୟଙ୍କ ପରି ଗୁରୁ ମଧ୍ୟ ଏଇ ସଭାରେ ମଥାନତ କରି ରହିଥିଲେ । ସମସ୍ତ ପରିଜନ ଏବଂ ପ୍ରିୟଜନଙ୍କ ଉପସ୍ଥିତିରେ ଏହି ଘଟଣା ଘଟିଥିଲା ବେଳେ ସମସ୍ତେ ଚୁପ୍ ରହି ଏହି ମୁହୂର୍ତ୍ତକୁ ବରଦାସ୍ତ କରୁଥିଲେ । 'ବସ୍ତ୍ରହରଣ' ପରେ ମହାଭାରତର ଗତି କୁଆଡେ ଗଲା- ସେ ସମ୍ପର୍କରେ ଏଠି ଆଲୋଚନା କରାଯାଉନାହିଁ । ମାତ୍ର ନିକଟରେ ଆମ ରାଜ୍ୟର ଏକ ପ୍ରମୁଖ ଶିକ୍ଷାନୁଷ୍ଠାନରେ ଜଣେ ଛାତ୍ରୀଙ୍କ ବସ୍ତ୍ରହରଣ ଘଟଣା କଥା ଖବରକାଗଜମାନଙ୍କ ପୃଷ୍ଠାରେ ଆଲୋଚିତ ହେଉଥିବା ନେଇ ବୁଦ୍ଧିଜୀବୀ ମହଲରେ ବେଶ୍ ଆଲୋଡନ ସୃଷ୍ଟି କରିଛି ।

ଘଟଣାଟି ଏଇପରି: ରେଭେନ୍ସା ମହାବିଦ୍ୟାଳୟର ଛାତ୍ରୀ ନିବାସର ଅନ୍ତେବାସିନୀମାନେ ନୂତନ ହୋଇ ଛାତ୍ରୀନିବାସରେ ସ୍ଥାନ ପାଇଥିବା ଅନ୍ତେବାସିନୀମାନଙ୍କୁ ସ୍ୱାଗତ କରିବା ସହ ସେମାନଙ୍କ ସହ ପରିଚିତ ହେବା ଲାଗି ଏକ ସଭାର ଆୟୋଜନ କରିଥିଲେ । ସଭାର ଆୟୋଜକ ଥିଲେ ବରିଷ୍ଠ କ୍ଲାସ୍‌ର ଛାତ୍ରୀବୃନ୍ଦ । ସ୍ୱାଗତ ସମ୍ବର୍ଦ୍ଧନା ଏବଂ ବିଦାୟ ଉତ୍ସବ ପାଳନ କରିବା ଛାତ୍ରଛାତ୍ରୀ ମହଲରେ ଏକ ଅଲିଖିତ ପରମ୍ପରା ।

ସେଦିନ ଏଇ ସ୍ୱାଗତ ସଭାରେ ଉପସ୍ଥିତ ଥିଲେ ରାଉରକେଲା ସହରରୁ ନୂଆକରି ଆସିଥିବା ଅନ୍ତବାସିନୀ ଜଣକ । ତାଙ୍କ ବ୍ୟତୀତ ଆହୁରି ଶହେ ଛବିଶି ଜଣ ଅନ୍ତେବାସିନୀ ମଧ୍ୟ ଉପସ୍ଥିତ ଥିଲେ ଉକ୍ତ ସଭାରେ । ପରିଚୟପତ୍ର ଆଦାନ ପ୍ରଦାନ ପର୍ବକୁ ଟିକେ ରସାଳ କରିବା ଲାଗି ଉକ୍ତ ସଭାରେ ଅନ୍ତେବାସିନୀଙ୍କୁ ଉଲଗ୍ନ ହେବାକୁ ବରିଷ୍ଠ କ୍ଲାସର ଛାତ୍ରୀମାନେ ନିର୍ଦ୍ଦେଶ ଦେଲେ । କେବଳ ସତିକି ନୁହେଁ କେତେକ ଅଶାଳୀନ ଅଭିନୟ କରିବାକୁ ମଧ୍ୟ ତାଙ୍କୁ କୁହାଗଲା, ଫଳତଃ ସେ ବାରମ୍ବାର ସଂଜ୍ଞାହୀନ ହୋଇପଡୁଥିଲେ । ଏହି ବସ୍ତ୍ରହରଣ ଦୃଶ୍ୟଟି ଅଭିନୀତ ହୋଇ ଚାଲିଥିବା ବେଳେ ନବାଗତା ଛାତ୍ରୀ ଜଣକ ଦ୍ରୌପଦୀଙ୍କ ପରି ବିକଳ ହୋଇ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରିଥିଲେ କି ନାହିଁ, ଏ ଲେଖକ

ଜାଣିନାହିଁ, ମାତ୍ର ଶିକ୍ଷାଗୁରୁ ଏବଂ ପାଣ୍ଡବମାନଙ୍କର କୁରୁସଭାରେ ନିରବ ରହିବା ପରି କେତେକ ଛାତ୍ରୀ ନିରୀହ ଦର୍ଶକ ଭାବେ ଏହି ଦୃଶ୍ୟଟିକୁ ଅବଲୋକନ କରୁଥିଲେ । ସେମାନଙ୍କ ଭିତରୁ କେହି ଏ ଅଭିନୟ ପ୍ରଦର୍ଶନର ପ୍ରତିବାଦ କରିନଥିଲେ । ଯଦିଓ ଏ ପ୍ରକାର ଉତ୍ସବକୁ ଇଂରାଜୀରେ 'ର୍‍ୟାଗିଙ୍ଗ୍' କୁହାଯାଉଛି, ଏହା ଯେ କିଛି ବିକୃତ ମସ୍ତିଷ୍କର ଫଳ ଏହା ନିଃସନ୍ଦେହରେ ସ୍ୱୀକାର କରାଯାଇପାରେ ।

'ର୍‍ୟାଗିଙ୍ଗ'ର ଅର୍ଥ ହେଲା ଟାହିଟାପରା କରିବା । ସର୍ବସମକ୍ଷରେ କୌଣସି ନାରୀର ଉଲଗ୍ନ ଶରୀର ଦେଖିବାକୁ ଆମେ ଟାହିଟାପରା ପର୍ଯ୍ୟାୟଭୁକ୍ତ କରିପାରିବା ନାହିଁ । ପ୍ରତିଟି ମଣିଷ ନିଜ ପୋଷାକ ଭିତରେ ଉଲଗ୍ନ ବୋଲି କେହି ଜଣେ ଲେଖକ ଏକଦା ଉଦ୍‌ଘୋଷଣା କରିଥିଲେ । ମୁଖା ପିନ୍ଧିଥିବା ମଣିଷ ପାଇଁ ଏହାଥିଲା ତାଙ୍କର ତୀର୍ଯ୍ୟକ୍ ଦୃଷ୍ଟିଭଙ୍ଗୀ । ମାତ୍ର ଅନାବୃତ ଶରୀର ଦେଖିବାର ଇଚ୍ଛା କେବଳ ଅସୁସ୍ଥ ମାନସିକତା ନୁହେଁ, ଅସାମାଜିକତା ମଧ୍ୟ । ଯେଉଁମାନେ ନବାଗତ ଛାତ୍ରୀଙ୍କୁ ଉକ୍ତ ଅବସ୍ଥାରେ ଦେଖିବାକୁ ବାଧ୍ୟ କରିଥିଲେ, ସ୍ୱଳ୍ପକାଳ ପାଇଁ ହେଲେ ବି ସେମାନେ ଛାତ୍ରୀ ନିବାସଟିକୁ 'ଇଡେନ୍ ଗାର୍ଡେନ' ବୋଲି ମନେ କରିଥିବେ । କାରଣ ନିଷିଦ୍ଧ ଫଳ ଖାଇବା ପୂର୍ବରୁ ପୃଥିବୀର ପ୍ରଥମ ପୁରୁଷ ଓ ନାରୀ ଆଦମ୍ ଏବଂ ଇଭ୍ ଉଲଗ୍ନ ଭାବେ ଇଡେନ୍ ଗାର୍ଡେନ୍‌ରେ ବୁଲିବା କଥା ଆମେ ଜାଣୁ । ଅବଶ୍ୟ ସେତେବେଳେ ଲଜ୍ଜା ବୋଲି କିଛି ନଥିଲା । ସେଇଥିପାଇଁ ବାଇବେଲ୍‌ରେ ଉଲ୍ଲେଖ ଅଛି : ପୁରୁଷ ଏବଂ ତା'ର ସ୍ତ୍ରୀ ଦୁହେଁ ଉଲଗ୍ନ ଥିଲେ ଓ ସେମାନେ ଲଜ୍ଜା ଅନୁଭବ କରୁନଥିଲେ । (And they both were naked, the man and his wife, and were not ashmed-Old Testament, Genesis,II,25) ଏଥିରୁ ଗୋଟିଏ କଥା ଅନ୍ତତଃ ପ୍ରତୀୟମାନ ହେଉଛି ଯେ ଏବେବି ଆମ ସମାଜରେ 'ଲଜ୍ଜା' ବୋଲି କିଛି ନାହିଁ ଏବଂ ଆମେ ପୁନର୍ବାର ପ୍ରାଗୈତିହାସିକ ସମୟକୁ ଫେରିଯାଇଛୁ ।

ଅପରପକ୍ଷରେ ଏଇ ଘଟଣାର ଅନ୍ୟ ଦିଟି ବେଶ୍ ବିସ୍ମୟକର । ତା' ହେଉଛି, ଏଇ ଅପକର୍ମକୁ ଚପାଇ ଦେବାର ଅପଚେଷ୍ଟା ଏବଂ ଏଇ ଅପଚେଷ୍ଟା ପାଇଁ କିଛି ମହିଳାଙ୍କୁ ମଧ୍ୟ ଦାୟୀ କରାଯାଉଛି । ନାରୀ ହିଁ ନାରୀର ପ୍ରଧାନ ଶତ୍ରୁ । ଏ କଥାଟି ଅନ୍ତତଃ ଅସଂଖ୍ୟ ଯୌତୁକ ଜନିତ ନିର୍ଯ୍ୟାତନା ଅଥବା ମୃତ୍ୟୁ ଘଟଣାରୁ ଆମେ ଜାଣୁ । ପ୍ରାୟ ଅଧିକାଂଶ ବୋହୂଙ୍କୁ ମାରିବାରେ ଅଥବା ନିର୍ଯ୍ୟାତନା ଦେବାରେ ଶାଶୁ କିମ୍ବା ନଣନ୍ଦଙ୍କ ପ୍ରଚ୍ଛନ୍ନ ହାତ ଥାଏ । ଠିକ୍ ସେଇପରି ନବାଗତା ଛାତ୍ରୀଙ୍କ ଉପରେ ହୋଇଥିବା ଅମାନୁଷିକ ଅତ୍ୟାଚାରକୁ ନିନ୍ଦା କରିବା ପାଇଁ ରାଜ୍ୟ ମହିଳା କମିଶନ ଅଥବା ନାରୀ ସଂଗଠନ କୌଣସି ମନ୍ତବ୍ୟ ସୁଦ୍ଧା ଦେଇନାହାଁନ୍ତି । ମାତ୍ର ଏହା ଯଦି କୌଣସି ପୁରୁଷଙ୍କ ଦ୍ୱାରା ହୋଇଥା'ନ୍ତା, ତେବେ ଖବରକାଗଜମାନଙ୍କର ପ୍ରଥମ ପୃଷ୍ଠାରେ ସେମାନଙ୍କ ଫଟୋ ଏବଂ ବିବୃତ୍ତି ସ୍ଥାନିତ

ହୋଇଥା'ନ୍ତା ।

ଓଡିଶାର ସର୍ବପ୍ରାଚୀନ ତଥା ପ୍ରସିଦ୍ଧ ଶିକ୍ଷାନୁଷ୍ଠାନରେ ତଥା କର୍ତ୍ତୃପକ୍ଷଙ୍କ ଅନତିଦୂରରେ ଏପରି କାର୍ଯ୍ୟକଳାପ ଚାଲୁଥିବା ବେଳେ, ଆମେ ଓଡିଶାର ପ୍ରାନ୍ତୀୟ ଶିକ୍ଷାନୁଷ୍ଠାନଗୁଡିକର ପ୍ରଶାସନିକ ଅବସ୍ଥା ସମ୍ପର୍କରେ ସହଜରେ ଅନୁମାନ କରିବା । ତେଣୁ ସତ୍ୟର ଉଦ୍‌ଘାଟନ ପାଇଁ ବ୍ୟାକୁଳ ହୋଇ ଉକ୍ତ ନବାଗତା ଛାତ୍ରୀଜଣକ ତାଙ୍କ ରାଉରକେଲା ବାସଭବନରୁ ଅନୁଷ୍ଠାନର କର୍ତ୍ତୃପକ୍ଷଙ୍କୁ ଯେଉଁ ଦୀର୍ଘ ଚିଠି ଲେଖିଛନ୍ତି, ତାହା କେବଳ ତାଙ୍କ ମନକୁ କିଛି କାଳ ହୁଏତ ହାଲ୍‌କା କରିପାରେ । ମାତ୍ର ଏହା କେବଳ କାଳ ସାମ୍ନାରେ ମୂଳା ଚୋବାଇବା ପ୍ରାୟ ହେବ । ତାଙ୍କ ଭାଷାରେ: 'ଆପଣ ଏହି ଚରମ ସତ୍ୟଟିକୁ ବାସ୍ତବତାରେ ପରିଣତ କରିବେ ବୋଲି ମୁଁ ଆଶା କରୁଛି ଏବଂ ଆମର ନୈତିକ ମନୋବଳ ବଢ଼ାଇବା ସହ, ଅନୁଷ୍ଠାନର ସମ୍ମାନ ଓ ପବିତ୍ରତା ରକ୍ଷା କରିବା ସଂଗେ ସଂଗେ ସତ୍ୟକୁ ଘୋଡାଇବା ପାଇଁ ଚେଷ୍ଟା କରୁଥିବା ଅବାଞ୍ଛିତ, ଅନୈତିକ ଓ ଅସାମାଜିକ କାର୍ଯ୍ୟ କରିଥିବା ଉପରୋକ୍ତ ବାଳିକାମାନଙ୍କ ବିରୁଦ୍ଧରେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ।' ଅସଲ କଥା ହେଉଛି, ଏଇ ନବାଗତା ଛାତ୍ରୀଙ୍କର ସ୍ଥାନୀୟ ଅଭିଭାବକ ଥିଲେ ଓଡିଶାର ଜଣେ ବରିଷ୍ଠ ରାଜନୈତିକ କର୍ମୀ । ଫଳତଃ, ଶିକ୍ଷାନୁଷ୍ଠାନରେ ଘଟିଥିବା ଏଇ ଅଘଟଣଟି ସର୍ବସାଧାରଣଙ୍କ ଦୃଷ୍ଟିକୁ ଆସିପାରିଲା । ଅନ୍ୟଥା ଏଇ ବସ୍ତ୍ରହରଣ ଅଭିନୟ ସମ୍ପର୍କରେ କେହି ସୁରାକ୍ ପାଇନଥାନ୍ତେ । କହିବା ବାହୁଲ୍ୟ-ଏହା କିଛି ନୂଆକଥା ନୁହେଁ । ଆଗାମୀ ବର୍ଷମାନଙ୍କରେ ମଧ୍ୟ ଏଇ ଅଭିନୟର ରସୋତ୍ତୀର୍ଣ୍ଣ ଦୃଶ୍ୟମାନ ଆମ ଶିକ୍ଷାନୁଷ୍ଠାନରେ ପ୍ରଦର୍ଶିତ ହେବାର ଖବର ମଧ୍ୟ ସୁଧୀ ପାଠକବୃନ୍ଦ ପାଇବେ- ଏଥିରେ ମର୍ମାହତ ହେବାର କୌଣସି କାରଣ ନାହିଁ । କେବଳ ଚରିତ୍ର ବଦଳି ପାରନ୍ତି, ଦୃଶ୍ୟ ନୁହେଁ ।

*ଅନୁପମ ଭାରତ ୧୪.୨.୨୦୦୦*

# ଆଃ, ମିଲେନିୟମ୍ !

ଗତ ବର୍ଷ ଠିକ୍ ଏଇ ସମୟରେ ବିଶ୍ୱର ଅଧିକାଂଶ ବୁଦ୍ଧିଜୀବୀ ଓ ଶିକ୍ଷିତ ସମାଜ୍ ଖୁବ୍ ଆତଙ୍କିତ ହୋଇ ପଡ଼ିଥିଲେ । କାରଣଟି ଥିଲା, ୨୦୦୦ ମସିହା ଆରମ୍ଭ ହେବା କ୍ଷଣି ପୃଥିବୀର ସମସ୍ତ କମ୍ପ୍ୟୁଟର୍ ତାର ନିୟନ୍ତ୍ରଣ ହରାଇବା ସହ ଅପରିକଳ୍ପନୀୟ ପରିସ୍ଥିତି ସୃଷ୍ଟି କରିବସିବ । ସେମାନଙ୍କ ଭିତରେ ରହିଥିଲା ବିମାନ ଦୁର୍ଘଟଣା ଏବଂ ପାରମାଣବିକ ଆଗ୍ନେୟାସ୍ତ୍ର ଆପଣା ଛାଏଁ ସକ୍ରିୟ ହୋଇ ଉଠିବା ଭଳି ରୋମାଂଚକର ଘଟଣା । ମାତ୍ର ଏସବୁ ଏବେ କାହାଣୀ ହୋଇ ରହିଛି । ଈଶ୍ୱରଙ୍କୁ ଅନେକ ଅନେକ ଧନ୍ୟବାଦ । ୨୦୦୦ ମସିହାରେ ଆଉ ଏକ ବିବାଦ ସମଗ୍ର ବିଶ୍ୱକୁ ଖୁବ୍ ଆନ୍ଦୋଳିତ କରିଥିଲା । ଏହି ମସିହାଟି ନୂତନ ବା ତୃତୀୟ ସହସ୍ରାବ୍ଦର ପ୍ରଥମ ବର୍ଷ କି ନୁହେଁ, ଏଥିନେଇ ଖୁବ୍ ଆଲୋଚନା ସବୁଆଡ଼େ ହୋଇଥିଲା । ମାତ୍ର ସବୁଠୁ ଅଧିକ ଗୁରୁତ୍ୱ ଓ ଜାକଜମକରେ ପାଳନ କରିବାର କୌଣସି ଆକାଂକ୍ଷାକୁ ହାତଛଡ଼ା କରିନଥିଲେ ବିଶ୍ୱବାସୀ । ମାତ୍ର ଏବେ ୨୦୦୧ ମସିହାର ପହିଲା ଦିବସ (୧.୧.୨୦୦୧)କୁ ଏକବିଂଶ ଶତାବ୍ଦୀ ଏବଂ ତୃତୀୟ ସହସ୍ରାବ୍ଦୀର ପ୍ରଥମ ଦିବସ ଭାବେ ଗ୍ରହଣ କରୁଛନ୍ତି ବିଶ୍ୱବାସୀ । ସମୟର ଅନନ୍ତ ଧାରାକୁ ଚିହ୍ନିତ କରିବା ମଣିଷର ଏକ କ୍ଷୁଦ୍ର ପ୍ରୟାସ ମାତ୍ର ।

ସମୟକୁ ଚିହ୍ନିତ କରିବା ଲାଗି ସମଗ୍ର ବିଶ୍ୱରେ ୪୦ଟି କ୍ୟାଲେଣ୍ଡର୍ ଏବେ ବି ପ୍ରଚଳିତ ଅଛି । ସବୁଠାରୁ ଲୋକପ୍ରିୟ ଗ୍ରେଗୋରିଆନ୍‌ଙ୍କ ଦ୍ୱାରା ସଂଶୋଧିତ କ୍ୟାଲେଣ୍ଡର୍‌ଟି ଆଜି ବିଶ୍ୱରେ ପ୍ରଚଳିତ । ବିଭିନ୍ନ ଦେଶ ଓ ଜାତି ଦ୍ୱାରା ପ୍ରଚଳିତ କ୍ୟାଲେଣ୍ଡର୍ ସଂପର୍କରେ ସମ୍ୟକ୍ ଧାରଣା ଏଠି ଦିଆଯାଇପାରେ । ଖ୍ରୀଷ୍ଟାବ୍ଦ ୨୦୦୧ ମସିହାକୁ ମୂଳ ବର୍ଷ ଧରିଲେ, ବାଇଜାଣ୍ଟାଇନ୍ ପ୍ରଚଳିତ ୭୫୦୯ ଅବ୍ଦ, ଚାଇନିଜ୍ ପ୍ରଚଳିତ ୪୬୩୭ ଅବ୍ଦ, ଶକ ୧୯୨୨ ଅବ୍ଦ ଏବଂ ମୁସଲମାନଙ୍କ ଦ୍ୱାରା ପ୍ରଚଳିତ ୧୪୨୧ ହେଜିରାବ୍ଦ ଏବଂ ଜୀଉଙ୍କ ଏ.ଏମ୍. ୫୭୬୦ ଅବ୍ଦ ଏହାର ସମକକ୍ଷ ହୋଇ ପାରିବ । ଅବଶ୍ୟ ଏଇ ଅବ୍ଦମାନଙ୍କର ବର୍ଷର ପ୍ରଥମ ଦିବସଟି ବିଭିନ୍ନ ତାରିଖରେ ହିଁ ଆରମ୍ଭ ହୋଇଥାଏ । କିମ୍ବଦନ୍ତୀରୁ ଜଣାଯାଏ, ଖ୍ରୀ.ପୂ. ୭୩୮ ମସିହାରେ ରୋମ୍‌ର ପ୍ରତିଷ୍ଠାତା ରୋମୁଲସ୍‌ଙ୍କ ଦ୍ୱାରା ଏକ କ୍ୟାଲେଣ୍ଡର୍ ପ୍ରଚଳନ କରାଯାଇଥିଲା । ମାତ୍ର ଏଇ କ୍ୟାଲେଣ୍ଡର୍‌ଟି ତ୍ରୁଟିପୂର୍ଣ୍ଣ ଥିଲା । ଏପରିକି ଖ୍ରୀ.ପୂ. ୪୬ ମସିହା ବେଳକୁ ଜୁଲିଅସ୍ ସିଜର୍‌ଙ୍କ ରାଜତ୍ୱ ବେଳେ ଶୀତ ଋତୁ ବେଳକୁ ବସନ୍ତ ଋତୁ

ଆସିଥିବାର ଘୋଷଣା କରିବା ପରେ ଅଭାବନୀୟ ପରିସ୍ଥିତି ସୃଷ୍ଟି କରିଥିଲା । ତେବେ, ସୋଶିଜିନିସ୍ ନାମକ ଜଣେ ଜ୍ୟୋତିର୍ବିଜ୍ଞାନୀଙ୍କୁ ନିଯୁକ୍ତ କରି ନୂତନ କ୍ୟାଲେଣ୍ଡର୍ ତିଆରି କରିବାକୁ ଜୁଲିଅସ୍ ସିଜର୍ ଆଦେଶ ଦେଇଥିଲେ । ଠିକ୍ ସେଇଦିନଠାରୁ ବର୍ଷକୁ ୩୬୫ ଦିନ ଧାର୍ଯ୍ୟ କରିବା ସହ ପ୍ରତି ଚାରି ବର୍ଷରେ ଗୋଟିଏ ଅଧିକ ଦିନ ଗଣନା କରି ଏହାକୁ ଅଧିବର୍ଷ ଭାବେ ନାମିତ କଲେ । ମାତ୍ର ସୋଶିଜିନିସ୍‌ଙ୍କ ଗଣନାରେ ପ୍ରତିବର୍ଷ ୧୧ ମିନିଟ୍ ଅଧିକ ରହିଥିଲା ୧୫୮୨ ମସିହାରେ ପୋପ୍ ଗ୍ରେଗରି ଏହାକୁ ସଂଶୋଧନ କଲେ । ଏଥିରେ ଯେଉଁ ଶତାବ୍ଦୀ ୪୦୦ ଦ୍ୱାରା ସଂପୂର୍ଣ୍ଣ ବିଭାଜିତ ନୁହେଁ ସେଥିରେ 'ଅଧିବର୍ଷ'କୁ ସଂଯୋଗ କରାଯିବ ନାହିଁ ବୋଲି ସ୍ଥିରୀକୃତ ହେଲା ଏବଂ ଗ୍ରେଗରି କ୍ୟାଲେଣ୍ଡର୍‌କୁ ଆହୁରି ଦଶଦିନ ବଢ଼ାଇ ଦେଲେ । ଏହି ବ୍ୟବସ୍ଥାଟି ଅଦ୍ୟାବଧି ପ୍ରଚଳିତ ।

ସଂପ୍ରତି ଯେଉଁ 'ଖ୍ରୀଷ୍ଟାବ୍ଦ' ପ୍ରଚଳିତ ହୋଇଛି ତାହା ଡିଓନିସଅସ୍ ଏକ୍ସିଗସ୍ (ସଂକ୍ଷେପରେ 'ଡେନିସ') ନାମକ ଜଣେ ସନ୍ୟାସୀଙ୍କ ଯୋଗୁଁ ସଂଭବ ହୋଇଥିଲା । ରୋମାନ୍ କ୍ୟାଲେଣ୍ଡର୍ ଅନୁଯାୟୀ ଯୀଶୁଖ୍ରୀଷ୍ଟଙ୍କ ଜନ୍ମ ଡିସେମ୍ବର ୨୫, ୭୫୩ରେ ହୋଇଛି ବୋଲି ସେ ସ୍ଥିର କରିଥିଲେ । ତାଙ୍କ ଗଣନାନୁଯାୟୀ ଖ୍ରୀଷ୍ଟାବ୍ଦର ଗଣନା ଜାନୁଆରୀ ୧, ୧ ମସିହାରୁ ଆରମ୍ଭ ହୋଇଛି । ଅର୍ଥାତ୍ ରୋମାନ୍ କ୍ୟାଲେଣ୍ଡର୍ ଅନୁଯାୟୀ ଏହା ଜାନୁଆରୀ ୧, ୭୫୪ ମସିହା ହିଁ ହେବା କଥା ।

ଏଠି କହିବା ପ୍ରାସଙ୍ଗିକ ହେବ ଯେ ସେତେବେଳ ଯାଏ ପାଶ୍ଚାତ୍ୟ ଦେଶମାନଙ୍କରେ ଭାରତୀୟ ବିଜ୍ଞାନୀ ଆର୍ଯ୍ୟଭଟ୍ଟଙ୍କ ପ୍ରଚଳିତ ଗାଣିତିକ ସଂଖ୍ୟା 'ଶୂନ୍'ର ପ୍ରଚଳନ ହିଁ ହୋଇ ନଥିଲା । ତେଣୁ ଜାନୁଆରୀ ୧, ୧୦ରୁ ଡିସେମ୍ବର ୩୧, ୧୦୦ ମସିହାକୁ ଶତାବ୍ଦୀ ଭାବେ ଗଣନା କରାଯାଉଥିଲା । ଅବଶ୍ୟ ୧୯୪୧ ମସିହାରେ ଧର୍ମଯାଜକ ପିଟର୍ ଆର୍ଚର୍ ପୁନର୍ବାର୍ 'ଶୂନ୍' ସଂଯୋଗ କରି ଶତାବ୍ଦୀର ହିସାବ କରିବାକୁ ପ୍ରସ୍ତାବ ଦେଇଥିଲେ ଯାହା ତତ୍କାଳୀନ କାଥୋଲିକ୍ ମୁଖ୍ୟଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିଲା ।

ଡେନିସ୍‌ଙ୍କ ଗଣନା ମଧ୍ୟ ତ୍ରୁଟିମୁକ୍ତ ନଥିଲା । ତାଙ୍କ ଗଣନା ଅନୁଯାୟୀ ଯୀଶୁ ଖ୍ରୀଷ୍ଟଙ୍କ ଜନ୍ମ ଖ୍ରୀ.ପୂ. ୪ ମସିହାରେ ହୋଇଥିଲା । ଏହା ହୋଇଥିଲେ ଆମେ ଡିସେମ୍ବର ୨୬, ୧୯୯୭ ମସିହାକୁ ତୃତୀୟ ଶତାବ୍ଦୀର ପ୍ରଥମ ଦିବସ ଭାବେ ଗ୍ରହଣ କରିବାକୁ ବାଧ୍ୟ ହୋଇଥାନ୍ତୁ ।

ସମସ୍ତ ତ୍ରୁଟି ଓ ଗଣନା, ପୁନର୍ଗଣନା ସତ୍ତ୍ୱେ ବିଶ୍ୱବାସୀ ୨୦୦୦ ମସିହାକୁ ତୃତୀୟ ସହସ୍ରାବ୍ଦୀର ପ୍ରଥମ ବର୍ଷ ଭାବେ ପାଳନ କରିବାକୁ କୌଣସି ସୁଯୋଗ ହାତଛଡ଼ା କରିନଥିଲେ । ବିଜ୍ଞାପନ ସଂସ୍ଥା, ବିଭିନ୍ନ ବାଣିଜ୍ୟ ଅନୁଷ୍ଠାନ ହିଁ ଏହି ବର୍ଷକୁ ସେମାନଙ୍କର ବ୍ୟାବସାୟିକ ସଫଳତା ପାଇଁ ବ୍ୟବହାର କରିଥିଲେ । ମାତ୍ର ସମସ୍ତ ସନ୍ଦେହକୁ ଦୂର କରିବା

ଲାଗି ବିଶ୍ୱର ସମୟ ନିୟାମକ - ରୟାଲ୍ ଗ୍ରୀନ୍‌ୱିଚ୍ ଅବ୍‌ଜର୍‌ଭେଟରି, ଆମେରିକାର ଲାଇବ୍ରେରୀ କଂଗ୍ରେସ୍; ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକା ଆଦି ସଂସ୍ଥା ଜାନୁଆରୀ ୧, ୨୦୦୧ ମସିହାକୁ ତୃତୀୟ ସହସ୍ରାବ୍ଦୀର ପ୍ରଥମ ଦିବସ ବୋଲି ସ୍ଥିର କରିଛନ୍ତି ।

୧୯୯୭ ମସିହାରେ ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ୍ ନୂତନ ସହସ୍ରାବ୍ଦୀ ପାଳନ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ଲାଗି ଏକ ପରିଷଦ ଗଠନ କରିଥିଲେ । ଏକ ପ୍ରେସ୍ ବିଜ୍ଞପ୍ତି ଜରିଆରେ ଏହି ପରିଷଦ କହିଥିଲେ ଯେ ୩୧ ଡିସେମ୍ବର ୧୯୯୯କୁ ପାଳନ କରିବାକୁ ତାଙ୍କ ମନ କହୁଚି, ଯଦିଓ ଡେନିସ୍‌ଙ୍କ ଗଣନା ଅନୁଯାୟୀ ତୃତୀୟ ସହସ୍ରାବ୍ଦୀ ଜାନୁଆରୀ ୧, ୨୦୦୧ରୁ ହିଁ ଆରମ୍ଭ । ସବୁ ଦୋଷ ସେ ଡେନିସ୍‌ଙ୍କ ଉପରେ ଲଦି ଦେଇଛନ୍ତି । ତେବେ ୨୦୦୧କୁ ନୂତନ ଶତାବ୍ଦୀ ଓ ସହସ୍ରାବ୍ଦୀର ବର୍ଷ ଭାବେ ଗଣନା କରାଗଲେ ମଧ୍ୟ ୨୦୦୦ ମସିହାକୁ ପାଳନ କରିବାରେ ସେମାନେ ଆପତ୍ତି କରିବେ ନାହିଁ ବୋଲି ଘୋଷଣା କରିଥିଲେ ।

ଉପରୋକ୍ତ ଆଲୋଚନାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଶତାବ୍ଦୀ ଓ ସହସ୍ରାବ୍ଦୀ- ସମୟର ରାଜରାସ୍ତାରେ ଏକ ଏକ ସୁଦୃଶ୍ୟ ମାଇଲ୍‌ଖୁଣ୍ଟ ମାତ୍ର । ମହାକାଳ ସବୁକିଛି ଧ୍ୱଂସ କରିଦିଏ । ସେଇଥିପାଇଁ ଭାରତୀୟ ସଂସ୍କୃତିରେ କୁହାଯାଇଛି- 'କାଳ ପିବତି ତଦ୍‌ରସମ୍' । ପାଶ୍ଚାତ୍ୟ ସଂସ୍କୃତିରେ ମଧ୍ୟ ଏହି ଭାବର ପରିସ୍ଫୁଟନ ହୋଇଛି । ଫ୍ରାନ୍‌ସର ବିଶିଷ୍ଟ ସଂଗୀତ ସଂଯୋଜକ ହେକ୍ଟର୍ ବର୍ଲିଓଜ୍ କହିଥିଲେ । ସମୟ ହେଉଛି ଜଣେ ବିଶିଷ୍ଟ ଶିକ୍ଷକ, ମାତ୍ର ଦୁର୍ଭାଗ୍ୟର କଥା, ଏହା ତା'ର ସମସ୍ତ ଛାତ୍ରଙ୍କୁ ହତ୍ୟା କରେ । (Time is a great teacher, but unfortunately it kills all its pupils.)

ସମୟର ଚିର ପ୍ରବହମାନତା ସଂପର୍କରେ ବିଶିଷ୍ଟ ନାଟ୍ୟକାର ସାମୁଏଲ୍ ବେକେଟ୍‌ଙ୍କ ନାଟକ 'ୱେଟିଙ୍ଗ ଫର୍ ଗୋଦୋ'ର ସଂଳାପଟିକୁ ଏଠି ଦୋହରାଇବା ପ୍ରାସଙ୍ଗିକ ହେବ ବୋଲି ମନେକରୁଛି;

ଭ୍ଲାଦିମିର୍: ସମୟ ଚାଲିଗଲା ।
ଏଷ୍ଟ୍ରାଗନ୍: ହଁ । ମାତ୍ର ଏତେ ଜଲ୍‌ଦି ନୁହେଁ ।
ସମୟକୁ ତା' ବାଟରେ ଚାଲିବାକୁ ଦିଆଯାଉ ।

*ଅନୁପମ ଭାରତ ୯.୦୧.୨୦୦୧*

# ଶତାବ୍ଦୀର ଭେଟି

ସ୍ୱର୍ଗତଃ ବିଜୁ ପଟ୍ଟନାୟକ ଯେତେବେଳେ ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ହେଲେ, ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ ତଥା ଏକ ସାହିତ୍ୟ ସଂସ୍ଥାର ସଭାପତି ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । ସାକ୍ଷାତ କରିବାର ଏକମାତ୍ର ଉଦ୍ଦେଶ୍ୟ ଥିଲା ତାଙ୍କୁ ଏକ ସାହିତ୍ୟ ସଭାରେ ସଭାପତିତ୍ୱ କରିବା ଲାଗି ଆମନ୍ତ୍ରଣ ଜଣାଇବା ପାଇଁ ।

ଯେତେବେଳେ ବିଜୁବାବୁ ଜାଣିଲେ ଯେ ସାହିତ୍ୟ ନାଁରେ ଏହି ବ୍ୟକ୍ତି ଅସାହିତ୍ୟିକ କାର୍ଯ୍ୟ କରିବାରେ ବେଶ୍ ଆଗ୍ରହୀ, ସେ ଉକ୍ତ ସାହିତ୍ୟିକଙ୍କୁ ନିଷ୍ଠୁର ଭତ୍ସନା କରିବାକୁ ପଛାଇ ନଥିଲେ । ବିଜୁବାବୁଙ୍କ ଏତାଦୃଶ ବ୍ୟବହାରରେ ବ୍ୟଥିତ ହୋଇ ଉକ୍ତ ସାହିତ୍ୟିକ ମହାଶୟ ଉକ୍ତ ସାହିତ୍ୟ ଅନୁଷ୍ଠାନରୁ ତୁରନ୍ତ ଇସ୍ତଫା ପ୍ରଦାନ କରିଥିଲେ । କାରଣ ବିଜୁବାବୁ ସାହିତ୍ୟରେ ରାଜନୀତିକୁ ଆଦୌ ବରଦାସ୍ତ କରୁନଥିଲେ, ଯଦିଓ ତାଙ୍କର ସୁପୁତ୍ରୀ ଭାରତ ତଥା ୟୁରୋପୀୟ ରାଜ୍ୟମାନଙ୍କରେ ଜଣେ ସଫଳ ଔପନ୍ୟାସିକା ଭାବେ ବେଶ୍ ଜଣାଶୁଣା ।

ମାତ୍ର ବିଜୁବାବୁଙ୍କ ଶାସନର ପୂର୍ବ ଏବଂ ପରବର୍ତ୍ତୀ ସମୟରେ ସାହିତ୍ୟିକମାନେ ରାଜନୀତିଜ୍ଞମାନଙ୍କୁ କୋଳାଗ୍ରତ କରିବାର ଅନେକ ନଜିର୍ ଆମ ରାଜ୍ୟରେ ଦେଖାଯାଏ ।

ରାଜନୀତି କଲେ ଜଣେ ସାହିତ୍ୟ କରିବ ନାହିଁ, ଏପରି ଧାରଣା ଅମୂଳକ । ମାତ୍ର ସାହିତ୍ୟ ବ୍ୟାପାରକୁ ନେଇ ରାଜନୀତିଜ୍ଞମାନଙ୍କ ମୁଣ୍ଡବିନ୍ଧା ଦେଖିଲେ ଶିରୋନାସ୍ତି ଶିରପୀଡ଼ା କଥାଟି ବାରମ୍ବାର ମନକୁ ଆସୁଛି । ସାହିତ୍ୟ ସହ ସୁଦୂର ସଂପର୍କ ନଥାଇ ବି ଆମ ରାଜନୀତିଜ୍ଞମାନେ ସାହିତ୍ୟାନୁଷ୍ଠାନର ସଭାପତି ହେବାକୁ ଖୁବ୍ ଆଗ୍ରହୀ ହେବା ଏକ ବିଡମ୍ବନା ଛଡ଼ା ଆଉ କ'ଣ ହୋଇପାରେ ? ରାଜନୀତି ଦ୍ୱାରା ନିର୍ଯ୍ୟାତିତା ଓଡ଼ିଶା ସାହିତ୍ୟ ଏକାଡେମୀ କଥା ଏଠାରେ ବିଚାର କରାଯାଉ ।

୧୯୫୭ ମସିହାରୁ ପ୍ରତିଷ୍ଠିତ ରାଜ୍ୟର ଏଇ ସର୍ବୋଚ୍ଚ ସାହିତ୍ୟାନୁଷ୍ଠାନଟିକୁ ରାଜନୀତିଜ୍ଞମାନଙ୍କ ପ୍ରଭାବରୁ ମୁକ୍ତ କରିବା ପାଇଁ ତତ୍କାଳୀନ ଶିକ୍ଷାମନ୍ତ୍ରୀ ତଥା ବିଶିଷ୍ଟ ଔପନ୍ୟାସିକ ନିତ୍ୟାନନ୍ଦ ମହାପାତ୍ର ଉପଯୁକ୍ତ ପଦକ୍ଷେପ ନେଇଥିଲେ । ମାତ୍ର ତେୟାଳିଶ ବର୍ଷ ଭିତରେ ଏହାର ଅଧୋଗତି ଯେଭଳି ଭାବେ ହୋଇଛି ସେଥିରୁ ଅନ୍ତତଃ କେତୋଟି ଉଦାହରଣ ନିଆଯାଇପାରେ ।

ଅଳ୍ପଦିନ ତଳେ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୯୫, ୯୬ ଓ ୯୭ ମସିହା

ପାଇଁ ସାହିତ୍ୟର ବିଭିନ୍ନ ବିଭାଗ ପାଇଁ ପୁରସ୍କାର ଘୋଷଣା କରିଛନ୍ତି । ଏକବିଂଶ ଶତାବ୍ଦୀର ଆରମ୍ଭରେ ୧୯୯୮ ଏବଂ ୯୯ ବର୍ଷ ପାଇଁ କାହିଁକି ପୁରସ୍କାର ଘୋଷଣା କରାଗଲା ନାହିଁ ବୋଲି କେହି କେହି ଭାବିପାରନ୍ତି । ଅବଶ୍ୟ ଏହା କରିଥିଲେ ଅନ୍ତତଃ ରାଜନୀତି ଓ ସାହିତ୍ୟ ପୁରସ୍କାର ମଧ୍ୟରେ ଏକ ସମନ୍ୱୟ ପ୍ରତିଷ୍ଠା ହୋଇ ପାରିଥାନ୍ତା । ରାଜ୍ୟ ବିଧାନସଭା ନିର୍ବାଚନ ସାଙ୍ଗକୁ ଓଡ଼ିଶା ସାହିତ୍ୟ ଏକାଡେମୀ ତାଳ ଦେଇ ପ୍ରତି ୫ ବର୍ଷରେ ଥରେ ପୁରସ୍କାର ଘୋଷଣା କରିବାର ପରମ୍ପରା ଅନ୍ତତଃ ସୃଷ୍ଟି ହୋଇଥାନ୍ତା । ନୁହେଁ କି ?

ଏକାଡେମୀର ପୁରସ୍କାର ଘୋଷଣା ସଂପର୍କୀୟ ଏକ ଅଭିଜ୍ଞତା ଏଠି ପାଠକମାନଙ୍କୁ ବାଣ୍ଟିବା ସମିଚୀନ ହେବ । କିଛି ବର୍ଷ ପୂର୍ବେ ଜନୈକ ସାହିତ୍ୟିକ ବନ୍ଧୁଙ୍କ ସହ ଟେଲିଫୋନ୍‌ରେ କଥା ହେଉଥିଲି । ବନ୍ଧୁ ହଠାତ୍ ପ୍ରଶ୍ନ କଲେ, ଉକ୍ତ ବର୍ଷ କାହାକୁ ଏକାଡେମୀ ପୁରସ୍କାର ମିଳିବା ଉଚିତ୍, ପଚରା ପଚରି ପରେ ଜାଣିଲି ସେ କେବଳ ସାହିତ୍ୟ ଏକାଡେମୀର ସଭ୍ୟ ନୁହନ୍ତି, ଅଧିକନ୍ତୁ ପୁରସ୍କାର ଚୟନ ପାଇଁ ଜଣେ ସମ୍ମାନାସ୍ପଦ ବିଚାରକ ମଧ୍ୟ । କଥା ପ୍ରସଙ୍ଗରେ ସେ ତିନି ଚାରି ଜଣଙ୍କ ନାମୋଲ୍ଲେଖ କଲେ । ପ୍ରକାଶ ଥାଉ କି ଉକ୍ତ ବର୍ଷ ସେଇମାନେ ହିଁ ପୁରସ୍କାର ପାଇବା କଥା ଘୋଷଣା କରାଯାଇଥିଲା ।

ଓଡ଼ିଶା ସାହିତ୍ୟ ଏକାଡେମୀର ଆଭିମୁଖ୍ୟଟି ଏବେ କେବଳ ପୁରସ୍କାର ଘୋଷଣା କରିବା ଏବଂ କିଛି ବିସ୍ମୃତ ସାହିତ୍ୟିକଙ୍କୁ ସମ୍ବର୍ଦ୍ଧନା ଦେବାରେ ସୀମିତ ରହିଛି । ଯେଉଁଠି ରାଜ୍ୟର ମୁଖ୍ୟମନ୍ତ୍ରୀ ବଦଳିଲେ ବିଭିନ୍ନ କର୍ପୋରେସନ୍‌ର ଚେୟାର୍‌ମେନ୍ ପଦବୀ ବଦଳିବା ପରି ଏକାଡେମୀର ସଭାପତି ମଧ୍ୟ ବଦଳନ୍ତି ସେହିପରି ଅନୁଷ୍ଠାନର ଅଧିକା ଆଭିମୁଖ୍ୟ କ'ଣ ବା ହୋଇପାରିବ ?

ଏବେ ପୁରସ୍କାର ଘୋଷଣା କରିବାର ଅହେତୁକ ବିଳମ୍ବ ହେତୁ ଯାବତୀୟ ବିଶୃଙ୍ଖଳା ସୃଷ୍ଟି ହେଉଛି । ଯାହା ଫଳରେ, ପୁରସ୍କାର ଆଶାୟୀ ଲେଖକମାନେ ବିଚାରକ ମଣ୍ଡଳୀଙ୍କୁ ତୁଷ୍ଟି କରିବା ନିମନ୍ତେ ସେମାନଙ୍କୁ ପଞ୍ଚତାରକା ହୋଟେଲ୍‌ମାନଙ୍କରେ ଅପ୍ୟାୟିତ କରୁଥିବାର ଖବରମାନ ପ୍ରକାଶ ପାଉଛି । ଗୋଟିଏ ମହାନ ଅନୁଷ୍ଠାନର ବିଲକ୍ଷଣ ପରମ୍ପରା ସମସ୍ତଙ୍କ ମୁଣ୍ଡବ୍ୟଥାର କାରଣ ହୋଇଛି ।

ଏଥର ପୁରସ୍କାର ଘୋଷଣା ତାଲିକାରେ ଅନେକ ଯୋଗ୍ୟ ବ୍ୟକ୍ତିଙ୍କ ନାମ ମଧ୍ୟ ଦେଖାଗଲା । ସେମାନଙ୍କ ମଧ୍ୟରୁ ଅନେକ ବହୁ ଆଗରୁ ଏ ପୁରସ୍କାର ପାଇବା ଉଚିତ୍ ଥିଲା ବୋଲି ମତ ପ୍ରକାଶ ପାଇଛି ।

ଜଣେ ଲେଖକଙ୍କ ଉପରେ ମନ୍ତବ୍ୟ ଦେବାକୁ ଯାଇ ଜଣେ ସମାଲୋଚକ ମହୋଦୟ ଠାଏ କହିଛନ୍ତି ଯେ ଉକ୍ତ ଲେଖକ ଜଣେ ସଫଳ ଲେଖକ ଭାବେ ପାଠକ ମହଲରେ ପରିଚିତ ନୁହନ୍ତି । ଉକ୍ତ ଲେଖକ ପୁରସ୍କାର ପାଇବାରେ ସେ ଆଚମ୍ବିତ ହୋଇଛନ୍ତି, ମାତ୍ର

ପୁରସ୍କାର ପାଇବା ଲାଗି ଲେଖକ ଅପେକ୍ଷା ଲେଖାର ମାନଦଣ୍ଡକୁ ବିଚାର କରାଯିବା ଉଚିତ୍ ବୋଲି ଏ ଲେଖକ ମନେକରେ । ବୁକର୍ ପୁରସ୍କାର ପାଇବା ପୂର୍ବରୁ ଭାରତୀୟମାନେ ଅରୁନ୍ଧତୀ ରାୟଙ୍କୁ ଜଣେ ଲେଖିକା ବୋଲି ଜାଣିବାର ସୁଯୋଗ ପାଇନଥିଲେ ।

ଓଡ଼ିଶା ବାହାରେ ଥିବା ଅନ୍ୟାନ୍ୟ ରାଜ୍ୟଠାରୁ ଆମେ କିଛି ଶିଖିବା ପାଇଁ ମଧ୍ୟ ଅନାଗ୍ରହୀ । ସାହିତ୍ୟ ଏକାଡେମୀର ଏଇ ବିପନ୍ନ ଅବସ୍ଥା ଆଜିକାର ନୁହେଁ । କ'ଣ ପାଇଁ ଏତେ ସମାଲୋଚନାର ଶିକାର ହେଉଥିବା ଏହାର କର୍ତ୍ତୃପକ୍ଷ ନିରବତାକୁ ହିଁ ଏକମାତ୍ର ସାହାରା ତଥା ଶ୍ରେୟସ୍କର ଭାବୁଛନ୍ତି, ବୁଝିବା ମଧ୍ୟ ସମ୍ଭବ ହେଉନାହିଁ । ଅରୁନ୍ଧତୀଙ୍କ ବହି ପୁରସ୍କୃତ ହେଲା ବେଳେ ମଧ୍ୟ ସମାଲୋଚନାର ଶିକାର ହୋଇଥିଲା । ମାତ୍ର ଏହି ପୁରସ୍କାର ପାଇବା ପାଇଁ କାହିଁକି ଅରୁନ୍ଧତୀ ଯୋଗ୍ୟା ବିବେଚିତ ହେଲେ ତା'ର ସମସ୍ତ କାରଣ ଦର୍ଶାଇ ଏହି ପୁରସ୍କାରର ବିଚାରକମଣ୍ଡଳୀ ଖବରକାଗଜମାନଙ୍କରେ ବିବୃତ୍ତି ଦେଇଥିଲେ । ଫଳରେ ଅସନ୍ତୋଷର ସ୍ୱର ଆପେ ଆପେ ମିଳେଇ ଯାଇଥିଲା । ଯଦି ଓଡ଼ିଶା ସାହିତ୍ୟ ଏକାଡେମୀ କର୍ତ୍ତୃପକ୍ଷ ଓ ପୁରସ୍କାର ଚୟନ ପାଇଁ ନିଯୁକ୍ତ ବିଚାରକମାନେ ସେମାନଙ୍କ ନିଷ୍ପକ୍ଷ ବିଚାରଧାରାର ସମସ୍ତ କଥା ଜନସାଧାରଣଙ୍କ ଆଖିରେ ଉପସ୍ଥାପିତ କରିବେ, ତେବେ ନୂତନ ସହସ୍ରାବ୍ଦରେ ଅନ୍ତତଃ ନୂଆ ପରମ୍ପରାଟିର ଆରମ୍ଭ ହୋଇପାରିବ । ଭବିଷ୍ୟତର ଲେଖକମାନଙ୍କ ପାଇଁ ଏହା ହେବ ଶତାବ୍ଦୀର ଭେଟି ।

*ଅନୁପମ ଭାରତ ୭.୨.୨୦୦୦*

# ରାଇଟର୍ ବ୍ରଦର୍ସ

ପିଲାଦିନେ ଜ୍ଞାନବିଜ୍ଞାନ ପଢ଼ିବା ସମୟରେ ଜାଣିବାକୁ ମିଳିଲା ଯେ ଉଡାଜାହାଜର ଉଦ୍‌ଭାବନ କରିଥିଲେ ରାଇଟ୍ ବ୍ରଦର୍ସ । ଅର୍ଥାତ୍ ଅଲିଭର୍ ରାଇଟ୍ ଏବଂ ଉଇଲ୍‌ବର୍ ରାଇଟ୍ । ମାତ୍ର ଆଜି ଯେଉଁ ଦୁଇ ଭାଇଙ୍କ ବିଷୟରେ କହିବାକୁ ସ୍ଥିର କରିଛି ସେ ଦୁହେଁ ଉଡାଜାହାଜ ପରି କିଛି ଉଦ୍‌ଭାବନ କରିନାହାନ୍ତି । ମାତ୍ର ସେମାନଙ୍କ ଭିତରେ ଥିବା ସଂଗୁପ୍ତ ସ୍ୱପ୍ନରେ ଅନ୍ୟକୁ ଆକ୍ରାନ୍ତ କରିବା ଭଳି କ୍ଷମତା ସେମାନଙ୍କର ଅଛି ।

ଜଣେ କବି ଓ ଅନ୍ୟ ଜଣେ ବ୍ୟଙ୍ଗ ରଚନାରେ ବେଶ୍ ପ୍ରତିବଦ୍ଧତା ପ୍ରଦର୍ଶନ କରିଛନ୍ତି । ବଡ଼ଭାଇ ଗନ୍ତାୟତ ସତ୍ୟନାରାୟଣ ଏବଂ ସାନ ଭାଇ ହେଉଛନ୍ତି ଗନ୍ତାୟତ ଶିବପ୍ରସାଦ । ଓଡ଼ିଆ ସାହିତ୍ୟରେ 'ଭାତୃଦ୍ୱୟ'ଙ୍କ ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଓଡ଼ିଆ ଉପନ୍ୟାସ ରାସ୍ତାରେ ନିଜ ନିଜ ରାସ୍ତାରେ କ୍ରାନ୍ତି ଆଣିଥିବା ବିଶିଷ୍ଟ ଔପନ୍ୟାସିକ କାହ୍ନୁ ଚରଣ ଏବଂ ଆଦିବାସୀ ଜୀବନଚର୍ଯ୍ୟାକୁ ନେଇ ଉଚ୍ଚାଙ୍ଗ ଉପନ୍ୟାସ ସୃଷ୍ଟି କରିଥିବା ତାଙ୍କର ଅନୁଜ ଗୋପୀନାଥ ମହାନ୍ତି ଆପଣାଛାଏଁ ମନକୁ ଆସନ୍ତି । ଠିକ୍ ସେହିପରି ଖ୍ୟାତି ସଂପନ୍ନ କଥାକାର ମନୋଜ ଦାସ ଏବଂ ଔପନ୍ୟାସିକ ତଥା ବାଗ୍ମୀ ଓ ତାଙ୍କର ଅଗ୍ରଜ ମନ୍ମଥନାଥ ଦାସଙ୍କ ନାମ ମଧ୍ୟ ଏଠି ସ୍ମରଣଯୋଗ୍ୟ । ତେବେ ଗନ୍ତାୟତ ଭାତୃଦ୍ୱୟଙ୍କ କଥା ଟିକେ ନିଆରା । ବଡ଼ଭାଇ ମୁଖ୍ୟତଃ କବିତା ଲେଖନ୍ତି ଏବଂ ସାନଭାଇ ଲେଖନ୍ତି ରମ୍ୟରଚନା ବା ଲଘୁକଥା । ଦୁହେଁ ଶାରୀରିକ ଭାବେ ଅକ୍ଷମ ଥିଲେ ବି ମାନସିକ ସ୍ତରରେ ଅନେକ ସୁସ୍ଥ ମସ୍ତିଷ୍କଠାରୁ ମଧ୍ୟ ଉଚ୍ଚରେ ।

ଅନେକ ସମାଲୋଚକ ଶିବ ପ୍ରସାଦଙ୍କ ଲେଖା ସଂପର୍କରେ ମତାମତ ଦେବା ବେଳେ ଅପ୍ରାସଙ୍ଗିକ ଭାବେ ତାଙ୍କ ଶାରୀରିକ ଅକ୍ଷମତା ସମ୍ପର୍କରେ ଖୁବ୍ ଆଲୋଚନା କରିବା ସହ ଅଯାଚିତ କରୁଣା ମଧ୍ୟ ପ୍ରଦର୍ଶନ କରିଥାନ୍ତି । ସେମାନେ ବିସ୍ମିତ ହୋଇ ଯା'ନ୍ତି ଯେ ପ୍ରତିଟି ମଣିଷ ହେଉଛି ବିକଳାଙ୍ଗ, ମନରେ, ସ୍ୱପ୍ନରେ, ଶ୍ରଦ୍ଧାରେ, ପ୍ରେମରେ ଏବଂ କେହି କେହି ଶରୀରରେ । ଏହା ସେମାନଙ୍କ ଅସୁସ୍ଥ ମାନସିକତାର ପରିଚୟ ଦିଏ । ତା' ଛଡ଼ା ଆମେମାନେ ଭୁଲିଯିବା ଉଚିତ୍ ନୁହେଁ ପ୍ରାଚୀନ କାଳରେ ବୈଷ୍ଣବ କବି ଦୀନକୃଷ୍ଣ, କାନ୍ତକବି ଲକ୍ଷ୍ମୀକାନ୍ତ ଏବଂ ବିଶିଷ୍ଟ ବ୍ୟଙ୍ଗ ସାହିତ୍ୟିକ ଫତୁରାନନ୍ଦ ଦୁରାରୋଗ୍ୟ କୁଷ୍ଠରୋଗ ଦ୍ୱାରା ଆକ୍ରାନ୍ତ ହୋଇଥିବା ବେଳେ ସନ୍ଥକବି ଭୀମ ଭୋଇ ଆଜନ୍ମ ଅନ୍ଧ ଥିଲେ । ମାତ୍ର

ଉପରୋକ୍ତ କବି ଏବଂ ଗାଳ୍ପିକଙ୍କ ଉଚ୍ଚାଙ୍ଗ ସାହିତ୍ୟକୁ ନେଇ ଏ ଜାତି ସବୁଦିନ ଗର୍ବ କରିବ, ଏଥିରେ କାହାରି ଦ୍ୱିମତ ହେବାର ନାହିଁ ।

କବି ସତ୍ୟନାରାୟଣଙ୍କ ସଂପର୍କରେ ଆଗରୁ କହି ସାରିଛି । ଆସନ୍ତୁ, ଆଜି ଶିବପ୍ରସାଦଙ୍କ ସଂପର୍କରେ ଆଲୋକପାତ କରିବା । ହାସ୍ୟରସିକମାନେ ସୁଖୀଲୋକ ନୁହନ୍ତି (Humourists are not happy men) ବୋଲି ସିରିଲ୍ ସେନେଲି ଯେଉଁ ମନ୍ତବ୍ୟ ଦେଇଥିଲେ ଏଥିରେ ସେ ହାସ୍ୟରସିକମାନଙ୍କୁ ଆଘାତ କରିବା ପାଇଁ ଚାହିଁ ନଥିଲେ ବରଂ ସେମାନଙ୍କ ପାଇଁ ଜୀବନ ଏକ ତୁଳୀତଳ୍ପ ଶଯ୍ୟା ନୁହେଁ ବୋଲି ସୂଚାଇ ଦେଇଥିଲେ । ବ୍ୟଙ୍ଗ ଶିଳ୍ପୀମାନେ ହିଁ ସର୍ବଦା ସଂସ୍କାରମନସ୍କ ଏବଂ ଏହି ଚେତନା ହିଁ ସେମାନଙ୍କର ସଫଳତାର ମାପକାଠି । କେବଳ ହସ ନୁହେଁ, ଗୋଟିଏ ନିର୍ଦ୍ଦିଷ୍ଟ ବାର୍ତ୍ତାର କମ୍ବଳରେ ଶୀତାର୍ତ୍ତ ବ୍ୟକ୍ତିକୁ ଆଚ୍ଛାଦିତ କରିବା ହିଁ ତାଙ୍କର ଉଦ୍ଦେଶ୍ୟ ସବୁବେଳେ । ଶବ୍ଦ ସଂଯୋଜନାରେ ପ୍ରତିଟି ବ୍ୟଙ୍ଗ ଲେଖକ ପରସ୍ପରଠୁ ନିଆରା । ତେବେ ଫତୁରାନନ୍ଦ ଏବଂ ଚଉଧୁରୀ ହେମକାନ୍ତ ମିଶ୍ରଙ୍କ ସଫଳ ଉତ୍ତର ଦାୟାଦ ଭାବେ ସେ ପାହାଚମାନ ଅତିକ୍ରମ କରି ଚାଲିଥିବାର କେତୋଟି ଉଦାହରଣ ଦିଆଯାଇପାରେ :

୧. ଉପସ୍ଥିତ ଜନତାଙ୍କ ଆଡେ ଚାମୁଚେ ଚାମୁଚେ ସପ୍ରେମ ଚାହାଣୀ ଛିଟକାଇ ଦେଇ ପୁଣି ଭାଷଣ ଆରମ୍ଭ କରୁଥିଲେ । (ଭାଷଣ)

୨. ପାଠକ ମୁହଁରେ କୁଂଚନ ଦିଶିଲେ ଆମ୍ଭ ହୃଦୟରେ ତେଲୁଣି ପୋକଟିଏ ପଶିଯିବା ଭଳି ଲାଗେ । (ମୁହଁ)

୩. ଆମ୍ଭର ମଥା ନାମକ ଜିନିଷଟି କିଛି କ୍ଷଣ ଭୂଗୋଳ କ୍ଲାସ୍‌ର ଗ୍ଲୋବ୍ ଭଳି ଘୂରିବାକୁ ଲାଗିଲା । (ନିଶ)

ଏକଦା କାର୍ଡିଆଲ୍ ଗିବ୍‌ବନସ୍ କହିଥିଲେ- 'ସଂସ୍କାର, ହୃଦୟ ବାହାରୁ ନୁହେଁ, ଭିତରୁ ଆସିବା କଥା । କୌଣସି ଆଇନ୍ ପ୍ରଣୟନ କରି ତୁମେ କୌଣସି ଉତ୍ତମ ସ୍ୱଭାବର ଅଧିକାରୀ ହୋଇ ପାରିବନାହିଁ ।' (Reform must come from within, not from without. You cannot legislate for virtue) ନିଜର ବ୍ୟଙ୍ଗୋକ୍ତି ଜରିଆରେ ଏଇ ସତ୍ୟକୁ ଉପଲବ୍ଧି କରାଇବାରେ ଶିବପ୍ରସାଦ୍ ବେଶ୍ ଧୂରୀଣ ବୋଲି ମନେହୁଏ । ସାମାଜିକ ସତ୍ୟତାର କେତୋଟି ନିଷ୍ଠୁର ଉଦାହରଣ ଏଠାରେ ଦିଆଯାଇପାରେ ।

୧. 'ନାଇଁରେ ବାବୁ, ମୋ କଥା ମାନ । ଏ ସତ ଫତର ଚକ୍କର ଛାଡ଼ିଦେ' । ସ୍ୱୟଂ ହେଡ୍ ପଣ୍ଡିତେ ନିଜେ ଶିଖେଇଥିବା କଥା ଭୁଲି ଏବେ ସ୍ୱର୍ଗରେ ମିଛ କହିବାର କୋଚିଂ ଇନଷ୍ଟିଚ୍ୟୁଟ୍ ଖୋଲି ସାରିବେଣି ।' (ସତ କହିବି ନା ମିଛ କହିବି)

୨. 'ମଣିଷ ଭାଇରେ ଲାଗିପଡ଼ । ଚଉକି ଠୁଁ ନାହିଁ କିଛି ବଡ଼ ।' (ଚଉକି)

୩. 'ମୋର ପିତୃଦେବ ମୋତେ ଏଭଳି ନମସ୍କାର କରିବା ସମେତ ସତ୍ୟବାଦିତା, ସାଧୁତା, ସ୍ପଷ୍ଟବାଦିତା ତଥା ପରୋପକାରାଦି ବଦ୍‌ଗୁଣମାନ ଶିଖାଇ ଦେଇଥିବାରୁ ମୋତେ ବହୁତ ହଇରାଣ ହେବାକୁ ପଡୁଛି ।' (ନମସ୍କାର)

୪. 'କିନ୍ତୁ ଭଗବାନ ବୋଧହୁଏ ଇଅର୍‌ଫୋନ୍ ଲଗାଇ ତାଙ୍କ ଉଦ୍ଦେଶ୍ୟରେ ବୋଲା ଯାଇଥିବା ବିଭିନ୍ନ ଭଜନର କ୍ୟାସେଟ୍ ଶୁଣୁଥିବା ଯୋଗୁଁ ଅଧୀନର ଡାକ ଶୁଣିପାରି ନଥିଲେ ।' (ସତ କହିବି ନା ମିଛ କହିବି)

ମାତ୍ର ଏତିକି କହି ଶିବ ପ୍ରସାଦଙ୍କ ସାହିତ୍ୟ ସମ୍ଭାରର ମୂଲ୍ୟାୟନ କରିବା ଏ ଲେଖାର କିମ୍ବା ଲେଖକର ଉଦ୍ଦେଶ୍ୟ ନୁହେଁ । ପ୍ରତିକୂଳ ପରିବେଶରେ ସେ ସୃଷ୍ଟି କରି ପାରୁଥିବା କଳାତ୍ମକ ରଚନା ପାଇଁ ଆମର କେବଳ ସ୍ମରଣୀୟ ହୋଇ ରହିବେନି ବରଂ ନିଜର ସମସାମୟିକ ଲେଖକମାନଙ୍କଠାରୁ ତଥା ନିଜ ତରୁଣ ବୟସଠାରୁ ଲେଖାରେ ଅନେକ ସିଦ୍ଧି ଓ ସମ୍ଭାବନାର ସ୍ୱାକ୍ଷର ରଖିଥିବା ଏଇ ଲେଖକ ଏକବିଂଶ ଶତାବ୍ଦୀରେ ଗୋଟିଏ ବିସ୍ମୃତ ପରମ୍ପରାକୁ ଉଜ୍ଜୀବିତ ରଖିବା ସହ ନିଃସଙ୍ଗ ବତୀଘର ପରି ଦିଗ୍‌ଭ୍ରଷ୍ଟ ଅନେକ ସାହିତ୍ୟିକଙ୍କୁ ଆକୃଷ୍ଟ କରିବେ; ଅନ୍ତତଃ ଏତିକି ଆଶା କରିବା ଅନୁଚିତ ହେବନାହିଁ ।

*ଅନୁପମ ଭାରତ ୨୦. ୨. ୨୦୦୦*

# ପୁରୀ ଓ ବାରଣାସୀ: ଗୋଟିଏ ମୁଦ୍ରା

'ଫାୟାର୍' ଓ 'ଆର୍ଥ-୧୯୪୭' ପରି ବିବାଦୀୟ ଚଳଚ୍ଚିତ୍ରର ନିର୍ଦ୍ଦେଶିକା ଦୀପା ମେହେଟା ତାଙ୍କର 'ୱାଟର୍' ଚଳଚ୍ଚିତ୍ର ସୁଟିଂ ଆରମ୍ଭ କରିବା ପୂର୍ବରୁ ଭାରତ ସରକାରଙ୍କ ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟରୁ ଅନୁମତି ପାଇ ସାରିଥିଲେ । ମାତ୍ର ପ୍ରସିଦ୍ଧ ଧର୍ମ ପୀଠ ବନାରସ ସହରର ଉପକଣ୍ଠ 'ଗଙ୍ଗା' ନଦୀ କୂଳରେ ଯେତେବେଳେ ସେ ଏହି ଚଳଚ୍ଚିତ୍ରର ଚିତ୍ରୋତ୍ତଳନ କାର୍ଯ୍ୟ ଆରମ୍ଭ କଲେ ବନାରସ ସହରର କେତେକ ଧାର୍ମିକ ଅନୁଷ୍ଠାନର କର୍ମକର୍ତ୍ତା ଏହି ଚଳଚ୍ଚିତ୍ର ନିର୍ମାଣ ବିରୁଦ୍ଧରେ ସ୍ୱର ଉଠାଇବା ସହ ଆନ୍ଦୋଳନ ଆରମ୍ଭ କଲେ । ପ୍ରାୟ ଅଢ଼େଇ କୋଟି ଟଙ୍କା ବ୍ୟୟରେ ନିର୍ମିତ ସୁଟିଂ ସେଟ୍‌ଟିକୁ ଏହି ଆନ୍ଦୋଳନକାରୀମାନେ ଗଙ୍ଗାନଦୀ ଗର୍ଭକୁ ଠେଲି ଦେବା ସହ ଜଣେ ଯୁବକ ବିଷ ପାନ କରି ନିଜ ଅଣ୍ଟାରେ ଏକ ପଥର ବାନ୍ଧି ନଦୀ ଗର୍ଭକୁ ଲମ୍ଫ ମାରିବା ଘଟଣା ପରିସ୍ଥିତିକୁ ଅଣାୟତ୍ତ କରିଦେଲା ।

ଉପାୟହୀନ ହୋଇ ଶ୍ରୀମତୀ ମେହେଟା ସୂଚନା ଓ ପ୍ରସାରଣ ବିଭାଗର ମନ୍ତ୍ରୀଙ୍କୁ ଭେଟିଲେ । ମାନ୍ୟବର ମନ୍ତ୍ରୀ ଏଥିରେ କ୍ଷୁବ୍ଧ ହୋଇ ଜନସାଧାରଣ ସେନ୍‌ସର୍‌ବୋର୍ଡ ନୁହନ୍ତି ବୋଲି ଘୋଷଣା କରିବା ସହ ଶ୍ରୀମତୀ ମେହେଟାଙ୍କ ମୂଳ ପାଣ୍ଡୁଲିପିରୁ ପାଞ୍ଚଟି ବାକ୍ୟକୁ ବାଦ୍‌ଦେବା ପାଇଁ ନିର୍ଦ୍ଦେଶ ଦେଲେ ଓ ନିର୍ଦ୍ଦେଶିକା ଏଥିରେ ରାଜି ହେବାକୁ ବାଧ୍ୟ ହେଲେ । ପୁନଶ୍ଚ ଏହି ଚଳଚ୍ଚିତ୍ର ସୁଟିଂ ଆରମ୍ଭ ହେଲା; ମାତ୍ର ସ୍ଥାନୀୟ ବ୍ୟକ୍ତିଙ୍କ ପ୍ରବଳ ପ୍ରତିରୋଧ ପରେ ଶ୍ରୀମତୀ ମେହେଟା ତାଙ୍କ ଚଳଚ୍ଚିତ୍ର ସୁଟିଂ ବନ୍ଦ କରି ଅନ୍ୟାନ୍ୟ ଅଭିନେତା ଓ ଅଭିନେତ୍ରୀଙ୍କ ସହ ବାରଣାସୀ ଛାଡ଼ିବାକୁ ବାଧ୍ୟ ହେଲେ ।

ପରେ ପରେ ମଧ୍ୟ ପ୍ରଦେଶର ନର୍ମଦା ନଦୀ କୂଳରେ ଏହି ଚିତ୍ର ସୁଟିଂ ହେବା ପାଇଁ ସେ ସ୍ଥିର କଲେ ଏବଂ ତାଙ୍କୁ ଏଥିପାଇଁ ସମସ୍ତ ସହଯୋଗ ଦିଆଯିବ ବୋଲି ମଧ୍ୟପ୍ରଦେଶ ସରକାର ଘୋଷଣା ମଧ୍ୟ କଲେ । ପ୍ରବଳ ବିରୋଧ ଓ ସମର୍ଥନ ଭିତରେ ୱାଟର୍ ଚଳଚ୍ଚିତ୍ରଟିର ଭାଗ୍ୟ ଏବେ ଦିଗହରା ହୋଇଯାଇଛି । ଏଠି ପ୍ରକାଶ କରିବା ପ୍ରାସଙ୍ଗିକ ହେବ ଯେ ଶ୍ରୀମତୀ ମେହେଟାଙ୍କର ଚଳଚ୍ଚିତ୍ର 'ଫାୟାର୍'କୁ ମଧ୍ୟ ସେହି ସମୟରେ ଦିଲ୍ଲୀର ଲୋଧି ଗାର୍ଡେନ୍‌ରେ ସୁଟିଂ କରିବାକୁ ଅନୁମତି ଦିଆ ଯାଇନଥିଲା ଏବଂ 'ଆର୍ଥ-୧୯୪୭' ଚିତ୍ରକୁ ସୁଟିଂ ପାଇଁ ପାକିସ୍ଥାନ ସରକାର ଅନୁମତି ଦେଇନଥିଲେ । ଏଇ ଚଳଚ୍ଚିତ୍ର ଭାରତର

ସମ୍ମାନକୁ କ୍ଷୁଣ୍ଣ କରୁଛି ବୋଲି ଅଭିଯୋଗ କରନ୍ତି ପ୍ରୟାଗ ମଠର ମହନ୍ତ ଶ୍ରୀ ମାଧବାନନ୍ଦ ସରସ୍ୱତୀ । ଭାରତୀୟ ଜନତା ଦଳର ଜଣେ ବରିଷ୍ଠ ନେତା ଏମ୍.ଆର.ମାଲକାନୀ 'ହିନ୍ଦୁ' ସମ୍ବାଦପତ୍ରକୁ ଏକ ଚିଠି ଲେଖି କହିଛନ୍ତି, : ଲୋକେ କାହିଁକି ପ୍ରତିବାଦ କରୁଛନ୍ତି ସେ କଥା ଦୀପା ମେହଟା ଓ ତାଙ୍କ ବନ୍ଧୁମାନେ ବୁଝିବା ଉଚିତ୍ । ଲୋକଙ୍କର ଡର, କାରଣ ସେ ଗତଥର ନିର୍ମାଣ କରିଥିବା 'ଫାୟାର୍' ଚିତ୍ରରେ ଥିବା ଦୁଇଟି ସମଲିଙ୍ଗୀ ଯୌନତାରେ ଲିପ୍ତ ଥିବା ଦୁଇଟି ନାରୀ ଚରିତ୍ରର ନାମ ଥିଲା ରାଧା ଏବଂ ସୀତା । ସେ ହିନ୍ଦୁ ଧର୍ମକୁ ବିକୃତ କରି ଦେଖାଇବାକୁ ଚେଷ୍ଟା କରୁଛନ୍ତି, କାରଣ ସେମାନେ ଇସ୍‌ଲାମ୍ ଧର୍ମକୁ ସମାଲୋଚନା କରିବାକୁ ଭୟ କରୁଛନ୍ତି । ଏଥିପାଇଁ ଯେ ତାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟମ ଆରମ୍ଭ ହୋଇଯିବ । 'ୱାଟର' ପରି ଚଳଚ୍ଚିତ୍ର ନିର୍ମାଣ କରି ଭାରତକୁ ବଦନାମ୍ କରିବା ସହ ବିଦେଶରେ ଲକ୍ଷ ଲକ୍ଷ ଟଙ୍କା ଉପାର୍ଜନ ଏବଂ କରତାଳି ପାଇବା ତାଙ୍କର ଉଦ୍ଦେଶ୍ୟ ନୁହେଁ କି ?'

ଏଠି ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ ଯେ ଅତୀତରେ ମଧ୍ୟ ବିଭିନ୍ନ ଚଳଚ୍ଚିତ୍ରକୁ ସୁଟିଂ ନକରିବା ପାଇଁ ଭାରତରେ ବେଶ୍ ତୁମ୍ବି ତୋଫାନ୍ ଉଠିଥିଲା । ୧୯୬୩ ମସିହାରେ ବହୁ ଚର୍ଚ୍ଚିତ ଉପନ୍ୟାସ 'ନାଇନ୍ ଆୱାର୍ସ ଟୁ ରାମ୍'କୁ ନେଇ ବିଶିଷ୍ଟ ନିର୍ଦ୍ଦେଶକ ମାର୍କ ରବିନ୍‌ସନ୍ ଭାରତ ମାଟିରେ ଛବି ନିର୍ମାଣ କରିଥିଲେ । ମାତ୍ର ପରବର୍ତ୍ତୀ ସମୟରେ ଏହି ଚିତ୍ରକୁ ଭାରତରେ ପ୍ରଦର୍ଶିତ ହେବାର ଅନୁମତି ମିଳିଲା ନାହିଁ । କାରଣ ଏଥିରେ ମହାତ୍ମାଗାନ୍ଧୀର ହତ୍ୟାକାରୀର ଦୃଷ୍ଟିକୋଣକୁ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । ଏହାର ପାଞ୍ଚ ବର୍ଷ ପରେ ୧୯୬୮ରେ ଲୁଇସ୍ ମାଲେଙ୍କ ନିର୍ଦ୍ଦେଶିତ ବୃତ୍ତଚିତ୍ର 'କାଲ୍‌କାଟା' ଓ 'ଫାଣ୍ଟମ୍ ଇଣ୍ଡିଆ'ରେ ଭାରତର ଦାରିଦ୍ର୍ୟକୁ ବିଶ୍ୱ ଦରବାରରେ ଚିତ୍ରଣ କରିବା ଫଳରେ ତାହା ମଧ୍ୟ ଭାରତୀୟ ମାନସିକତାକୁ ସୁହାଇଲା ନାହିଁ । ବିଶ୍ୱର ଜଣେ ସଫଳ ନିର୍ଦ୍ଦେଶକ ତଥା 'ଜୁରାସିକ୍ ପାର୍କ' ଏବଂ 'ସିଣ୍ଡଲର୍ସ ଲିଷ୍ଟ' ଭଳି ଚଳଚ୍ଚିତ୍ରର ନିର୍ଦ୍ଦେଶକ ଷ୍ଟିଭେନ୍ ସ୍ପିଲ୍‌ବର୍ଗଙ୍କୁ ମଧ୍ୟ ୧୯୮୪ରେ ତାଙ୍କର ଚଳଚ୍ଚିତ୍ର 'ଇଣ୍ଡିଆନା ଜୋନ୍‌ସ ଏଣ୍ଡ ଦି ଟେମ୍ପଲ୍ ଅଫ୍ ଡୁମ୍'କୁ ସୁଟିଂ କରିବାକୁ ଭାରତ ସରକାର ଅନୁମତି ଦେଇନଥିଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ ଯେ ୧୯୯୨ରେ ଭାରତୀୟ ଅଭିନେତା ଓ ଅଭିନେତ୍ରୀ : ଓମ୍ ପୁରୀ ଶାବନା ଆଜ୍‌ମୀଙ୍କ ଦ୍ୱାରା ଅଭିନୀତ 'ସିଟି ଅଫ୍ ଜୟ' ଚଳଚ୍ଚିତ୍ରକୁ କଲିକତା ସହରରେ ନିର୍ମାଣ କରିବା ନେଇ ବେଶ୍ ହୋ ହଲ୍ଲା ସୃଷ୍ଟି ହୋଇଥିଲା । କାରଣ ଏଇ ଚିତ୍ରରେ ପ୍ରଦର୍ଶିତ ହେବା ପାଇଁ କେତେଗୁଡ଼ିଏ କଦର୍ଯ୍ୟ ସହର ତଳି ବସ୍ତିର ସେଟ୍ ନିର୍ମାଣ କରାଯାଇ ଭାରତର ଅସଲ ରୂପ ଚିତ୍ରଣ କରା ଯାଇଥିଲା ।

ସବୁଠୁ ଆଶ୍ଚର୍ଯ୍ୟର କଥା ହେଲା, ସେତେବେଳେ ଏଇ ଚିତ୍ରଟି ନିର୍ମାଣ କରିବା

ବିରୁଦ୍ଧରେ ଯାବତୀୟ ଲଙ୍କାକାଣ୍ଡ ଭିଆଇଥିବା ମାର୍କସବାଦୀ ସରକାର ଏବେ ଦୀପାଙ୍କ ଚଳଚ୍ଚିତ୍ର ନିର୍ମାଣ ନେଇ ଉତ୍ତରପ୍ରଦେଶ ସରକାରଙ୍କ ନୀତିକୁ ସମାଲୋଚନା କରୁଛନ୍ତି । ଏବେ ମଧ୍ୟପ୍ରଦେଶ ଓ ବିହାର ସରକାର ମଧ୍ୟ ଶ୍ରୀମତୀ ମେହେଟାଙ୍କୁ ସେମାନଙ୍କ ରାଜ୍ୟରେ ଏଇ ଚଳଚ୍ଚିତ୍ରଟିକୁ ନିର୍ମାଣ କରିବା ଲାଗି ଆହ୍ୱାନ ଦେଇଛନ୍ତି ଏବଂ ଏହାଦ୍ୱାରା ସେମାନଙ୍କ ସଂସ୍କୃତି ପ୍ରବଣତାର ପରିଚୟ ଦେବାକୁ ଚାହୁଁଛନ୍ତି । ମାତ୍ର ଏମାନଙ୍କ ସଂସ୍କୃତି ପ୍ରୀତି ଦେଖିଲେ ଲାଗୁଛି ଜଣେ ଗଣିକା ହଠାତ୍ ବ୍ରହ୍ମଚର୍ଯ୍ୟ ଉପରେ ଯେପରି ଦୀର୍ଘ ଭାଷଣଟିଏ ଦେବା ଆରମ୍ଭ କରିଛି । ଏହା ସେମାନଙ୍କର ଚାଲାକି ମାତ୍ର ।

ଏତେ ପ୍ରତିରୋଧର ଶିକାର ହୋଇଥିବା 'ୱାଟର୍' ଚଳଚ୍ଚିତ୍ରର କଥାବସ୍ତୁ ସଂପର୍କରେ ଏଠି କିଛି ଆଲୋକପାତ କରା ଯାଇପାରେ । ନାରୀ ମୁକ୍ତି ଆନ୍ଦୋଳନକୁ ସୁହାଉଥିବା ଏଇ ଚଳଚ୍ଚିତ୍ରରେ ବାରଣାସୀ ଭଳି ପବିତ୍ର ସହରରେ ପରିବାର ପରିତ୍ୟକ୍ତା ବିଧବାମାନଙ୍କ କରୁଣ ଜୀବନ ତଥା ଯୌନ ନିର୍ଯ୍ୟାତନାର ଚିତ୍ର ଛବିଟିର ମୁଖ୍ୟ କଥାବସ୍ତୁ । ସେଇ ଘୃଣ୍ୟ ସାଂସ୍କୃତିକ ତଥା ସାମାଜିକ ବଳୟରୁ ମୁକ୍ତି ପାଇଁ ସତତ ସଂଗ୍ରାମରତ ଦୁଇଟି ବିଧବା ନାରୀ ଘଟଣାକ୍ରମେ ଯାଇ ମହାତ୍ମାଗାନ୍ଧୀଙ୍କ ସତ୍ୟାଗ୍ରହରେ ନିଜକୁ ସାମିଲ୍ କରିବା ହିଁ ଏଇ କଥାବସ୍ତୁର ପରିଣତି । ଏଇ ଘଟଣାଟି ୧୯୩୦ ମସିହାର ସାମାଜିକ ବ୍ୟବସ୍ଥାର ପ୍ରତିଛବି ବୋଲି କୁହାଯାଉଛି । ଭାରତର ଜାତୀୟ ମହିଳା କମିଶନ୍‌ର ଭୂତପୂର୍ବ ଅଧ୍ୟକ୍ଷା ଶ୍ରୀମତୀ ମୋହିନୀ ଗିରି ଗତ ୧୩ ତାରିଖରେ ଷ୍ଟାର୍ ପ୍ଲସ୍‌ରେ ସାକ୍ଷାତକାର ଦେଇ ସ୍ୱୀକାର କରିଛନ୍ତି ଯେ, ୧୯୩୦ ମସିହାରେ ଜୀବନ ବିତାଇଥିବା ବିଧବାମାନଙ୍କ ନିର୍ଯ୍ୟାତନା ଘଟଣା ଏବେ ବି ସତୁରୀ ବର୍ଷ ପରେ ଅପରିବର୍ତ୍ତିତ ରହିଛି । ତାଙ୍କ ଭାଷାରେ ଏବେ ବି ଭାରତରେ ରହିଥିବା ୩୦ ଲକ୍ଷ ବିଧବାଙ୍କ ପାଇଁ କୌଣସି ସରକାରୀ ନୀତି ନାହିଁ । ସାମାଜିକ ସହାନୁଭୂତି ନାହିଁ । ବିଧବାଙ୍କ କଥା ପଡ଼ିଲେ ହଠାତ୍ ମନେ ପଡ଼ିଯାଏ ଆମରି ପବିତ୍ର ସହର ପୁରୀ । ବାରଣାସୀ ପରି ପୁରୀ ବି କାର୍ତ୍ତିକ ମାସରେ ପାଲଟିଯାଏ ବିଧବାର ସହର । ମାତ୍ର ବର୍ଷସାରା ଜାନି ଯାତ୍ରା ଏବଂ ଯାତ୍ରୀଙ୍କ ଗହଳି ଯୋଗୁଁ ଏହା ସ୍ଥାନୀୟ ପଣ୍ଡାମାନଙ୍କ ପାଇଁ ପୁଷମାସ ପରି ପ୍ରତ୍ୟୟ ହୋଇଥାଏ । ଅନେକ ସମୟରେ ଶ୍ରୀମନ୍ଦିର ଭିତରେ ହାଉଯାଉ ହେଉଥିବା ପଣ୍ଡାମାନେ ଭକ୍ତମାନଙ୍କୁ ନାନା ରକମର ହଇରାଣ ହରକତ କରିଥାନ୍ତି, ନାରୀମାନଙ୍କ ପ୍ରତି ଅଶ୍ଳୀଳତା ପ୍ରଦର୍ଶନ ବି କରିଥାନ୍ତି । କିଛି ବର୍ଷ ପୂର୍ବେ ଓଡ଼ିଶାର ପ୍ରଖ୍ୟାତ ଲେଖିକା ପ୍ରତିଭାରାୟଙ୍କ ପ୍ରତି ମଧ୍ୟ ଏମାନେ ଅଶାଳୀନ ବ୍ୟବହାର କରିଥିବା ଘଟଣା ବେଶ୍ ଚହଳ ସୃଷ୍ଟି କରିଥିଲା ସାରା ରାଜ୍ୟରେ । ଶାଗୁଣାଟିଏ ମଢ଼ ପାଇଯିବା ପରି ଆନନ୍ଦରେ ଉଲ୍ଲସିତ ହୋଇ ଉଠନ୍ତି ଏମାନେ ନୂଆ ଯାତ୍ରୀଟିଏ ପାଇଯିବା ପରେ । ସହର ଉପକଣ୍ଠର ସମୁଦ୍ର ବେଳା ମଧ୍ୟ ସୁରକ୍ଷିତ ନୁହେଁ ଏଠି । ସଂଧ୍ୟା ପରେ ଅଧିକାଂଶ

ସହର ବାସୀ ଭାଙ୍ଗ ସେବନ ପୂର୍ବକ ମାତାଲ୍ ଅବସ୍ଥାରେ ବିଚରଣ କରୁଥିବା ଏକ ସାଧାରଣ ଘଟଣା ଏବଂ ବହୁ ସଂଭ୍ରାନ୍ତ ବ୍ୟକ୍ତି ଏଠି ସମଲିଙ୍ଗୀ ଯୌନାଚାରରେ ଲିପ୍ତ ହେବା ସହ ନିଜର ପୌରୁଷ ପ୍ରଦର୍ଶନ କରିଥାନ୍ତି ତଥା ନିଜର ବିବାହିତା ପତ୍ନୀକୁ ଅବହେଳା କରନ୍ତି ।

ଆନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିଥିବା ଏଇ ସହରଟି ଏକ ଆବର୍ଜନାର ସହର ନାମରେ ବେଶ୍ ପରିଚିତ । ଗୋଟିଏ ଜନସ୍ୱାର୍ଥ ମାମଲାର ଫଇସଲା କରିବାକୁ ଯାଇ ସୁପ୍ରିମ୍ କୋର୍ଟର ମାନ୍ୟବର ବିଚାରପତି ପୁରୀ ସହର ପାଇଁ କୋଡିଏ କୋଟି ଟଙ୍କା ଦେବାକୁ ନିର୍ଦ୍ଦେଶ ନିକଟରେ ଦେଇଛନ୍ତି । ପୂତିଗନ୍ଧର ସହର ପୁରୀ, ନର୍କର ସହର ପୁରୀ । ତେବେ ଏଇ ସହରର ସାଂସ୍କୃତିକ ତଥା ସାମାଜିକ ବିଲକ୍ଷଣକୁ ନେଇ କେହିଯଦି ଏକ କଳାତ୍ମକ ଚିତ୍ରଟିଏ ପ୍ରସ୍ତୁତ କରେ, ଏଥିରେ ଉତ୍‌କ୍ଷିପ୍ତ ହେବାର କାରଣ ଏ ଲେଖକ ଖୋଜି ପାଉନାହିଁ । ଯେତେ ଚେଷ୍ଟା କଲେ ବି ସତ୍ୟକୁ କେହି ସବୁଦିନ ଲୁଚାଇ ରଖି ପାରିବନି ଏବଂ ସତ୍ୟକୁ ଭୟ କରୁଥିବା ବ୍ୟକ୍ତିମାନଙ୍କ ପାଇଁ ପ୍ରସିଦ୍ଧ ଔପନ୍ୟାସିକା ଏମିଲି ଜୋଲାଙ୍କ ଉକ୍ତିଟି ଉଦ୍ଧାର କରିବା ଏଠି ସମୀଚୀନ ହେବ । ତାଙ୍କ ଭାଷାରେ, 'ତୁମେ ଯଦି ସତ୍ୟର ମୁହଁ ବନ୍ଦ କରିବ ଏବଂ ମାଟି ତଳେ ଏହାକୁ କବର ଦବ, ଏହା ନମରି ଜୀଇଁ ଉଠିବ ଏବଂ ଏହା ଏପରି ବିସ୍ଫୋରକ, ତା' ସାମ୍ନାର ସବୁକିଛିକୁ ଉଡାଇଦେବ ।' (If you shut up truth and bury it under the ground, it will but grow and gather to itself such explosive power that the day it bursts through it will blow up everything in its way.) ସତ୍ୟର ନିକିତିରେ ମାପିଲେ ବାରଣାସୀ ଏବଂ ପୁରୀ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ମାତ୍ର ।

# ବାଦୀ ପାଲା

କୈଶୋରର ଏଇ ସୁଖଦ ସ୍ମୃତି ରୋମନ୍ଥନ କରିବାର ଅପରିହାର୍ଯ୍ୟତା ଯେପରି ରହିଛି । ପ୍ରତିବର୍ଷ ଗଣେଶପୂଜା ବେଶ୍ ଉଦ୍ଦୀପନା ଓ ଉତ୍ସାହର ସହ ପାଳନ ହୁଏ ସ୍କୁଲ୍‌ମାନଙ୍କରେ । ଏପରିକି ନିକଟସ୍ଥ ବଜାରମାନଙ୍କରେ ଖୁବ୍ ଜାକଜମକରେ କେବଳ ଗଣେଶପୂଜା ହୁଏ ନାହିଁ, ବରଂ ସେଠାରେ ସପ୍ତାହବ୍ୟାପି ନାନା ରକମର ମନୋରଞ୍ଜନ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ, ଯାହାକୁ ଆଖପାଖ ଅଞ୍ଚଳର ଲୋକ ସପ୍ତାହଟିଏ ବିନିଦ୍ର ରହି ଉପଭୋଗ କରିଥାନ୍ତି । ମାତ୍ର ଅନିଦ୍ରା ଜନିତ କ୍ଲାନ୍ତିକୁ ଆଦୌ ସ୍ୱୀକାର କରନ୍ତିନାହିଁ । ବର୍ଷକରେ ଥରଟିଏ ମାତ୍ର ଏଇ ସୁଯୋଗ ସେମାନଙ୍କ ପାଇଁ ଆସିଥାଏ । ତେବେ କହିବା ଅନାବଶ୍ୟକ ହେବନାହିଁ - ଏହି ମନୋରଞ୍ଜନ କାର୍ଯ୍ୟକ୍ରମ ପାଇଁ ଆୟୋଜକମାନେ ମୁଖ୍ୟତଃ ବାଦୀପାଲାର ଆୟୋଜନ କରିଥାନ୍ତି । ଉତ୍ତୀର୍ଣ୍ଣ ସଂଧ୍ୟାରେ ପ୍ରଥମେ ଗୋଟିଏ ଗୋଷ୍ଠୀର ପାଲା ଗାୟକ ଓ ପାଳିଆ ସେମାନଙ୍କ କାର୍ଯ୍ୟକ୍ରମ ଆରମ୍ଭ କରନ୍ତି । କୌଣସି ପୌରାଣିକ ବା ସାମାଜିକ ବିଷୟବସ୍ତୁ ହିଁ ଥାଏ ସେମାନଙ୍କ କଥାବସ୍ତୁ । ଗାୟନ ମଝିରେ ବିଭିନ୍ନ ହାସ୍ୟୋଦ୍ଦୀପକ ବର୍ଣ୍ଣନା ଓ ପ୍ରାଚୀନ କବିମାନଙ୍କ ଉଦ୍ଧୃତିକୁ ଦର୍ଶକ ସାମ୍ନାରେ ପେଶ୍ କରିବା ସଙ୍ଗେସଙ୍ଗେ ଦ୍ୱିତୀୟ ଗୋଷ୍ଠୀର ଗାୟକଙ୍କୁ (ଯିଏ ପ୍ରଥମ ଗୋଷ୍ଠୀର କାର୍ଯ୍ୟକ୍ରମ ସମାପ୍ତ ପରେ ଉକ୍ତ ନିର୍ଦ୍ଦିଷ୍ଟ ସ୍ଥାନରେ ପାଲା ପରିବେଷଣ କରିଥାନ୍ତି) ଆହ୍ୱାନ ଦେଇଥାନ୍ତି କେତୋଟି ପ୍ରଶ୍ନର ଉତ୍ତର ଦେବାକୁ । ତାହା ହିଁ ସାରା ରାତି ଦର୍ଶକଙ୍କ ଉତ୍କଂଠାକୁ ଧରି ରଖିବା ଲାଗି ଯଥେଷ୍ଟ ହୋଇଥାଏ । ପ୍ରଶ୍ନଗୁଡ଼ିକର ଉତ୍ତର ଦେବା କିମ୍ବା ନଦେବା ଉପରେ ହିଁ ଦ୍ୱିତୀୟ ଗୋଷ୍ଠୀର ଗାୟକଙ୍କ ଶକ୍ତି ଓ ଜ୍ଞାନର ଗଭୀରତା ଦର୍ଶକମାନେ ମାପିଥାନ୍ତି । କେବଳ ସେତିକିରେ କଥା ସରେନାହିଁ । ଦ୍ୱିତୀୟ ଗୋଷ୍ଠୀର ଗାୟକ ମଧ୍ୟ ପ୍ରଥମ ଗାୟକଙ୍କୁ କାବ୍ୟିକ ପ୍ରଶ୍ନବାଣରେ ଜର୍ଜରିତ ଓ ଆହ୍ୱାନ କରିଥାନ୍ତି ଯାହାର ଉତ୍ତର ପରବର୍ତ୍ତୀ ଦିନ ସଂଧ୍ୟା ଆସରରେ ପ୍ରଥମ ଗାୟକଙ୍କୁ ଦେବାକୁ ହୋଇଥାଏ । ଏଇ କଥା କଟାକଟି ଓ ଆକ୍ଷେପ, ପ୍ରତି ଆକ୍ଷେପ ହିଁ 'ବାଦୀପାଲା'ର ମୁଖ୍ୟ ଆକର୍ଷଣ ଭାବେ ସ୍ୱୀକୃତି ପାଇଥାଏ ।

ଠିକ୍ ସେଇପରି ଉତ୍ତର ସତୁରୀରେ ନୂତନ ଚଳଚ୍ଚିତ୍ର ମୁକ୍ତିକୁ ନେଇ ଆରମ୍ଭ ହୋଇଥିବା ବିଜ୍ଞାପନର ଝଡ ଦେଖୁଥିଲା ଏ ଲେଖକ । ଦୈବାତ୍ ଏକ ସମୟରେ କେବେ ଦୁଇଟି ଚଳଚ୍ଚିତ୍ର ମୁକ୍ତି ଲାଭ କଲେ ଦୁଇଟି ଯାକ ନିର୍ମାଣ ସଂସ୍ଥା ତରଫରୁ ଆରମ୍ଭ ହୋଇ

ଯାଉଥିଲା ଦର୍ଶକର ମନୋହରଣ ପାଇଁ ନାନା ଫନ୍ଦିଫିକର୍ । ଅବଶ୍ୟ ନିଜ ନିଜର ଚଳଚ୍ଚିତ୍ର ଦେଖିବା ଲାଗି ଦର୍ଶକମାନଙ୍କୁ ଆକୃଷ୍ଟ କରିବା ହିଁ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

ସେଇ 'ନିଶା' ଏବେ ବହି ଜଗତକୁ ଓହ୍ଲେଇ ଆସିଥିବା ଭଳି ମନେହୁଏ । ସଲ୍‌ମନ୍ ରସ୍‌ଦି ଓ ବିକ୍ରମ୍ ସେଠ୍ ହେଉଛନ୍ତି ଇଂରାଜୀ ଉପନ୍ୟାସ ଲେଖୁଥିବା ଭାରତୀୟ । ଦୁହିଙ୍କର ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ରହିଛି । ଦୁଇ ବିଶିଷ୍ଟ ଔପନ୍ୟାସିକଙ୍କ ପ୍ରକାଶକମାନେ ଦୁଇ ଜଣଙ୍କ ଉପନ୍ୟାସ ପ୍ରକାଶ କରିବାକୁ ସ୍ଥିର କରିଛନ୍ତି । ବିକ୍ରମଙ୍କ ପୁସ୍ତକ 'ଆନ୍ ଇକ୍ୱାଲ୍ ମ୍ୟୁଜିକ୍'ର ପ୍ରକାଶକ ଓରିଅନ୍ ସଂସ୍ଥା ଏବଂ ବିବାଦୀୟ ଔପନ୍ୟାସିକ ସଲ୍‌ମନ୍‌ଙ୍କ ପୁସ୍ତକ 'ଦି ଗ୍ରାଉଣ୍ଡ ବେନିଥ୍ ହର୍ ଫିଟ୍'ର ପ୍ରକାଶକ ହେଉଛନ୍ତି ପ୍ରସିଦ୍ଧ ପ୍ରକାଶକ ର୍ୟାଣ୍ଡମ୍ ହାଉସ୍ । ଦୁଇଟିଯାକ ବହିରେ ରହିଛି ଅନେକ ସାମଞ୍ଜସ୍ୟ । ବହି ଦୁଇଟିରେ ରହିଛି ସଙ୍ଗୀତ ଓ ବିଫଳ ପ୍ରେମର କାହାଣୀ । ଉଭୟ ବହିର ବର୍ଣ୍ଣନା ଶୈଳୀ ମଧ୍ୟ ପ୍ରଥମ ପୁରୁଷରେ ହୋଇଛି । କେବଳ ସେତିକି ନୁହେଁ, ଦୁଇଜଣଯାକ ଔପନ୍ୟାସିକ ଦୀର୍ଘ ଦୁଇବର୍ଷ ହେଲା ଏଇ ଉପନ୍ୟାସମାନ ଲେଖୁଛନ୍ତି ଏବଂ ଅଗ୍ରୀମ ଭାବେ ଦୁଇଜଣଯାକ ପାଞ୍ଚଲକ୍ଷ ଡଲାର୍ ପାଇଛନ୍ତି ନିଜ ନିଜ ପ୍ରକାଶକଙ୍କ ପାଖରୁ ।

କଥା କେବଳ ସେତିକିରେ ସୀମିତ ରହିନଥିଲା । ଦୁଇଟିଯାକ ବହି ଏକ ସଙ୍ଗରେ ମୁକ୍ତିଲାଭ କରିବା ପାଇଁ ପ୍ରକାଶକମାନେ ପ୍ରସ୍ତୁତଥିଲେ ବୋଲି ଖବରସବୁ ଅନେକ ପୂର୍ବରୁ ପ୍ରକାଶ ପାଇଛି । ତାହା ହିଁ ଥିଲା ମୁଣ୍ଡ ବ୍ୟଥାର କାରଣ । ବିବାଦୀୟ ଲେଖକ ରସ୍‌ଦୀଙ୍କ ବହି ପ୍ରକାଶନ ତାରିଖଟି ତାଙ୍କ ନିରାପତ୍ତା ଦୃଷ୍ଟିରୁ ଯଦିଓ ଗୋପନୀୟ ରଖା ଯାଇଛି ବୋଲି ସେତେବେଳେ କୁହାଯାଉଥିଲା, ଅପରପକ୍ଷରେ ବିକ୍ରମ୍ ସେଠ୍‌ଙ୍କ ସମର୍ଥକମାନେ ଠିକ୍ ସେଇ ତାରିଖରେ 'ଆନ୍ ଇକ୍ୱାଲ୍ ମିଉଜିକ୍'କୁ ପ୍ରକାଶ କରିବା ପାଇଁ ଜିଦ୍ ଧରିଥିଲେ ବୋଲି ଶୁଣାଯାଏ । ତେବେ ଘଟଣାଟି ଜଣା ପଡ଼ିଯିବା ପରେ ସେତେବେଳେ ଲଣ୍ଡନ୍‌ରେ ରସ୍‌ଦୀଙ୍କ ବହି ମୁକ୍ତିର ତାରିଖକୁ ବଦଳାଇ ଦିଆଯାଇଥିଲା । କୁହାଯାଏ, ଏହା ଫଳରେ ଉକ୍ତ ବହି ଉଦ୍‌ଘାଟନ ଉତ୍ସବରେ ଯୋଗଦେବା ଲାଗି ରସ୍‌ଦୀଙ୍କ ନ୍ୟୁୟର୍କ ଯିବା ସ୍ଥିର ହୋଇ ସାରିଥିଲା । ଏହାଛଡ଼ା ଏହି ମୁକ୍ତି ଉତ୍ସବକୁ ଆହୁରି ଆକର୍ଷଣୀୟ ଓ ଦର୍ଶକାଭିମୁଖୀ କରିବା ଲାଗି ରଶ୍‌ଦିଙ୍କ ବହିମାନଙ୍କ ଉପରେ ରାଣ୍ଡମ୍ ହାଉସ୍ ଏକ ଡକ୍ୟୁମେଣ୍ଟାରୀ ମଧ୍ୟ ପ୍ରସ୍ତୁତ କରିଥିଲା । ଏହି ଛବିରେ ରଶ୍‌ଦିଙ୍କ ଅନେକ ବିଶିଷ୍ଟ ଲେଖକ ବନ୍ଧୁଙ୍କ ସାକ୍ଷାତକାର ଏବଂ ରଶ୍‌ଦିଙ୍କ ଉପରେ ଟିପ୍ପଣି ମଧ୍ୟ ସ୍ଥାନ ପାଇଥିଲା । ଏଇ ପ୍ରକାଶନ ମହାସମରରେ ରଶ୍‌ଦିଙ୍କ ଭାବମୂର୍ତ୍ତି ବଢ଼ାଇବା ଭଳି ଆଉ କେତେକ ପଦକ୍ଷେପ ନେଇଥିଲେ ପ୍ରକାଶକ । ତାହା ହେଉଛି ରଶ୍‌ଦିଙ୍କ ବହି ପ୍ରକାଶ ସାଙ୍ଗକୁ ଉକ୍ତ ଦିନ ଇଉରୋପ୍‌ର ପ୍ରସିଦ୍ଧ ସଂଗୀତ ସଂସ୍ଥା ରକ୍ ବ୍ୟାଣ୍ଡ ୟୁ-୨ ଏକା ସାଙ୍ଗରେ ଏକ ରେକର୍ଡ ମଧ୍ୟ ବଜାରକୁ ଛାଡ଼ିଥିଲେ । ପ୍ରକାଶ

ଥାଉ କି ବୋନୋଙ୍କ ସହ ରଣ୍ଦି ନିଜେ ମଧ୍ୟ ଏଇ ରେକର୍ଡ୍‌ର କେତେକ ଗୀତ ଲେଖିଥିଲେ ।

ଅପରପକ୍ଷରେ, ବିକ୍ରମ ଶେଠ୍‌ଙ୍କ ପ୍ରକାଶକ ତାଙ୍କ ପ୍ରକାଶିତ ପୁସ୍ତକକୁ ଶତାବ୍ଦୀର ସବୁଠୁ ଅଧିକ ଆଲୋଚିତ ପୁସ୍ତକ ଭାବେ ପରିଚିତ କରାଇବା ଲାଗି ପଦକ୍ଷେପ ନେଉଥିଲେ । ଏଥିରେ କାହାର କେତେ ଫାଇଦା ହେଲା, ତାହା ସମୟ ହାତରେ ଛାଡ଼ି ଦିଆଯାଉ । ତେବେ ଦୁଇ ବିଶିଷ୍ଟ ଲେଖକଙ୍କର ସେମାନଙ୍କର ବହିର ଲୋକପ୍ରିୟତା ପାଇଁ ପ୍ରସ୍ତୁତ କରିଥିବା ରଣନୀତି ହିଁ କୈଶୋରର 'ବାଦୀପାଲା'କୁ ମନେପକାଇ ଦେଉଛି ।

ଏହା ଅବଶ୍ୟ ଅନସ୍ୱୀକାର୍ଯ୍ୟ ଯେ ପୁସ୍ତକର ସଫଳତା ବହିର ଚାକଚକ୍ୟ ଅଥବା ବାହ୍ୟ ଆଟୋପରେ ନିର୍ଭର କରେନା ବରଂ ବହିଟିର ବିଷୟବସ୍ତୁ, କଥନ ଶୈଳୀ ଓ ଭାଷା (ଅପରପକ୍ଷରେ ଆଙ୍ଗିକ ଓ ଆତ୍ମିକ କୁହାଯାଇପାରେ) ଆଦି ହିଁ ଏହାକୁ ମଣିଷ ସହ ଚିରକାଳ ଯୋଡ଼ିବାରେ ସହାୟକ ହୋଇଥାଏ ।

# ସୌଭାଗ୍ୟର ଦିନରାତି

ଏପ୍ରିଲ୍ ପହିଲା ଆସିବାର କିଛି ଦିନ ପୂର୍ବରୁ ଓଡ଼ିଶାରେ ଥିବା ମୃତ ଅଥବା ଅର୍ଦ୍ଧମୃତ ପ୍ରାୟ ଅନେକ ସାଂସ୍କୃତିକ ଅନୁଷ୍ଠାନ ହଠାତ୍ ଜୀବନ୍ୟାସ ପାଆନ୍ତି ଯେପରି । ପହିଲାର ସକାଳୁ ବିଳମ୍ବିତ ରାତିଯାଏ ବରପୁତ୍ରଙ୍କୁ ଶ୍ରଦ୍ଧାର ସହ ସ୍ମରଣ କରାଯାଏ । ସେମାନଙ୍କ ତୈଳଚିତ୍ରରେ ମାଲ୍ୟାର୍ପଣ ଓ ପରେ ପରେ ଗୁଣକୀର୍ତ୍ତନ ସହ ଓଡ଼ିଶାକୁ ସମୃଦ୍ଧ କରି ଗଢ଼ିବାର ବଜ୍ର ଶପଥ ନିଆଯାଏ । ପରଦିନଠାରୁ ଉକ୍ତ ତୈଳଚିତ୍ରମାନଙ୍କରେ ଧୂଳି ଜମିବା ଆରମ୍ଭ କରେ, ଯାବତୀୟ ପ୍ରତିଜ୍ଞା ଓ ମିଛ ସ୍ୱପ୍ନକୁ ବେଖାତିର୍ କରି ଓଡ଼ିଶା ତା' ବାଟରେ ବଢ଼େ ଅଥବା ଛିଡ଼ିବା ଆରମ୍ଭ କରେ । ଏସବୁ ଘଟୁଥାଏ ଆଗାମୀ ବର୍ଷ ଏପ୍ରିଲ୍ ପହିଲା ପହଂଚିବା ଯାଏ । ତା'ପରେ ସେ ଘଟଣାର ପୁନରାବୃତ୍ତି ଫୁଲମାଳ, ସଭାମଂଚ, ଡାକବାଜି ଯନ୍ତ୍ରରେ ବିରାମହୀନ ଭାଷଣ ଓ ଖବରକାଗଜମାନଙ୍କରେ ବକ୍ତାଙ୍କ ଚିତ୍ର ଓ ବକ୍ତବ୍ୟ ।

ଏଇପରି ଘଟଣାର ଶିକାର ପ୍ରାୟ ପଞ୍ଚଷଠି ଥର ଆମେ ହେଲୁଣି । ଆଉ କେତେଥର ଏପରି ହେବ - ତା'ର ଉତ୍ତର ମଧ୍ୟ ଆମ ପାଖରେ ନାହିଁ । ମାତ୍ର ଏଇ ଘଟଣାମାନ ଆମକୁ କେବଳ ବୀତସ୍ପୃହ କରିନାହିଁ ବରଂ ଓଡିଶାର ବିକାଶ ଚିନ୍ତାରେ ବିବ୍ରତ ଥିବା ନେତୃବୃନ୍ଦଙ୍କ ଚାରିତ୍ରିକ ଅସାରଶୂନ୍ୟତାସମ୍ପର୍କରେ ସୂଚନା ଦେଇଛି ।

ଏସବୁ ସତ୍ତ୍ୱେ ଏ ବର୍ଷର ଏପ୍ରିଲ ପହିଲା ଆଗାମୀ ଦିନମାନଙ୍କରେ ସ୍ମରଣୀୟ ହୋଇ ରହିବ ଏ ଲେଖକ ପାଇଁ । ଶତାବ୍ଦୀର ପ୍ରଥମ ଓଡିଶା ଦିବସରେ ଭେଟହୁଏ କବି ସୌଭାଗ୍ୟ କୁମାର ମିଶ୍ରଙ୍କ ସହ ପ୍ରଥମଥର ପାଇଁ । ପ୍ରଥମ ଥର ପାଇଁ କହିଲେ ଠିକ୍ ହେବ ନାହିଁ । ଦୀର୍ଘ ପଚିଶ ଧରି ତାଙ୍କୁ ଭେଟିଛି ତାଙ୍କର ଅନେକ କବିତାରେ, ଭାବମୟ ଜଗତରେ, ମାନସିକ ସ୍ତରରେ । ଶରୀରିକ ଭେଟ ହୁଏତ ପ୍ରଥମ ଥର ପାଇଁ ହୋଇପାରେ । ଉପାନ୍ତ ଅଞ୍ଚଳର ଏକ ଖ୍ୟାତିସମ୍ପନ୍ନ ଶିକ୍ଷାନୁଷ୍ଠାନର ଗେଷ୍ଟ୍ ହାଉସ୍‌ରେ ତାଙ୍କ ସହ ପରିଚୟ ହୁଏ ସକାଳ ସାତଟାରେ ପ୍ରାତଃ ଭ୍ରମଣ ସାରି କବି ନିଜର ରହିବା କୋଠରୀକୁ ବାହୁଡିବା ବେଳେ । ବାସ୍, ସେଇଠୁ ଆରମ୍ଭ ହୁଏ ପରିଚୟ, ଅନୁରାଗ, ଅନ୍ୱେଷଣର ପର୍ବ । କଥାର ଖିଅ ଲମ୍ବିଯାଏ ଯୋଜନ ଯୋଜନ । କାହାଣୀର ପେଡି ଖୋଲିଯାଏ । ହଠାତ୍ ମନେପଡେ ଯେ ସକାଳର ଜଳଖିଆ ଖାଇବା କବି ପାଶୋରି ଦେଇଛନ୍ତି କଥାର କାଉଁରୀ ସ୍ପର୍ଶରେ । କଥା ମଝିରେ ଯୋଗ ଦେଲେ କବିବନ୍ଧୁ ପ୍ରକାଶ ମହାପାତ୍ର । କଥା ପ୍ରସଙ୍ଗରେ କବି

ସୌଭାଗ୍ୟ କୁମାର ମିଶ୍ର କହି ଚାଲିଥା'ନ୍ତି ତାଙ୍କର ଉପନ୍ୟାସିକା 'ଘରପୋଡିରୁ ରକ୍ଷା ପାଇବାର କେତୋଟି ଉପାୟ' ରଚନା ସମ୍ପର୍କରେ । ପ୍ରାୟ ପଚିଶି ବର୍ଷ ତଳେ ରାଜଧାନୀର ବିଜେବି ମହାବିଦ୍ୟାଳୟରେ ତାଙ୍କର ସହକର୍ମୀ, ଔପନ୍ୟାସିକ ତଥା 'ଗଳ୍ପ' ପତ୍ରିକାର ସମ୍ପାଦକ ବିଭୂତି ପଟ୍ଟନାୟକ ଗଳ୍ପ ପତ୍ରିକା ପାଇଁ ଗଳ୍ପଟିଏ ଲେଖିବାକୁ ବାରମ୍ବାର କହୁଥାନ୍ତି । ନିଜର ଅନିଚ୍ଛା ସତ୍ତ୍ୱେ ପ୍ରତିଦିନ ଗୋଟାଏ ପେନ୍‌ସିଲ୍‌ରେ କିଛି କିଛି ପୃଷ୍ଠା ଲେଖନ୍ତି ଏବଂ ପରବର୍ତ୍ତୀ ଦିନ ସକାଳେ ବିଭୂତିବାବୁଙ୍କୁ ଗଲା ରାତିର ଲିଖିତ ଅଂଶ ଶୁଣାନ୍ତି । ଏପରି ଲେଖୁ ଲେଖୁ ହଠାତ୍ ତାଙ୍କର ମନେହୁଏ ଆଗକୁ ଆଉ ବଢ଼ି ପାରିବେନି । ବାସ୍, ପରେ ପରେ ଏହା ଗଳ୍ପ ପତ୍ରିକାରେ ପ୍ରକାଶିତ ହୋଇ ବେଶ୍ ଲୋକପ୍ରିୟତା କମାଏ । ସବୁଠାରୁ ଆଚମ୍ବିତ କଥା, 'ଆତ୍ମନେପଦୀ'ଠାରୁ 'ଚରାଚର' ଯାଏ ନଅଖଣ୍ଡ ବହି ଲେଖି ସାରିଥିବା ଏଇ ପ୍ରଚଣ୍ଡ ପ୍ରତିଭାବାନ୍ କବି ଏବେ ଗୋଟିଏ ଉପନ୍ୟାସ ଲେଖିବାର ଖସଡା ପ୍ରସ୍ତୁତ କରିଛନ୍ତି ଓ ଓଡିଆ ଉପନ୍ୟାସ ନିଶ୍ଚୟ ଏଥିରୁ ଲାଭ ଉଠେଇବ-ଏଥିରେ ଏ ଲେଖକର ଆଦୌ ସନ୍ଦେହ ନାହିଁ । ସାଂପ୍ରତିକ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ କବିଙ୍କର ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ତଥା ପ୍ରସ୍ତାବ ରହିଛି । କାରଣ ସେ ଜଣେ ଅଧ୍ୟାପକ, ଦୀର୍ଘ ଛତିଶି ବର୍ଷ ଧରି । କୋମଳମତି ଛୋଟ ପିଲାମାନଙ୍କ ବର୍ଦ୍ଧିତ ପାଠ୍ୟକ୍ରମକୁ ନେଇ ସେ ଖୁବ୍ ବିବ୍ରତ । ଅନାବଶ୍ୟକ ଭାବେ ତାଙ୍କ ଉପରେ ପଡୁଥିବା ଚାପ ଫଳରେ ସେମାନେ ଏବେ ହତୋତ୍ସାହ । ଶିକ୍ଷକ ଏବଂ ନିଜ ପିତାମାତାଙ୍କ ତାଗିଦ୍ ତଥା ଅହେତୁକ ଇଚ୍ଛାର ଶିକାର ହୋଇ ଜାପାନର କିଶୋରମାନେ ଏତେ ବେଶୀ ସଂଖ୍ୟାରେ ଆତ୍ମହତ୍ୟା କରୁଛନ୍ତି । ଭାରତରେ ଏହା ଘଟିବାକୁ ଆଉ ବେଶୀ ଦିନ ଲାଗିବନି ବୋଲି ସେ ଆଶଙ୍କା କରନ୍ତି । ଏହାଛଡା, ଓଡିଶାରେ ଥିବା ତିନୋଟି ମୁଖ୍ୟ ବିଶ୍ୱବିଦ୍ୟାଳୟ ଓ ସ୍ୱୟଂଶାସିତ ମହାବିଦ୍ୟାଳୟଗୁଡିକର ପାଠ୍ୟକ୍ରମ ଚୟନ୍‌ରେ ସମନ୍ୱୟ ନ ରହିଲେ ସାଂସ୍କୃତିକ ସ୍ତରରେ ଓଡିଶା ତିନିଭାଗ ହୋଇଯିବ ବୋଲି ସେ ତାଗିଦ୍ କରନ୍ତି । କଥା ଆଉ ବକ୍ତବ୍ୟରେ ସେ ବେଶ୍ ସ୍ପଷ୍ଟ । ଏବେ ଯେଉଁ ଭୂମଣ୍ଡଳୀକରଣ ପ୍ରକ୍ରିୟା ଚାଲିଛି ବିଶ୍ୱରେ, ଓଡିଶାର ସାଂସ୍କୃତିକ ଧାରା ଏହାର ସଂକ୍ରମଣରେ ଆକ୍ରାନ୍ତ ହେବାର ଯେଉଁ ଆଶଙ୍କା ସୃଷ୍ଟି ହୋଇଛି, ସେପରି ସମ୍ଭାବନାକୁ କବି ଦୃଢ଼ତାର ସହ ଅସ୍ୱୀକାର କରନ୍ତି । ସେ କୁହନ୍ତି: ଭୂମଣ୍ଡଳୀକରଣ ପ୍ରକ୍ରିୟାର ଆରମ୍ଭ ହିଁ ଆମେରିକା ଦ୍ୱାରା ହୋଇଛି ପ୍ରଥମେ, ଅଥଚ ସେଠାରେ ବସବାସ କରୁଥିବା ବିଭିନ୍ନ ସମ୍ପ୍ରଦାୟର ଏହାଦ୍ୱାରା କୌଣସି କ୍ଷତି ହୋଇନାହିଁ । ବରଂ କୋଡିଏ ପଚିଶ ବର୍ଷ ତଳେ ଆଦୌ ନାଁ ଗନ୍ଧ ନ ଥିବା କଳାଲୋକଙ୍କ ସାହିତ୍ୟ ଏବେ ଆମେରିକାର ସାହିତ୍ୟରେ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବି କରିଛି । କିଛିଦିନ ତଳେ, ଇଣ୍ଡିଆନ୍ ଏକ୍ସପ୍ରେସ୍ ସଂସ୍ଥା ଦ୍ୱାରା ପ୍ରକାଶିତ ବହିଟିରେ ଓଡିଆ ସାହିତ୍ୟ ସମ୍ପର୍କରେ ଦିଆଯାଇଥିବା ତ୍ରୁଟିପୂର୍ଣ୍ଣ ତଥ୍ୟ ପାଇଁ ସେ ଏଇ ପୁସ୍ତକର

ଲେଖକଙ୍କ ଅଜ୍ଞତାକୁ ହିଁ ଦାୟୀ କରିବା ସହ ଦୁଃଖ କରିଥିଲେ । ତେବେ ଏଥିନେଇ ଓଡିଶାରେ ଚାଲିଥିବା ହୋହଲ୍ଲା ଏବଂ ଆନ୍ଦୋଳନକୁ ସେ ପସନ୍ଦ କରନ୍ତି ନାହିଁ ବୋଲି ସ୍ପଷ୍ଟ କରିଦେଇଥିଲେ । ବରଂ ଏଥିପାଇଁ ଉଦାସୀନତା ହି ଉପଯୁକ୍ତ ଉତ୍ତର ହେବ ବୋଲି କହିବା ସହ, ସାଂପ୍ରତିକ ଯୁବ ସାହିତ୍ୟିକଙ୍କ ଭିତରେ ପ୍ରତିଭାବାନ ତଥା ପ୍ରତିବଦ୍ଧ ସାହିତ୍ୟିକ ଦେଖି ପାରୁନଥିବା ଓ ଓଡିଆ ସାହିତ୍ୟର ଅନୁଜ୍ଜ୍ୱଳ ଭବିଷ୍ୟତ ପାଇଁ କ୍ଷୋଭ ପ୍ରକାଶ କରିଥିଲେ ।

ଦିନସାରା ଆଲୋଚନା ଭିତରେ ଠାଏ ସେ ସ୍ୱତଃ କହିଥିଲେ, ମାତ୍ର ଦଶ ମିନିଟ୍‌ରେ କିପରି 'ଡାଏନା' କବିତା ଲେଖିଥିଲେ ଏବଂ 'ଫଳାହାର' କବିତାଟିରେ କୁଖ୍ୟାତ ରଙ୍ଗା ଓ ବିଲ୍ଲାଙ୍କୁ ସେ ଚିତ୍ରଣ କରିଥିଲେ ।

: ତମେ ଜାଣିଛ, ଦ୍ୱାସୁପର୍ଣ୍ଣା ବହିର 'ହେ ବଂଶୀ ।' କବିତାର ନାୟକଙ୍କୁ ?'' ସେ ହସି ହସି ପଚାରିଲେ ।

: ନା,'' ମୁଁ ମୁଣ୍ଡ ନାଡିଲି ।

: ସେ ହେଉଛନ୍ତି କବି ବଂଶୀଧର ଷଡଙ୍ଗୀ ।

ଏଠି ଉଲ୍ଲେଖନୀୟ ଯେ କବି ବଂଶୀଧର ଷଡଙ୍ଗୀ ଏକଦା ଅଧ୍ୟାପକ ଥିଲେ ଏ ଲେଖକର ।

କଥାବାର୍ତ୍ତା ଅନ୍ୟ ମୋଡ ନେଲା ଯେତେବେଳେ ତାଙ୍କୁ ପଚାରିଲି, ସେ କାହିଁକି ଇନ୍ଦିରାଗାନ୍ଧିଙ୍କ ଜରୁରୀ ପରିସ୍ଥିତିକୁ ସମର୍ଥନ କରି କବିତା ଲେଖିଲେ । ଟିକେ ଗମ୍ଭୀର ହୋଇଗଲେ ସେ ।

ଆଲୋଚନା ଖୁବ୍ ରସସିକ୍ତ ହୋଇଥିବା ଯେତେବେଳେ ଜନୈକା ନାରୀ କବିଙ୍କ ସହ ତାଙ୍କର ସମ୍ପର୍କ ନେଇ ଏ ଲେଖକ ପ୍ରଶ୍ନ କରିଥିଲା, କବି ଖୁବ୍ ପ୍ରଗଲ୍‌ଭ ହୋଇ ଉଠିଥିଲେ । ଗୋଟି ଗୋଟି କରି ସବୁ କହିଗଲେ, ନା, କ୍ଷମା କରିବେ, ଆଉ ଥରେ ସେସବୁ ବିଷୟରେ କହିବି ।

ତେବେ କବି ସୌଭାଗ୍ୟ କୁମାର ମିଶ୍ରଙ୍କୁ ବିଦାୟ ଦେବା ବେଳକୁ ରାତି ଗୋଟାଏ ହୋଇ ଯାଇଥିଲା । ତାହାହିଁ ଥିଲା ଏକ ଅନନ୍ୟ ଅନୁଭୂତି ଓ ସୁଖଦ ଅନୁଭବ ।

*ଅନୁପମ ଭାରତ ୧.୫.୨୦୦୦*

# ଦେବୀ ଓ ପା'ପୋଛ

ଏଯାବତ୍ ବହୁଚର୍ଚ୍ଚିତା ଅଞ୍ଜନାଙ୍କ ସମ୍ପର୍କରେ କାହିଁକି ଲେଖାଟିଏ ପ୍ରସ୍ତୁତ କରିନାହିଁ ବୋଲି ଅନେକ ଶୁଭେଚ୍ଛୁ ପ୍ରଶ୍ନ କରିଛନ୍ତି ଏ ଲେଖକକୁ । ସନ୍ତୋଷଜନକ ଉତ୍ତର ଦେବା ହୁଏତ ସମ୍ଭବ ହୋଇନି । ଅଞ୍ଜନାଙ୍କୁ ନେଇ ଅନେକ କିଛି ଲେଖା ସରିଲାଣି ଏଇ କିଛି ବର୍ଷ ଭିତରେ । କେତେକ ସାହିତ୍ୟିକ ବନ୍ଧୁ ତାଙ୍କୁ କେନ୍ଦ୍ର କରି ଉପନ୍ୟାସ ଲେଖୁଛନ୍ତି ବୋଲି ଖବରମାନ ମଧ୍ୟ ପହଞ୍ଚୁଛି । ପରିହାସ ଛଳରେ ପ୍ରାୟ ବର୍ଷକ ତଳେ ଜଣେ ବରିଷ୍ଠ ଗାଳ୍ପିକ ତଥା ଔପନ୍ୟାସିକଙ୍କୁ ଅଞ୍ଜନାଙ୍କୁ ନେଇ ଉପନ୍ୟାସ ଲେଖିବାକୁ ଅନୁରୋଧ କରିଥିଲି ।

'ମୋର ଅନୁଧ୍ୟାନ ଏଯାଏଁ ସରିନି ।' ସେ ଉତ୍ତର ଦେଲେ । ଅଧିକାଂଶ ସୃଜନଶିଳ୍ପୀଙ୍କର ହୁଏତ ଏଇ ଅବସ୍ଥା । ଖବର କାଗଜ ପୃଷ୍ଠାରୁ ଏଇ ଚରିତ୍ରକୁ ଅନୁଧ୍ୟାନ କରି କୌଣସି ନିଷ୍କର୍ଷରେ ପହଞ୍ଚିବା ଏକ ଦୂରୁହ ବ୍ୟାପାର । ତେବେ ଯେତେବାର ଏ ଲେଖକ ଉକ୍ତ ଚରିତ୍ରଟି ସମ୍ପର୍କରେ ଚିନ୍ତା କରିଛି, ସେତେଥର ବାଟବଣା ହୋଇଛି । କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିନି । କୌଣସି ଉପକ୍ରମ ନକରି ଏଥର କଥାଟି ସିଧାସଳଖ କହେ ।

ଅଞ୍ଜାନଙ୍କ ବିବାହିତ ଜୀବନର ଇତିହାସ ପୃଷ୍ଠା ଲେଉଟାଇଲେ ପ୍ରଥମ ପରିଚ୍ଛେଦଟି ହେବ ସ୍ୱାମୀଙ୍କ ସହ ମତାନ୍ତର ଓ ମନାନ୍ତର ଯାହା ପରବର୍ତ୍ତୀ ପର୍ଯ୍ୟାୟରେ ବିବାହ ବିଚ୍ଛେଦର ରୂପ ନିଏ । ପ୍ରାୟ ଦୁଇଶହ ବର୍ଷ ତଳେ ସଫଳ ଦାମ୍ପତ୍ୟ ଜୀବନ ପାଇଁ ପ୍ରଖ୍ୟାତ କବି କଲରିଜ୍ ଯେଉଁ ସୂତ୍ର ବତାଇଥିଲେ ତାହାର ଏବେ ବି କାଟ୍ତି ଅଛି ଆମ ସମାଜରେ ।

ତାଙ୍କ ଭାଷାରେ : ମୁଁ ନିଜେ ଦେଖିପାରୁଛି ଅଥବା ଚିନ୍ତା କରିପାରୁଛି, ସବୁଠୁ ସୁଖମୟ ବିବାହ ହେଉଛି ଜଣେ କାଲ ଏବଂ ଜଣେ ଅନ୍ଧୁଣୀର ମିଳନ ମାତ୍ର ।' (The most happy marriage I can picture or imagine to myself would be the union of a deaf man to a blind woman) । ସ୍ୱାମୀସ୍ତ୍ରୀଙ୍କ ମଧ୍ୟରେ ଏକ କାଳ୍ପନିକ ରେଖା ଟାଣିବା ହୁଏତ ତାଙ୍କର ଉଦ୍ଦେଶ୍ୟ ଥିଲା । ମାତ୍ର ଚାରିଶହ ବର୍ଷ ପୂର୍ବେ ଫ୍ରାନ୍ସର ଲେଖକ ମାଇକେଲ୍ ଡି ମୋଣ୍ଟାନେ କହିଥିବା କଥାଟି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ ଆଜିର ପୃଥିବୀରେ । ସେ କହିଥିଲେ: 'ବିବାହ ଗୋଟେ ପଞ୍ଜୁରୀ ପରି । ବାହାରେ ଥିବା ପକ୍ଷୀମାନେ ବିକଳ ହୋଇ ପଞ୍ଜୁରୀ ଭିତରକୁ ଯିବାକୁ ଯେତିକି ବ୍ୟଗ୍ର, ଠିକ୍ ସେଇପରି ଭିତରେ ଥିବା ଚଢ଼େଇମାନେ ବାହାରକୁ ଆସିବାକୁ ସେତିକି ଆତୁର ।' (Marriage

is like a cage; One sees the birds outside desperate to get in, and those inside equally desperate to get out) ଏକଦା ବିଲାତର ପ୍ରସିଦ୍ଧ ଅଭିନେତ୍ରୀ ସିବିଲ୍ ଥର୍ଣ୍ଣାଡାଇକ୍‌ଙ୍କୁ ପ୍ରଶ୍ନ କରାଯାଇଥିଲା-କାଳେ ଦୀର୍ଘ ବୈବାହିକ ଜୀବନ ଭିତରେ ସେ ଛାଡପତ୍ର କଥା କେବେ ଚିନ୍ତା କରିଥିଲେ କି ନାହିଁ । ପରିହାସ ଛଳରେ ସେ କହିଥିଲେ : 'ଛାଡପତ୍ର ? କେବେନୁହେଁ । ମାତ୍ର ହତ୍ୟା ବାରମ୍ବାର ।' (Divorce ? Never. But murder, often !) ଅନୁଭବୀମାନେ ଏ କଥାର ସାରମର୍ମ ନିଶ୍ଚୟ ବୁଝିପାରିବେ ।

ନ୍ୟାୟ ପାଇବା ଲାଗି ଯେତେବେଳେ ଅଞ୍ଜନା ଜଣେ ବରିଷ୍ଠ ଓକିଲଙ୍କ ସାହାଯ୍ୟ ଲୋଡିଲେ, ସେତେବେଳେ ସେ ସୁରକ୍ଷା ପାଇବା ପରିବର୍ତ୍ତେ ପାଇଲେ ଯୌନ ଶିକାରର ଲାଞ୍ଛନା । ଔପନ୍ୟାସିକ ଆଡଲସ୍ ହକ୍‌ସଲେ ଏକଦା କହିଥିଲେ : ଶଯ୍ୟା ହେଉଛି ବିଚରାମାନଙ୍କର ତାମ୍‌ସା । (Bed is the poor man's Opera) । ମାତ୍ର ଏଇ ପରିପ୍ରେକ୍ଷୀରେ ଲଣ୍ଡନର ଗହକର୍ତ୍ତୀଙ୍କ ଉକ୍ତିଟି ମନେପଡେ । ୧୯୮୭ ମସିହା ନଭେମ୍ବର ୮ ତାରିଖ ଦିନ ଏକ ବହୁଚର୍ଚ୍ଚିତ ସେକ୍‌ସ ସ୍କାଣ୍ଡାଲ୍ ମକଦ୍ଦମାରୁ ମୁକ୍ତି ପାଇବା ପରେ ସେ କହିଥିଲେ, 'ମୁଁ ଜାଣେ ଲୋକଙ୍କୁ ଏହା ଖୁସୀ କରେ ମାତ୍ର ମୋ ପାଇଁ ଏହା କେବଳ କପେ ଚା' ପିଇବା ପରି ।' (I know it does people make happy but to me it is just like having a cup of tea) । ବରିଷ୍ଠ ଓକିଲଙ୍କ ସହ ଅଞ୍ଜନାଙ୍କ ପ୍ରାଥମିକ ମିଳାମିଶାକୁ ସେତେବେଳେ ଅନେକ ନାପସନ୍ଦ କରିଥିଲେ । ସେମାନେ ହୁଏତ ପ୍ରସିଦ୍ଧ ଲେଖକ ମାର୍କଟ୍ୱେନ୍‌ଙ୍କ କଥା ମନେ ପକାଉଥିଲେ : 'ଘନିଷ୍ଠତା ହିଁ ଘୃଣା ଏବଂ ପିଲା ଜନ୍ମ କରାଏ ।' ସେ ଘୃଣା ଆଉ କ୍ରୋଧର ନିଆଁ ଅନେକ କିଛି ପୋଡି ଛାରଖାର କରିସାରିଲାଣି ଯା' ଭିତରେ । ସେ ଅଙ୍ଗାରକୁ ଧରି ନିଜ ହାତ କଳା କରିବାର ଅଭିପ୍ରାୟ ନାହିଁ ଏ ଲେଖକର ।

ଠିକ୍ ସେଇ ଦୁର୍ବିସହ ସମୟରେ ଅଞ୍ଜନାଙ୍କର ବନ୍ଧୁତା ହେଲା ଜଣେ ଯୁବ ସାମ୍ବାଦିକଙ୍କ ସହ । ବନ୍ଧୁତା ଅତି ଘନିଷ୍ଠ ହେଲେ ସମ୍ପର୍କର ଜୁଆରରେ ଭଟ୍ଟା ଆସିଥାଏ । ସେଇଥିପାଇଁ କୁହାଯାଏ: 'ଦୁଇଜଣଙ୍କ ଭିତରେ ବାଡଟି ହିଁ ବନ୍ଧୁତାକୁ ସତେଜ ରଖେ ।' (A hedge between keeps friendship green) ମାତ୍ର ଏଇ ସବୁଜିମା ଏବେ ଧୂସର ହୋଇଯାଇଛି ଅଞ୍ଜନାଙ୍କ ବିବୃତିରେ । ସେ ବନ୍ଧୁ ନଥିଲେ, ପ୍ରତାରକ । ଦ୍ୱିତୀୟବାର ଯୌନ ଲାଞ୍ଛନାର ଶିକାର ପାଇଁ ତାଙ୍କୁ ଏବେ ସେ ଦାୟୀ କରିଛନ୍ତି । ଜର୍ମାନୀର ବିଖ୍ୟାତ ନାଟ୍ୟକାର ବ୍ରେକ୍‌ଟ ତାଙ୍କ ନାଟକ 'ମଦର କରେଜ'ର ଠାଏ ଲେଖିଥିବା ସଂଳାପଟି ମନେପଡିଗଲା: 'ମୁଁ ତାଙ୍କୁ ବିଶ୍ୱାସ କରେ ନାହିଁ । ଆମ୍ଭେମାନେ ପରସ୍ପର ବନ୍ଧୁ ।' (I

don't trust him. We're friends) ସେମାନେ ହୁଏତ ବନ୍ଧୁ ନଥିଲେ । କାରଣ ଜଣେ ନାରୀ, ଜଣେ ପୁରୁଷର ବନ୍ଧୁ ହେବା ପାଇଁ ଯେଉଁ ସୋପାନ ସବୁ ଅତିକ୍ରମ କରିଥାଏ ସେଥିରେ ପ୍ରଥମଟି ହେଲା 'ପରିଚୟ' ବା 'ମିଳାମିଶା' । ଦ୍ୱିତୀୟ ସୋପାନ ହେଉଛି 'ପତ୍ନୀତ୍ୱ' ଏବଂ ଶେଷ ସୋପାନ ହେଉଛି 'ବନ୍ଧୁତ୍ୱ' । ପ୍ରସିଦ୍ଧ ଗାଳ୍ପିକ ତଥା ନାଟ୍ୟକାର ଆଣ୍ଟନ ଚେକଭଙ୍କର ଏଇ ବିଶ୍ୱାସ ଥିଲା ।

୧୯୭୭ ମସିହାରେ ଏକ ପତ୍ରିକାକୁ ସାକ୍ଷାତକାର ଦେଇ ତତ୍କାଳୀନ ଆମେରିକୀୟ ରାଷ୍ଟ୍ରପତି ଜିମ୍ମି କାର୍ଟରଙ୍କ ମାଆ ଲିଲିଆନ୍ କାର୍ଟର କହିଥିଲେ: 'ମୋର ସମସ୍ତ ସନ୍ତାନଙ୍କୁ ମୁଁ ଭଲପାଏ, କିନ୍ତୁ ସେମାନଙ୍କ ଭିତରୁ କେତେକଙ୍କୁ ମୁଁ ପସନ୍ଦ କରେ ନାହିଁ ।' (I love all my children, but some of them I do n't like) ଉକ୍ତିଟି ସେ ଜିମ୍ମିଙ୍କୁ ନିର୍ଦ୍ଦେଶ କରି କହିଥିଲେ । ଠିକ୍ ସେଇପରି ଏବେ ଅଞ୍ଜନଙ୍କ ପିତା ମଧ୍ୟ ନିଜ କନ୍ୟାଙ୍କ ଆଚରଣରେ ବ୍ୟତିବ୍ୟସ୍ତ ହୋଇ ଶେଷରେ ସାହାଯ୍ୟ ପାଇଁ ଅଦାଲତ ଦ୍ୱାର ପର୍ଯ୍ୟନ୍ତ ଯାଇଛନ୍ତି ।

ଏସବୁ କହିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଅଞ୍ଜନାଙ୍କର ବିଭିନ୍ନ ଭୂମିକାକୁ ଏ ଲେଖକ ଲକ୍ଷ୍ୟ କରି ଆସୁଛି । ପତ୍ନୀ, ବୋହୂ, ମାଆ, ବାନ୍ଧବୀ ଓ କନ୍ୟାର ଭୂମିକାକୁ ସେ କିପରି ଭାବେ ତୁଲାଇଛନ୍ତି ତାହା ତାଙ୍କ ବ୍ୟକ୍ତିଗତ ଘଟଣା । ସେଥିରେ କାହାର ମୁଣ୍ଡ ପୂରାଇବାର ଆବଶ୍ୟକତା ହିଁ ନାହିଁ । ଏସବୁ ମୁଣ୍ଡରେ ପଶୁଛି କେବଳ ଖବରକାଗଜର ବିବୃତିମାନଙ୍କ ଯୋଗୁଁ । ତେବେ ତାଙ୍କୁ ଜଣେ ନାରୀ ଭାବେ କେବଳ ଅନୁଶୀଳନ କରିବାକୁ ଯାଇ ଏ ଲେଖକ ବିଶ୍ୱବିଦିତ ଚିତ୍ରକର ପିକାସୋଙ୍କ ଉକ୍ତିଟିକୁ ଏଠି ଉଦ୍ଧାର କରୁଛି : ଦୁଇପ୍ରକାରର ନାରୀ ଅଛନ୍ତି; ପ୍ରଥମଟି ହେଉଛି ଦେବୀ ଓ ଅନ୍ୟଟି ହେଲା ପା'ପୋଛ । (There are two kinds of Woman-goddesses and doormats) ନିଜ ଜୀବନର କଷଟିରେ ପରଖିଥିବା ଏଇ ବିଶିଷ୍ଟ ଶିଳ୍ପୀଙ୍କ ମନ୍ତବ୍ୟ ଅଭିଜ୍ଞତା-ପ୍ରସୂତ । ତେବେ ଅଞ୍ଜନା କେଉଁ ପର୍ଯ୍ୟାୟରେ ରହିବେ ଏବେ ସମୟ ଉପରେ ସେ ଦାୟିତ୍ୱଟି ଛାଡି ଦିଆଯାଉ ।

*ଅନୁପମ ଭାରତ ୧୩.୩.୨୦୦୦*

# ଭଦ୍ରଲୋକଙ୍କ ଖେଳ

ଥରେ ବିଶିଷ୍ଟ ନାଟ୍ୟକାର ଅସ୍କାର ୱାଇଲ୍‌ଡଙ୍କୁ ସେ କାହିଁକି କ୍ରିକେଟ ଖେଳୁ ନାହାଁନ୍ତି ବୋଲି ପ୍ରଶ୍ନ କରିବାରୁ, ପରିହାସ ଛଳରେ ସେ ଉତ୍ତର ଦେଇଥିଲେ: ଜଣକୁ ଏପରି ଆଶାଳୀନ ଅଙ୍ଗଭଙ୍ଗୀ ପ୍ରଦର୍ଶନ କରିବାକୁ ପଡିବ । (It requires one to assume such indecent postures) । ରିପ୍ଟନ୍ ସ୍କୁଲର ପ୍ରଧାନଶିକ୍ଷକ ଥିବାବେଳେ ଛାତ୍ରମାନଙ୍କ ପିତାମାତଙ୍କୁ ଭାଷଣ ଦେବାବେଳେ ଉଇଲିୟମ୍ ଟେମ୍ପଲ୍ କହିଥିଲେ: କ୍ରିକେଟ୍‌କୁ ମୁଁ ସର୍ବଦା ଏକ ସୁଗଂଠିତ ଅଳସୁଆମୀ ବୋଲି ବିବେଚନା କରେ । (I have always looked upon Cricket as Organised loafing)

ଏଣିକି ଭାରତୀମାନେ ଉଇଲିୟମ୍ ଟେମ୍ପଲ୍‌ଙ୍କ ବକ୍ତବ୍ୟଟିକୁ ବେଶୀ ପସନ୍ଦ କରିବସିବେ । ଗତ କିଛି ସପ୍ତାହ ହେବ କ୍ରିକେଟ୍‌କୁ ନେଇ ଯେଉଁସବୁ ଖବରମାନ ଭାରତ ତଥା ବିଶ୍ୱର ପତ୍ରପତ୍ରିକା ଓ ସମ୍ବାଦପତ୍ରମାନଙ୍କ ଶିରୋନାମାରେ ପ୍ରକାଶ ପାଇଛି, ସେଥିରୁ କ୍ରିକେଟ୍‌ର ଆୟୁଷ ଆଉ ବେଶୀ କାଳ ନୁହେଁ ବୋଲି ଆଶଙ୍କା ମଧ୍ୟ ପ୍ରକାଶ ପାଇଛି ।

ଭାରତର ସମସ୍ତ ଖେଳ ମଧ୍ୟରେ କ୍ରିକେଟ୍‌ର ଲୋକପ୍ରିୟତା ସବୁଠୁ ଅଧିକ । ଏଇ ଖେଳରେ ପ୍ରସିଦ୍ଧି ଅର୍ଜନ କରିଥିବା ତାରକାମାନଙ୍କୁ ସବୁଠୁ ବେଶୀ ଅର୍ଥ ଓ ଯଶ ମିଳିବାର ସୁଯୋଗ ଥାଏ । କୀଡା ଇତିହାସରେ କ୍ରିକେଟ ଖେଳାଳି ସଚିନ୍ ତେନ୍ଦୁଲକର ସବୁଠୁ ବିତ୍ତଶାଳୀ ବ୍ୟକ୍ତି ଭାବେ ପରିଚିତ । ତେବେ ଏଇ ଖେଳ ଭିତରେ କାୟା ବିସ୍ତାର କରିଥିବା ଦୁର୍ନୀତି ଏବେ କ୍ରିକେଟପ୍ରେମୀ ଦର୍ଶକମାନଙ୍କ ମନରେ ଗଭୀର ଆଘାତ ସୃଷ୍ଟି କରିଛି । ପ୍ରସଙ୍ଗକ୍ରମେ ଏଠାରେ ଏହାର ସଂକ୍ଷିପ୍ତ ବର୍ଣ୍ଣନା କରାଯାଇପାରେ । ଗତ କିଛିମାସ ତଳେ, ମ୍ୟାଚ୍ ଫିକ୍ସିଂରେ ଦକ୍ଷିଣ ଆଫ୍ରିକା କ୍ରିକେଟ୍ ଦଳର ଅଧିନାୟକ କ୍ରୋନିଏ ସଂପୃକ୍ତ ଅଛନ୍ତି ବୋଲି ପ୍ରକାଶ ପାଇବା ପରେ ସାରା ବିଶ୍ୱରେ ହଇଚଇ ସୃଷ୍ଟି ହେଲା । ଧିରେଧିରେ ଘଟଣାର ମୋଡ ବଦଳିଗଲା ଏବଂ ଏବେ ଭାରତର ପ୍ରାୟତଃ ଅଧିକାଂଶ ଖେଳାଳି ମ୍ୟାଚ୍ ଫିକ୍ସିଂ ଭଳି ହୀନ ବୃତ୍ତିରେ ଲିପ୍ତ ରହି ଆସିଛନ୍ତି ବୋଲି ଅଭିଯୋଗ ହେଉଛି । ସେମାନଙ୍କ ଭିତରେ ସବୁଠୁ ସନ୍ଦେହର ବଳୟରେ ଅଛନ୍ତି ଭୂତପୂର୍ବ ଅଧିନାୟକ ଆଜହରୁଦ୍ଦିନ । କୁଖ୍ୟାତ ଦାଉଦ୍ ଇବ୍ରାହିମ୍‌ଙ୍କ ଏକାନ୍ତ ସହଯୋଗୀ ଶରଦ ସେଟ୍ଟି କୁଆଡେ ଆଜହରୁଦ୍ଦିନଙ୍କୁ ଦୁବାଇରେ ଗୋଟେ ବଙ୍ଗଳା ଏବଂ ଏକ ମର୍‌ସିଡିଜ୍ କାର୍ ଉପହାର ଦେଇଛନ୍ତି । ଦିଲ୍ଲୀରେ ତାଙ୍କର ଏଇ ଦଲାଲି କାମ ସୁରୁଖୁରୁରେ ଚଳାଇବାକୁ

ଭୂତପୂର୍ବ କ୍ରିକେଟ୍ ଖେଳାଳି ଓ ବନ୍ଧୁ ଅଜୟ ଶର୍ମାଙ୍କୁ ସେ କାମରେ ଲଗାଇଛନ୍ତି । ନିଜକୁ ପୋଲିସ୍ ହାବୁଡରୁ ବଞ୍ଚାଇବା ପାଇଁ ଅଜୟ ଶର୍ମା ଏବେ ଅତି ସନ୍ତର୍ପଣରେ ଖସି ପଳାଇଛନ୍ତି ଇଂଲଣ୍ଡକୁ । ଅନୁରୂପ ଭାବେ, ପ୍ରାକ୍ତନ ଅଧିନାୟକ କପିଳଦେବ ଏକଦା ଜଣେ ଦଲାଲଙ୍କଠାରୁ ଏକକୋଟି ଟଙ୍କା ଲାଞ୍ଚ ନେଇଥିବାର ଅଭିଯୋଗ ହେବା ସହ ତାଙ୍କ ସହ କ୍ରିକେଟ ଖେଳୁଥିବା ମନୋଜ ପ୍ରଭାକରଙ୍କୁ ଏହି ଦଲାଲି କାମରେ ସାମିଲ୍ ହେଲେ ପଚିଶି ହଜାର ଡଲାର୍ ଦେବା କଥା ଏବେ ପଦାକୁ ଆସିଲାଣି ।

ଭାରତୀୟ କ୍ରିକେଟ ତାରକାମାନଙ୍କ ଭିତରେ ସଚିନ୍ ତେନ୍ଦୁଲକରଙ୍କୁ ଭଗବାନଙ୍କ ସହ ତୁଳନା କରାଯାଏ । ଗୋଟାଏ ଜାତିର ସେ ହେଉଛନ୍ତି ଗର୍ବର ପ୍ରତୀକ । ସବୁ ଯୁବକଙ୍କ ସ୍ୱପ୍ନର ମଣିଷ ସେ । ସବୁରି ଡ୍ରଇଁ ରୁମ୍‌ରେ ତାଙ୍କ ଫଟୋ ପ୍ରାୟତଃ ଦେଖିବାକୁ ମିଳେ । ଏବେ ସେ ସ୍ୱପ୍ନ ଧୂଳିସାତ୍ ହେବାରେ ଲାଗିଛି । ତାଙ୍କର କୁଆଡେ କ୍ରିକେଟ ଖେଳରେ ଦଲାଲି କରୁଥିବା ବ୍ୟକ୍ତିମାନଙ୍କ ସହ ବନ୍ଧୁତା ଅଛି । ଭିକ୍କି ନାମକ ଜଣେ ଦଲାଲ୍ କୁଆଡେ ତାଙ୍କ ବିବାହୋତ୍ସବରେ ଯୋଗ ଦେଇଥିଲେ । ତା'ଛଡା ଭାରତ ଓ ଆନ୍ତର୍ଜାତୀୟ କ୍ରିକେଟ୍ କଣ୍ଟ୍ରୋଲ ବୋର୍ଡର ଅଧ୍ୟକ୍ଷ ଓ ବରିଷ୍ଠ କର୍ମକର୍ତ୍ତାଙ୍କ ଆକ୍ରମଣ ଓ ପ୍ରତି ଆକ୍ରମଣ ଘଟଣାକୁ ଆହୁରି ରସସିକ୍ତ ଓ ଗୋଳିଆ କରିବାରେ ସହାୟକ ହୋଇଛି ।

ଏସବୁ ଭିତରେ ସବୁଠୁ ବେଶୀ କ୍ଷତି ହୋଇଛି କ୍ରିକେଟ୍‌ର, କ୍ରିକେଟ୍‌କୁ ନିଜ ଜୀବନ ପରି ପ୍ରେମ ଓ ବିଶ୍ୱାସର ରଜ୍ଜୁରେ ବାନ୍ଧି ରଖିଥିବା ଅଗଣିତ କ୍ରିକେଟ୍ ପ୍ରେମୀମାନଙ୍କର । ଠିକ୍ ସେଇ କାରଣରୁ ପାକିସ୍ତାନର ଭୂତପୂର୍ବ କ୍ରିକେଟ ତାରକା ଇମ୍ରାନ୍ ଖାଁ ଏଇ ମ୍ୟାଚ ଫିକ୍ସିଂରେ ସଂପୃକ୍ତ ଥିବା ଖେଳାଳିମାନଙ୍କୁ ଦଣ୍ଡିତ ନକରିବା ଲାଗି ମତ ପୋଷଣ କରନ୍ତି । ତାଙ୍କ ମତରେ ଏହାଦ୍ୱାରା କ୍ରିକେଟ ଖେଳର ହିଁ ସବୁଠୁ ବେଶୀ କ୍ଷତି ହେବ । ଏକଦା 'ବଲ୍ ଟ୍ୟାମ୍ପରିଂ' ଭଳି ବିବାଦ ପାଇଁ ଚର୍ଚ୍ଚିତ ହୋଇଥିବା ଇମ୍ରାନ୍ କ୍ରିକେଟ୍ ଜଗତରେ ତାଙ୍କର ସଚ୍ଚୋଟତା ପାଇଁ ବେଶ୍ ପରିଚିତ । ଉଦାହରଣସ୍ୱରୂପ ଗୋଟିଏ ଘଟଣାକୁ ଏଠି ନିଆଯାଇପାରେ : ଏକଦା ପାକିସ୍ତାନ ସହ ୱେଷ୍ଟ ଇଣ୍ଡିଜ୍ ଖେଳୁଥିବା ବେଳେ ଇମ୍ରାନ୍ ଅନେକ ଉଇକେଟ୍ ନେଇ ସାରିଥା'ନ୍ତି । ସେଦିନ ସଂଧ୍ୟାରେ ଓମର୍ କ୍ୟୁରେସୀଙ୍କ ସହ ରାତ୍ରି ଭୋଜନ ପରେ ଇମ୍ରାନ୍ ସେଦିନ ଖେଳର ବିଶେଷ ଅଂଶ ଟେଲିଭିଜନରୁ ଦେଖିବାକୁ ଚାହିଁଲେ । କାରଣ ସେଦିନ ସେ ଗୋଟିଏ ଉଇକେଟ ଏକ ସନ୍ଦିଗ୍ଧ ଏଲ୍.ବି. ଡବ୍ଲୁ ଦ୍ୱାରା ହାସଲ କରିଛନ୍ତି ବୋଲି ତାଙ୍କର ମନେ ହେଲା ।

: ଯଦି ତୁମର ସନ୍ଦେହ ସତ ହୁଏ, ତେବେ କ'ଣ କରିବ ? କ୍ୟୁରେସି ଇମ୍ରାନ୍‌ଙ୍କୁ ପଚାରିଲେ ।

: ମୁଁ ବ୍ୟାଟ୍‌ସମ୍ୟାନ୍‌ଙ୍କୁ ତାଙ୍କର ଦୁର୍ଭାଗ୍ୟ ବୋଲି କହିବି ଏବଂ ତାଙ୍କଠୁଁ କ୍ଷମା ମାଗିବି ।'' ଇମ୍ରାନ୍ କହିଲେ ।

ଏବେ କ୍ରିକେଟ୍ ଆକାଶରୁ ଯେତେଦିନ ଯାଏ ସନ୍ଦେହର ବାଦଲ ଅପସରି ନଯାଇଛି, ସେତେଦିନ ଯାଏ ଏକଦିବସୀୟ କ୍ରିକେଟ ଖେଳକୁ ବନ୍ଦ ରଖିବା ପାଇଁ ପରାମର୍ଶ ଦେଇଛନ୍ତି ଇମ୍ରାନ୍ । ଅର୍ଥ ହିଁ ଅନର୍ଥର କାରଣ ହୋଇଛି । କ୍ରିକେଟ୍ ସହ ସଂପୃକ୍ତ ବିପୁଳ ଅର୍ଥ ହିଁ ଏତେ ସବୁ ଅପଯଶର ଚାବିକାଠି । ଅର୍ଥ ସହ ଭାରତୀୟ ରୁଗ୍ଣ ମାନସିକତାର ଏକ ଅହେତୁକ ତଥା ମୋହଗ୍ରସ୍ତ ସମ୍ପର୍କ ରହିଛି । ଆମର ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏହା ଏକ ଲଜ୍ଜାଜନକ ତଥା ଅବକ୍ଷୟମାନ ସାଂସ୍କୃତିକ ଉପହାର ମାତ୍ର । କୌଣସି କାରଣ ନଥାଇ ଆମେ ସେମାନଙ୍କୁ ଦେବତାର ଅବତାରରେ ଦେଖିବାକୁ ଚାହୁଁଛୁ । ଦେବତ୍ୱର ଭୂମିକାରେ ପ୍ରଥମେ ଥିଲେ ରାଜନୀତିଜ୍ଞମାନେ । ଦୁର୍ନୀତି ଏବଂ ଅପଯଶର ଶୀର୍ଷରେ ସେମାନେ ପହଞ୍ଚିବା ପରେ ଚିତ୍ର ତାରକାମାନଙ୍କୁ ଆମେ ଆମର ଆଦର୍ଶ ଭାବେ ଗ୍ରହଣ କରିନେଲୁ । କିନ୍ତୁ ଏହା ମଧ୍ୟ ବେଶୀଦିନ ତିଷ୍ଠି ରହିପାରିଲାନି । ତା' ପରେ ଏବେ ସେ ସ୍ଥାନ ନେଇଛନ୍ତି କ୍ରିକେଟ ଖେଳାଳିମାନେ । ଖେଳ ନୁହେଁ ପ୍ରଭୂତ ଅର୍ଥ ହିଁ ଏହାର ସବୁଠୁ ଆକର୍ଷଣୀୟ ଦିଗ । ସମସ୍ତ ନୀତି, ମୂଲ୍ୟବୋଧ ଓ ଦର୍ଶନ କେବଳ ନିଷ୍ଫଳ ଧ୍ୱନି ମାତ୍ର ।

ମାତ୍ର ଦୁଇ ଦଶନ୍ଧି ତଳେ ଏଇ ଖେଳକୁ ସବୁଠୁ ବେଶୀ ସମ୍ମାନ ମିଳିଥିଲା । ୧୯୮୦ ମସିହା ଅକ୍ଟୋବର ୫ ତାରିଖର 'ଦି ଅବଜରଭର' ପତ୍ରିକାରେ ସାକ୍ଷାତ୍ ଦେଇ ବ୍ରିଟିଶ୍ ନାଟ୍ୟକାର ହାରୋଲ୍ଡ ପିଣ୍ଟର କହିଥିଲେ: ସବୁଠୁ ମହାନ୍ ଜିନିଷ ଭାବେ କ୍ରିକେଟ ଖେଳକୁ ପୃଥିବୀ ବକ୍ଷରେ ଭଗବାନ ସୃଷ୍ଟି କରିଛନ୍ତି ବୋଲି ମୋର ବିଶ୍ୱାସ ହେଉଛି, ଲିଙ୍ଗ ସୃଷ୍ଟିଠାରୁ ମଧ୍ୟ ଏହା ମହାନ୍ ଯଦିଓ ଲିଙ୍ଗ ସୃଷ୍ଟି ଆଦୌ ଖରାପ କଥା ନୁହେଁ । (I tend to believe that Cricket is the greatest thing that God ever created on earth.... Certainly greater than sex, although sex is not too bad either.) ଅଥଚ କ୍ରିକେଟ୍‌ର ଏଇ ଔଜଲ୍ୟତା ଖୁବ୍ ଦ୍ରୁତ ଭାବରେ ନିଷ୍ପ୍ରଭ ହେବା ଆରମ୍ଭ କରିଛି ଏଇ କିଛି ଦିନ ମଧ୍ୟରେ ।

ଯେଉଁ ଖେଳାଳିମାନଙ୍କୁ ଆମେ ଭଗବାନ ସହ ତୁଳନା କରିଥିଲୁ, ଏବେ ସେମାନେ ଜଣେ ଜଣେ ଅପଦେବତା ବୋଲି ଜଣାପଡିଲାଣି । ପ୍ରକାରାନ୍ତରେ କ୍ରିକେଟ୍ ଆଉ ଭଦ୍ରଲୋକଙ୍କ ଖେଳ ହୋଇ ରହିନାହିଁ ବୋଲି ଧାରଣା ସୃଷ୍ଟି ହେଲାଣି । ତାହାହିଁ ସମସ୍ତଙ୍କୁ ବାଧୁଛି ।

*ଅନୁପମ ଭାରତ ୫.୬.୨୦୦୦*

# ଚାଣକ୍ୟଙ୍କ ମୃତ୍ୟୁ

କିଛି ବର୍ଷ ତଳେ ଏୟାର ଇଣ୍ଡିଆ କମ୍ପାନୀର ଏକ ବିମାନକୁ ନାଇଜେରିଆ ସରକାର ତାଙ୍କ ଦେଶରେ ବେଆଇନ ଭାବେ ଅଟକାଇ ରଖିଥିଲେ । ବାଧ୍ୟ ହୋଇ ଏୟାର ଇଣ୍ଡିଆ କର୍ତ୍ତୃପକ୍ଷ ନାଇଜେରିଆର ଉଚ୍ଚନ୍ୟାୟାଳୟର ଆଶ୍ରୟ ନେଲେ ବିମାନଟିକୁ ମୁକୁଳାଇବା ପାଇଁ । ଉଚ୍ଚନ୍ୟାୟାଳୟ ବିଚାରାନ୍ତେ ବିମାନଟିକୁ କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତରଂ କରିବା ଲାଗି ତୁରନ୍ତ ନିର୍ଦ୍ଦେଶ ଦେଲେ । ସେଠାକାର ସରକାର ଏହି ରାୟ ବିରୁଦ୍ଧରେ ଉପରିସ୍ଥ ଅଦାଲତକୁ ଗଲେ, ମାତ୍ର ତାଙ୍କର ଆବେଦନ ସେଠାରେ ମଧ୍ୟ ଖାରଜ ହୋଇଗଲା । ଏସବୁ ପରେ ବି ନାଇଜେରିଆ ସରକାର ବିମାନଟିକୁ ଫେରାଇଲେ ନାହିଁ । ଘଟଣାର କିଛିଦିନ ପରେ ସେଠାକାର ସରକାର ଏହି ସ୍ୱତନ୍ତ୍ର ଘୋଷଣାନାମାରେ ଉକ୍ତ କେଶ୍‌ଟିକୁ ସ୍ୱତନ୍ତ୍ର ସାମରିକ ଅଦାଲତରେ ବିଚାର କରିବା ଲାଗି ନିର୍ଦ୍ଦେଶ ଦେଲେ । ପରବର୍ତ୍ତୀ ଘଟଣା ଯାହା ହେଉନା କାହିଁକି, ଏଥିରୁ ଗୋଟାଏ ନିଷ୍କର୍ଷରେ ଆମେ ପଯଞ୍ଚି ପାରିବା ଯେ ସେଠାକାର ସରକାରଙ୍କର ଆଇନ୍‌କାନୁନ୍ ପ୍ରତି କୌଣସି ଶ୍ରଦ୍ଧା ଅଥବା ସମ୍ମାନ ହିଁ ନଥିଲା । କେବଳ ନାଇଜେରିଆର ସରକାର କାହିଁକି, ଭାରତ ସରକାରଙ୍କର ମଧ୍ୟ ଦେଶର ଆଇନ୍ କାନୁନ୍ ପ୍ରତି ଶ୍ରଦ୍ଧା ଓ ସମ୍ମାନ ନଥିବାର ନଜିର୍ ଆମେ ଇତିହାସ ପୃଷ୍ଠାରୁ ପଢ଼ି ପାରିବା । ଆମ ସମ୍ବିଧାନର ଏକୋଇଶି ଧାରା ଦ୍ୱାରା ପ୍ରଦତ୍ତ ଜୀବନ ଓ ସ୍ୱାଧୀନତା ପ୍ରତି ଥିବା ମୌଳିକ ଅଧିକାରକୁ ଆପଦକାଳୀନ ପରିସ୍ଥିତି ସମୟରେ ବାତିଲ୍ କରିଦିଆ ଯାଇଥିଲା । କୌଣସି ବ୍ୟକ୍ତିକୁ ହାତକଡି ଲଗାଇ ଜେଲ୍‌କୁ ପଠାଇବାବେଳେ କୌଣସି ପୋଲିସ୍ ଅଫିସର ଅଦାଲତକୁ ଏହାର କାରଣ ଦର୍ଶାଇବାକୁ ବାଧ୍ୟ ନୁହଁନ୍ତି ବୋଲି ତତ୍କାଳୀନ ସରକାର ଆଇନ ପ୍ରଣୟନ ମଧ୍ୟ କରିଥିଲେ । ମାତ୍ର ଉଚ୍ଚ ନ୍ୟାୟାଳୟମାନଙ୍କର ମାନ୍ୟବର ବିଚାରପତିମାନେ ଅଟକବନ୍ଦୀ ଥିବା ଅନେକ ବ୍ୟକ୍ତିଙ୍କୁ ଖଲାସ୍ କରିଦେଇଥିଲେ, କାରଣ ବନ୍ଦୀ କରାଯାଇଥିବା ବ୍ୟକ୍ତିମାନଙ୍କ ଭିତରେ ଅନେକ ନିର୍ଦ୍ଦୋଷ ବ୍ୟକ୍ତ ଏବଂ ବ୍ୟକ୍ତିଗତ ଆକ୍ରୋଶର ଶିକାର ହୋଇଥିବା ନିରୀହ ନାଗରିକ ଥିଲେ ।

ପ୍ରସଙ୍ଗକ୍ରମେ ଆମେ ଆଇନ ବ୍ୟବସ୍ଥାର ଅତୀତ, ବର୍ତ୍ତମାନ୍ ଓ ଭବିଷ୍ୟତ ସମ୍ପର୍କରେ କିଛି ଆଲୋକପାତ କରିପାରିବା । ବିଶ୍ୱର ବିଭିନ୍ନ ଦେଶରେ ଥିବା ଆଇନ ବ୍ୟବସ୍ଥା ସମ୍ପର୍କରେ ଅନୁଧ୍ୟାନ କଲେ ଜଣାଯିବ ଯେ ଆଇନକୁ ବ୍ୟବସାୟୀକରଣ କରିବାରେ ଆମେରିକାର ଓକିଲମାନେ ସବୁଠୁ ଆଗରେ । ଭୋପାଳ ଗ୍ୟାସ୍ ଦୁର୍ଘଟଣା ସମୟରେ ସେଠାକାର

ଓକିଲମାନେ ପଙ୍ଗପାଳ ଭଳି ଯେପରି ଭୋପାଳରେ ଡେରା ପକାଇଥିଲେ ସେଥିରୁ ଏକଥା ସ୍ପଷ୍ଟ ହୋଇଛି । ଆଇନ ବ୍ୟବସ୍ଥାକୁ ବ୍ୟବସାୟରେ ପରିଣତ କରିବାରେ ଭାରତର ସ୍ଥାନ ବିଶ୍ୱରେ ଦ୍ୱିତୀୟ ।

ଦୁଃଖଦ ବିଷୟ ହେଉଛି, ଭାରତର ଆଇନ ବିଦ୍ୟାଳୟମାନେ ନୀତିଗତ ଦୃଷ୍ଟିରୁ ନିରକ୍ଷରଙ୍କୁ ହିଁ ସୃଷ୍ଟି କରିଛି । ଫଳତଃ ଆଇନ ବ୍ୟବସାୟର ମାନ ହ୍ରାସ ହେବାକୁ ବାଧ୍ୟ । ସେଇଥିପାଇଁ ଲୋକପ୍ରିୟ ପ୍ରବାଦ ରହିଛି: 'ଯାହାର ନାହିଁ ଅନ୍ୟଗତି, ସିଏ କରଇ ଓକିଲାତି, ରାଜନୀତି ଓ ହୋମିଓପ୍ୟାଥି' । ଭାରତର ଜାତୀୟ ଆୟର ଏକଦଶମିକ ପାଞ୍ଚ ଭାଗ ଆଇନ ବ୍ୟବସ୍ଥା ପାଇଁ ଖର୍ଚ୍ଚ ହୁଏ ଯାହା ପ୍ରାୟତଃ ଆମେରିକା ସରକାରଙ୍କ ସହ ସମାନୁପାତିକ । ଆମେରିକାରେ ସଂପ୍ରତି ସାତ ଲକ୍ଷ ବ୍ୟକ୍ତି ଓକିଲାତି କରୁଥିବା ସମୟରେ ଭାରତରେ ଓକିଲଙ୍କ ସଂଖ୍ୟା ପ୍ରାୟ ତିନିଲକ୍ଷ ଅଟେ । ଏ ଦୃଷ୍ଟିରୁ ଦେଖିଲେ ଜାପାନ୍‌ରେ ମାତ୍ର ଚଉଦ ହଜାର ବ୍ୟକ୍ତି ଓକିଲାତି କରୁଛନ୍ତି ବୋଲି ଏକ ସର୍ଭେରୁ ଜଣାପଡିଛି । କିଛି ବର୍ଷ ତଳେ ଜାପାନରେ ତିରିଶ ହଜାର ପରୀକ୍ଷାର୍ଥୀ ଓକିଲାତି ପରୀକ୍ଷାରେ ବସିଥିଲେ, ମାତ୍ର ସେମାନଙ୍କ ଭିତରୁ ଉତ୍ତୀର୍ଣ୍ଣ ହୋଇଥିଲେ ଚାରିଶହ ପଞ୍ଚସ୍ତରୀ ଜଣ । କିନ୍ତୁ ଆମ ଦେଶରେ ଆଦୌ ଆଇନ ମହାବିଦ୍ୟାଳୟକୁ ନଯାଇ ପରୀକ୍ଷା ହଲ୍‌ରେ ବସି, ଓକିଲାତି ପାସ୍ କରିଥିବାର ପ୍ରମାଣପତ୍ର ପାଇଥିବା ବ୍ୟକ୍ତିଙ୍କ ସଂଖ୍ୟାର କଳନା କରିବା ଅସମ୍ଭବ । ଜାପାନରେ ଅଧିକାଂଶ ବିବାଦ ଅଦାଲତ ବାହାରେ ସମାଧାନ ହେଉଥିବା ବେଳେ ଆମ ଦେଶରେ ଛୋଟ ଛୋଟ ସମସ୍ୟା ବା ବିବାଦର ସମାଧାନ ପାଇଁ ଅଦାଲତର ଦରଜାରେ କରାଘାତ କରିବାକୁ ପଡେ । ଓକିଲଙ୍କ ହାତ ଚିକ୍କଣ କରିବାକୁ ହୁଏ । ସେଇଥିପାଇଁ ତ କୁହାଯାଏ : ଯେପର୍ଯ୍ୟନ୍ତ ତାଙ୍କୁ ପାଉଣା ନ ଦିଆଯାଇଛି, ଜଣେ ଓକିଲଙ୍କର ମତାମତର କିଛି ମୂଲ୍ୟ ନାହିଁ । ଜେରେମି ବେନ୍ଥାମ୍ ନିଜେ ଜଣେ ଓକିଲ । ମାତ୍ର ନିଜ ବୃତ୍ତିକୁ ସମାଲୋଚନା କରି ସେ କହିଥିଲେ : କେବଳ ଓକିଲକୁ ଛାଡି ଦେଲେ ଆଇନକାନୁନ୍ ବିଷୟରେ ଅଜ୍ଞ ଥିବା କୌଣସି ବ୍ୟକ୍ତିଙ୍କୁ କ୍ଷମା କରାଯାଏନା ।

କିନ୍ତୁ ଏ କଥାଟି ସବୁବେଳେ ସତ ନୁହେଁ । ଏବେ ଗୋଟିଏ ଘଟଣା ଘଟିଛି ଯାହା ସ୍ପଷ୍ଟ କରିଦିଏ ଯେ, ଆମ ବୁଦ୍ଧିଜୀବୀ ଓକିଲମାନେ ସରକାରୀ ଅବହେଳାକୁ ବରଦାସ୍ତ କରନ୍ତି ନାହିଁ । କିଛି ଦିନ ପୂର୍ବେ କଟକ ସହରର ବିପର୍ଯ୍ୟସ୍ତ ପରିମଳ ବ୍ୟବସ୍ଥା ଓ ପ୍ରଶାସନିକ ସ୍ଥାଣୁତା ବିରୁଦ୍ଧରେ କେତେଜଣ ଓକିଲ ଓଡିଶା ଉଚ୍ଚନ୍ୟାୟାଳୟରେ ଜନସ୍ୱାର୍ଥ ମାମଲା ସମ୍ବନ୍ଧୀୟ ଆବେଦନ କଲେ ।

ଏହି ମାମଲାର ଶୁଣାଣି କରି ମୁଖ୍ୟ ବିଚାରପତି ସହରର ସଂପୃକ୍ତ ପ୍ରଶାସନ ମୁଖ୍ୟଙ୍କୁ କେବଳ କଟୁ ସମାଲୋଚନା କଲେ ନାହିଁ, ବରଂ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ସହରରେ ବସବାସ କରୁଥିବା ଟିକସଦାତାଙ୍କ ସୁବିଧା ନିମନ୍ତେ ଆଲୋକ ଓ ପରିମଳ ଆଦି ବ୍ୟବସ୍ଥାକୁ

ସୁଧାରିବା ପାଇଁ ନିର୍ଦ୍ଦେଶ ଦେଲେ ।

ଓଡିଶା ଏକ ଦରିଦ୍ର ରାଜ୍ୟ ବୋଲି ଭାରତର ଅନ୍ୟ ରାଜ୍ୟବାସୀଙ୍କର ପ୍ରାୟତଃ ଧାରଣା, ମାତ୍ର ସେ ଧାରଣାକୁ ସ୍ୱୀକାର ନ କରି ଏକଦା ପ୍ରଧାନମନ୍ତ୍ରୀ ନେହେରୁ ଓଡିଶାବାସୀଙ୍କୁ 'ବିତ୍ତ'ରେ ଗରିବ ହେଲେ ବି 'ଚିତ୍ତ'ରେ ଗରିବ ନୁହଁନ୍ତି ବୋଲି ଅଭିହିତ କରିଥିଲେ । ବାସ୍ତବିକ କୌଣସି ଦେଶକୁ ତା'ର ସମୁଦାୟ ଜାତୀୟ ସଂପଦର ମାପକାଠିରେ ଧନୀ ବୋଲି ପ୍ରମାଣିତ କରିବା ଅପେକ୍ଷା ଏବେ ସେଠାରେ ବସବାସ କରୁଥିବା ନାଗରିକମାନଙ୍କ ଜୀବନ ଯାପନ ପ୍ରଣାଳୀର ମାନ ନିର୍ଦ୍ଧାରଣରେ ହିଁ ସେ ଦେଶର ସମୃଦ୍ଧି ଅଥବା ପତନକୁ କଳନା କରିହେବ ।

ଆମର ବୁଦ୍ଧିଜୀବୀମାନେ କଟକ ସହରକୁ ହଜାରେ ବର୍ଷର ପ୍ରାଚୀନ ସହର ବୋଲି ଅଭିହିତ କରି ଉତ୍ସବ ପାଳନ କରୁଥିବା ଖବର ସମ୍ବାଦପତ୍ରରେ ପ୍ରକାଶ ପାଉଛି । ଅଥଚ ଏଇ ସାଂସ୍କୃତିକ ସହରରେ ବାସ କରୁଥିବା ନାଗରିକମାନେ କେଉଁ ଦୁଃସ୍ଥିତିରେ ଜୀବନ ବିତାନ୍ତି କେବଳ ଅନୁଭବୀମାନେ ହିଁ କହିପାରିବେ । ଏଠାରେ ପ୍ରଶାସନକୁ କେବଳ ଦାୟୀ କରି ଆମେ ଏ ସମସ୍ୟାରୁ ମୁକ୍ତ ହୋଇପାରିବା ନାହିଁ । ଏଠାରେ ରହୁଥିବା ଅନେକ ଅଧିବାସୀ କେବଳ ଉଦାସୀନ ନୁହଁନ୍ତି, ନିଜ ଘର ସାମ୍ନାରେ ଆବର୍ଜନା ପକାଇ ଦେଇ ଘରଟିକୁ ପରିଷ୍କାର ରଖିବାକୁ ଚେଷ୍ଟା କରନ୍ତି ।

ଏଠାରେ ପ୍ରଶାସନର ଅବହେଳା ଓ ବାସିନ୍ଦାମାନଙ୍କର ଉଦାସୀନତା ଓ ଦୁର୍ଗନ୍ଧ ପରିବେଶରେ ବଞ୍ଚିବାର ଅଭ୍ୟାସ ଦେଖିଲେ ମନେପଡେ ଚାଣକ୍ୟଙ୍କ ପ୍ରଣିତ ଅର୍ଥଶାସ୍ତ୍ର କଥା । ଘରର ଅଳିଆକୁ ପଦାରେ ପକାଇଲେ ଗୃହକର୍ତ୍ତାଙ୍କୁ ଗୋଟିଏ 'ପାନା' (ତତ୍‌କାଳୀନ ମୁଦ୍ରା)ର ଏକଅଷ୍ଟାଂଶ ଜୋରିମାନା ଦେବାର ବ୍ୟବସ୍ଥା ଏଇ ଶାସ୍ତ୍ରରେ ଉଲ୍ଲେଖ କରାଯାଇଥିଲା । ଯଦି ଏଇ ମଇଳା ରାଜରାସ୍ତାରେ କେହି ପକାଏ ତେବେ ତାଙ୍କୁ ଏହାର ଦୁଇଗୁଣ ଜୋରିମାନା ଦେବାକୁ ପଡୁଥିଲା । ସେହିପରି, ଯଦି କୌଣସି ବ୍ୟକ୍ତି ପବିତ୍ର ସ୍ଥାନ, ଜଳାଶୟ କିମ୍ବା କୌଣସି ରାଜକୀୟ ବସ୍ତୁ ସାମ୍ନାରେ ମଳ କିମ୍ବା ମୂତ୍ର ତ୍ୟାଗ କରୁଥିଲା ତେବେ 'ଏକ ପାନା' ଯାଏ ଜୋରିମାନାରେ ଦଣ୍ଡିତ ହେବାକୁ ପଡୁଥିଲା ।

ସେ ସବୁ କେବଳ ଇତିହାସର କଥା । ଏବଂ ଇତିହାସ ଏବେ ପରୀକ୍ଷାରେ ପାସ୍ କରିବା ଲାଗି ଏକ ବିଷୟବସ୍ତୁ ମାତ୍ର । ଚାଣକ୍ୟଙ୍କ ଶାସନପଦ୍ଧତି ଏବେ କଟକ ସହରର ପରିମଳ ବ୍ୟବସ୍ଥାକୁ ସୁଧାରିବା ପାଇଁ ପ୍ରୟୋଗ କରାଯାଇ ପାରିବନି । ସେ କଥା ଆମେ ଜାଣୁଁ । ତା'ର ପ୍ରଥମ ଓ ଶେଷ କାରଣ ହେଲା ଅନେକ ବର୍ଷ ତଳୁ ଚାଣକ୍ୟଙ୍କର ମୃତ୍ୟୁ ସମ୍ବାଦ ଆମମାନଙ୍କ ପାଖରେ ପହଞ୍ଚି ସାରିଛି ।

*ଅନୁପମ ଭାରତ ୧୯.୬.୨୦୦୦*

# ଝୁମ୍ପା

ସେମାନେ କୋଣାର୍କରେ ଦୁଇଟା ତିରିଶରେ ପହଞ୍ଚିଲେ । ରଥ ଆକୃତିର ମନ୍ଦିରଟି କଙ୍କଡା ପଥରରେ ତିଆରି ଗୋଟେ ପିରମିଡ୍ ସଦୃଶ ଢ଼ାଞ୍ଚା ଥିଲା । ଏହା, ଜୀବନର ପ୍ରମୁଖ ଶିଳ୍ପୀ ସୂର୍ଯ୍ୟ ଦେବତାଙ୍କୁ ସମର୍ପିତ ଥିଲା, ଯିଏ ଏଇ ଭଗ୍ନାବଶର ତିନୋଟି ପାର୍ଶ୍ୱକୁ ଆକାଶ ପଥରେ ଯାତ୍ରା ସମୟରେ ପ୍ରଦକ୍ଷିଣ କରୁଥିଲେ । ମୂଳଦୁଆର ଉତ୍ତର ଓ ଦକ୍ଷିଣ ପାର୍ଶ୍ୱରେ ଚବିଶିଟି ବୃହଦ୍ ଚକ ଖୋଦନ କରାଯାଇଥିଲା । ସାତଗୋଟି ଘୋଡାଙ୍କ ଦ୍ୱାରା ଏହାକୁ ଯେପରି ସ୍ୱର୍ଗ ଅଭିମୁଖେ ଟଣାଯାଉଥିଲା । ସେମାନେ ପାଖକୁ ଯିବା ମାତ୍ରେ, ମିଷ୍ଟର କାପାସୀ କହିଲେ ଯେ ମହାନ୍ ଗଙ୍ଗ ରାଜବଂଶର ରାଜାଙ୍କ ଦ୍ୱାରା ବାରଶହ ଶିଳ୍ପୀଙ୍କ ଉଦ୍ୟମରେ ଖ୍ରୀଷ୍ଟାବ୍ଦ ୧୨୪୩ ଏବଂ ୧୨୫୫ ମଧ୍ୟରେ ଏଇ ମନ୍ଦିର ନିର୍ମାଣ କରାଯାଇଥିଲା । ରାଜା ପ୍ରଥମ ନରସିଂହ ଦେବ ମୁସଲମାନ ସୈନ୍ୟ ବିରୁଦ୍ଧରେ ବିଜୟ ହାସଲ ପୂର୍ବକ ଏହାକୁ ଏକ ସ୍ମୃତିରକ୍ଷା ପାଇଁ ନିର୍ମାଣ କରିଥିଲେ ।

: ଏଇ ମନ୍ଦିର ପ୍ରାୟ ଶହେ ସତୁରୀ ଏକର ଜମି ଦଖଲ କରିଛି ବୋଲି କୁହାଯାଇଛି ।'' ତାଙ୍କ ବହିଟି ପଢୁ ପଢୁ ଶ୍ରୀଯୁକ୍ତ ଦାସ କହିଲେ ।

: ଏଇଟା ଗୋଟେ ମରୁଭୂମି ଭଳି ।'' ମନ୍ଦିର ବାହାର ବିସ୍ତୃତ ବାଲି ଉପରେ ଆଖି ଘୂରାଇ ଆଣୁ ଆଣୁ ରୋନି କହିଲା ।

: ଏଠାରୁ ଏକ ମାଇଲ ଉତ୍ତରରେ ଏକଦା ଚନ୍ଦ୍ରଭାଗା ନଦୀ ପ୍ରବାହିତ ହେଉଥିଲା ।'' ଇଞ୍ଜିନ୍ ବନ୍ଦ କରୁ କରୁ କାପାସୀ କହିଲେ ।

ଉପରଲିଖିତ ପଂକ୍ତିଗୁଡିକ ନିକଟରେ 'ପୁଲିଜର୍' ପୁରସ୍କାରପ୍ରାପ୍ତ ଲେଖିକା ଝୁମ୍ପା ଲାହିଡିଙ୍କ ଗପବହି 'ଦି ଇଣ୍ଟରପ୍ରିଟର୍ ଅଫ୍ ମାଲାଡିଜ୍'ର ଉକ୍ତ ନାମକରଣ ଥିବା ଗଳ୍ପଟିର କିୟଦଂଶ । ଶ୍ରୀମତୀ ଓ ଶ୍ରୀ ଦାସଙ୍କ 'ସାଣ୍ଡି ଭିଲା' ହୋଟେଲରୁ ବାହାରି ସପରିବାରେ କୋଣାର୍କ ମନ୍ଦିର ପରିଦର୍ଶନ ଓ ପରେପରେ ଖଣ୍ଡଗିରି ଓ ଉଦୟଗିରିରେ ପହଞ୍ଚି ସେଠାରେ ଥିବା ମାଙ୍କଡଙ୍କ ଦ୍ୱାରା ଯେପରି ଭାବେ ହଇରାଣ ହୋଇଛନ୍ତି ଏବଂ ମାଙ୍କଡର କବଳରୁ ତାଙ୍କର ଅବୈଧ ସନ୍ତାନ ବବିକୁ ଗାଡି ଚାଳକ କାପାସୀ ଯେପରି ଭାବେ ଉଦ୍ଧାର କରିଛି ତା'ର ଟିକିନିଖି ଚିତ୍ର ପ୍ରଦାନ କରିଛନ୍ତି ଲେଖିକା । ତେବେ ଏଇ ଗଳ୍ପଟିର ମୁଖ୍ୟ ଚରିତ୍ର ଭାବେ ଶ୍ରୀମତୀ ଦାସ ଏବଂ ଗାଡି ଚାଳକ ଶ୍ରୀ କାପାସୀଙ୍କ କଥୋପକଥନ ଏବଂ ଶ୍ରୀମତୀ ଦାସଙ୍କର

ଅବୈଧ ସନ୍ତାନ ବବିର ଜନ୍ମ ବୃତ୍ତାନ୍ତ ଓ ତଦ୍‌ଜନିତ ଗ୍ଲାନିରୁ ବଞ୍ଚିବା ପାଇଁ ଶ୍ରୀ କାପାସୀଙ୍କୁ କରିଥିବା ନିବେଦନ ହିଁ ଏଇ ଗଳ୍ପର ସବୁଠୁ ବଳିଷ୍ଠ ଦିଗ ।

ତାଙ୍କ ଗଳ୍ପ ସବୁ ପଢ଼ି ଏକଦା ସମାଲୋଚକ ଆମିଟାନ୍ କହିଥିଲେ: ଝୁମ୍ପା ଲାହିଡି ଏପରି ଜଣେ ଲେଖିକା ଯିଏ ତୁମକୁ ଅନ୍ୟଜଣେ ଲୋକକୁ ଦେଖୁ ଦେଖୁ କହିବା ଲାଗି ବାଧ୍ୟ କରିବ 'ଏଇଟା ପଢ଼' । ସେ ହେଉଛନ୍ତି ଜଣେ ଚମତ୍କାର ଗାଳ୍ପିକା ଯାହାଙ୍କର ନିର୍ଦ୍ଦିଷ୍ଟ ବକ୍ତବ୍ୟ ସହିତ ସୂକ୍ଷ୍ମାନୁଭବ ପାଇଁ ଗୋଟିଏ ଆଖି ଏବଂ ବ୍ୟଙ୍ଗୋକ୍ତି ପାଇଁ କାନଟିଏ ଅଛି । ମୁଁ ପଢ଼ିଥିବା ଭଲ ଗଳ୍ପକାରମାନଙ୍କ ଭିତରୁ ସେ ଜଣେ ।' (Jhumpa Lahiri is the kind of writer who makes you want to grab the next person you see and say 'Read this !' She is a dazzling storyteller with a distinctive voice, an eye for nuance. an ear for irony. She is one of the finest short story writers I have read.) ଭାରତୀୟ ବଂଶୋଦ୍ଭବ ଏଇ ଲେଖିକାଙ୍କ ଜନ୍ମ ଇଂଲଣ୍ଡରେ ଏବଂ ଲାଳନପାଳନ ରୋଡ୍‌ଦ୍ୱୀପ ଆମେରିକାରେ । ପ୍ରବାସୀ ଭାରତୀୟମାନଙ୍କ ଜୀବନଯାପନ, ସାଂସ୍କୃତିକ ଶୂନ୍ୟତା ତଥା ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ ସୀମାର ଅଭାବବୋଧ ତଥା ମାନସିକତା ହିଁ ଝୁମ୍ପାଙ୍କ ଗଳ୍ପମାନଙ୍କରେ ବେଶ୍ ଅନୁରଣିତ ହୋଇଛି । ନିଜର ଜନ୍ମିତ ଦେଶ ଓ ଜୀବିକା ପାଇଁ ଆଦରି ନେଇଥିବା ଅନ୍ୟ ଦେଶରେ ସେମାନଙ୍କର ପରିଚୟ ହେଉଛି 'ଆନ୍ତଃପ୍ରବାସୀ' । କେବଳ ଝୁମ୍ପା ନୁହଁନ୍ତି ସେ ଦୁଃଖରେ ଆକ୍ରାନ୍ତା ହୋଇଛନ୍ତି ବିଶିଷ୍ଟ ଲେଖକ ସଲମାନ୍ ରୁସ୍‌ଦୀ ଏବଂ ତ୍ରିନିଦାଦ୍‌ର ଭାରତୀୟ ବଂଶୋଦ୍ଭବ ବିଶିଷ୍ଟ ଲେଖକ ଭି.ଏସ୍. ନାଇପୁଲ । ଏବେବି ନିଜ ନିଜର ମୂଳ ଖୋଜିବାରେ ଏମାନେ ବ୍ୟସ୍ତ ।

ଦୀର୍ଘ ବାରବର୍ଷ ପରେ ଭାରତକୁ ଆସି ନିକଟରେ ସଲମାନ୍ ରୁସ୍‌ଦୀ ସ୍ୱୀକାର କରିଛନ୍ତି : ବିଗତ ଦଶକରେ ଅନେକ କ୍ଷତି ହୋଇଛି, ମାତ୍ର ଭାରତକୁ ସହଜରେ ପ୍ରତ୍ୟାବର୍ତ୍ତନ କରିବା ମୋ ପାଇଁ ସଂପୂର୍ଣ୍ଣ ମନସ୍ତାପ ଆଣିଛି ଯାହା ନଛୋଡବନ୍ଧା ମାନସିକ ଯନ୍ତ୍ରଣା କେବଳ । ମୋତେ ଲାଗେ ସତେଯେପରି ମୁଁ ମୋର ଗୋଟେ ଅଙ୍ଗ ହରେଇଛି ।'' ହୁଏତ ସେଇ କାରଣରୁ ନିଜର ଜନ୍ମସ୍ଥାନ ହିମାଚଳ ପ୍ରଦେଶର ସୋଲାନ୍ ସହରରେ ଥିବା ପୈତୃକ ଘର ଆନିସ୍ ଭିଲାରେ ଦୁଇଦିନ କଟାଇବା ପରେ ରୁସ୍‌ଦୀ କହିଛନ୍ତି: ମୋର ପରିବାର ଓ ମୁଁ ଏ ଘରଟିକୁ ବ୍ୟବହାର କରିବାକୁ ଚାହୁଁ ଅଥବା ଏହାକୁ ଲେଖକମାନଙ୍କ ରହଣି ସ୍ଥାନ ଭାବେ ରଖିବାକୁ ଚାହୁଁ । (My Family and I want to use it, or make it a Writers retreat) ଭିଟାମାଟିର ଆକର୍ଷଣ ତାଙ୍କୁ କେବଳ ଭାରତକୁ ନେଇ ଆସିନି, ବରଂ ୨୧ ବର୍ଷର ପୁଅ ଜଫର୍‌କୁ ଏଯାକେ ସିଏ ହିନ୍ଦୀ ଶିଖାଇ ପାରିନାହାଁନ୍ତି ବୋଲି ଦୁଃଖ ପ୍ରକାଶ କରିଛନ୍ତି । ଭାରତ ଫେରି ଆସିଥିବା ଆନନ୍ଦକୁ ପ୍ରକାଶ କରିବାକୁ ଯାଇ ସେ ତାଙ୍କ ବିଗତ

ଦିନର ଦୁଃଖ ଅବତାରଣା କରିଛନ୍ତି : 'ଏହା ମୋ ଜୀବନର ଏକ ବିରାଟ କ୍ଷତ ଥିଲା । ଏବେ ମୁଁ ଭାବୁଛି, ଏ କ୍ଷେତ ପୂରଣ ହୋଇପାରିବ ।' (It was a huge hole in my life. and now I hope it can be filled up)

ଯଦିଓ ଝୁମ୍ପା, ସଲମାନ୍ ରୁସ୍‌ଦୀ, ଭି.ଏସ୍. ନାଇପୁଲ, ମିଲନ୍ କୁନ୍ଦେରା, ରୋହିନ୍‌ଟନ୍ ମିସ୍ତ୍ରୀଙ୍କ ଚେର ଭାରତରେ ରହିଛି ତଥାପି ସେମାନେ ନିଜକୁ କେବଳ ଭାରତର ସୀମା ଭିତରେ ଆବଦ୍ଧ ରଖିବାକୁ ଚାହିଁ ନାହାଁନ୍ତି । କଲିକତା ବାସୀ ଝୁମ୍ପା 'ପୁଲିଜର୍' ପୁରସ୍କାର ପାଇଁ ଯେତେ ଖୁସି ହୁଅନ୍ତୁ ନା କାହିଁକି ଜଣେ ବଙ୍ଗାଳୀ ଅଥବା ଭାରତୀୟ ଭାବେ ସେ ଗର୍ବରେ ଆତ୍ମହରା ହୁଅନ୍ତି ନାହିଁ । ରୁସ୍‌ଦୀଙ୍କ ଦୁର୍ଦ୍ଦିନରେ ବ୍ରିଟିଶ୍ ସରକାର ଯେଉଁପ୍ରକାର ସହାୟତା ତାଙ୍କୁ ଦେଇଥିଲେ-ତାହା ବିଶ୍ୱର ଅଧିକାଂଶ ରାଷ୍ଟ୍ର ଏପରିକି ଭାରତ ପରି ଦେଶରେ ମଧ୍ୟ ବିରଳ । ଯଦିଓ ରୁସ୍‌ଦୀଙ୍କୁ ବ୍ରିଟିଶ୍ ଔପନ୍ୟାସିକ ଭାବେ ଚିତ୍ରଣ କରାଯାଏ ତଥାପି ରୁସ୍‌ଦୀ ନିଜେ ବ୍ରିଟିଶ୍ ଦେଶରେ ନିଜକୁ ଚେରହୀନ ମନେକରନ୍ତି ଏବଂ ଏଣିକି ବାକି ଜୀବନ ଆମେରିକାରେ କଟାଇବେ ବୋଲି ବିବୃତିମାନ ଦେଲେଣି । ଏ ସମ୍ପର୍କରେ ସଫେଇ ଦେବାକୁ ଯାଇ ରୁସ୍‌ଦୀ କୁହନ୍ତି-ମାନସିକ ସ୍ତରରେ କିଛି ବ୍ୟକ୍ତି କୌଣସି ନିର୍ଦ୍ଦିଷ୍ଟ ଭୂଖଣ୍ଡର ସୀମାରେ ଆବଦ୍ଧ ହେବାକୁ ଚାହାଁନ୍ତି ନାହିଁ । ଅବଶ୍ୟ ଏହାର ଏକ ଅର୍ଥନୈତିକ ଦିଗ ରହିଛି । ଅଧିକାଂଶ ବ୍ୟକ୍ତି ନିଜ ଭିଟାମାଟି କିମ୍ବା ଦେଶରୁ ଅନ୍ୟତ୍ର ଯିବା ପାଇଁ ଇଚ୍ଛା କଲେ ମଧ୍ୟ ସେମାନେ ସେ ସୁଯୋଗରୁ ବଞ୍ଚିତ ହୁଅନ୍ତି । ପ୍ରସଙ୍ଗକ୍ରମେ ଏଠି କୁହାଯାଇପାରେ କେବଳ ଇଂଲଣ୍ଡ ଦେଶରେ ଏବେ ଦୁଇଲକ୍ଷ ଭାରତୀୟ ବସବାସ କରୁଛନ୍ତି ଯେଉଁମାନଙ୍କ ସନ୍ତାନସନ୍ତତି ନିଜକୁ ଆଦୌ ଭାରତର ଗଣ୍ଡି ଭିତରେ ଆବଦ୍ଧ ନ ରଖି ବରଂ ବହୁଦେଶୀୟ (Multi rooting) ଜୀବନଯାପନରେ ବିଶ୍ୱାସ ରଖୁଛନ୍ତି । ଆମେରିକାରେ ରହୁଥିବା ଝୁମ୍ପା ସେଇ ବିଶ୍ୱାସରେ ଆଶା ରଖିଥିବା ଲେଖିକାଙ୍କ ଭିତରୁ ଜଣେ । ଯଦିଓ ଏଇ ପ୍ରବାସୀ ଲେଖକମାନଙ୍କର ଅଭିଜ୍ଞତା ଓ ଅନୁଭବର ଦିଗ୍‌ବଳୟଟି ଖୁବ୍ ବିସ୍ତୃତ ତେବେ ନିଜ ଭିଟାମାଟିରେ ରହି ନିଜ ଚେର ସହ ଅଭିନ୍ନ ସମ୍ପର୍କ ରଖି ଖୁବ୍ ଉଚ୍ଚକୋଟରୀର ସାହିତ୍ୟ ସୃଷ୍ଟି କରିହେବ । ଉଦାହରଣସ୍ୱରୂପ ଆମେ ଓଡ଼ିଶାର ଗୋପୀନାଥ ମହାନ୍ତି ଏବଂ ଆମେରିକାର ଦକ୍ଷିଣ ରାଷ୍ଟ୍ରକୁ ବିଶ୍ୱବିଦିତ କରିଥିବା ବିଶିଷ୍ଟ ଲେଖକ ଉଇଲିୟମ୍ ଫକନର୍‌ଙ୍କୁ ନେଇପାରିବା ।

*ଅନୁପମ ଭାରତ ୧୨.୬.୨୦୦୦*

# ଜନାର୍ଦ୍ଦନ ବଞ୍ଚିଛି !

ପ୍ରାୟ ଦୁଇଶନ୍ଧି ତଳେ ନୂଆ କରି ଚାକିରି ଜୀବନ ଆରମ୍ଭ କରିବା ବେଳେ ଜନାର୍ଦ୍ଦନ ରାଓ ସହ ବନ୍ଧୁତା ଆରମ୍ଭ ହୋଇଥିଲା । ଶ୍ୟାମଳ, ପତଳା ତଥା ପିଲାଳିଆ ଚେହେରାକୁ ବେଖାତିର୍ କରି ଜନାର୍ଦ୍ଦନର ମୁଖମଣ୍ଡଳକୁ ସର୍ବଦା ପ୍ରଶାସନିକ ଅହଂକାରଟି ଆକ୍ରାନ୍ତ କରି ରଖୁଥିଲା । ଏପରି ଏକ କିଶୋର ସୁଲଭ ଚେହେରା ଭିତରେ କ୍ଷମତାଜନିତ ତୁଚ୍ଛା ଆସ୍ଫାଳନ ଯୋଗୁଁ ଖୁବ୍ ଦୟନୀୟ ଦିଶୁଥିଲା ସେ । ତା'ର ବ୍ୟକ୍ତିତ୍ୱଟି କ'ଣ ପାଇଁ ଅନ୍ୟାନ୍ୟ ସହକର୍ମୀଙ୍କଠାରୁ ଯେ ନିଆରା ହେବାକୁ ଚେଷ୍ଟା କରୁଥିଲା-ତା'ର ତର୍ଜମା ଆରମ୍ଭ କରିବା ଆଗରୁ ଜନାର୍ଦ୍ଦନ ସହ ତର୍କ ଏବଂ ପ୍ରକାରାନ୍ତରେ କଳି ହେଉଥିଲା ଏ ଲେଖକର ।

ଜନାର୍ଦ୍ଦନ କେବଳ ମୋର ସହକର୍ମୀ ନ ଥିଲା, କାଳକ୍ରମେ ଦୁହେଁ ଗୋଟିଏ ଘରଭଡା ନେଇ ରହୁଥିଲୁ, ଖାଉଥିଲୁ, ଗପୁଥିଲୁ ଏବଂ କଳି ବି କରୁଥିଲୁ । କଳି କରିବା ଲାଗି କୌଣସି ବିଷୟବସ୍ତୁ ଅପେକ୍ଷା, କୌଣସି ବାହାନାର ବେଶୀ ଆବଶ୍ୟକତା ଥିଲା ଯେପରି । ଏସବୁ ସତ୍ତ୍ୱେ ଆମେ ଦୁହେଁ ପରସ୍ପରକୁ ଭଲ ପାଉଥିଲୁ ।

ଭଲ ପାଇବାର କାରଣଟି ଥିଲା 'ବେଞ୍ଜୁ' । ଜନାର୍ଦ୍ଦନ ଜଣେ ଭଲ ବେଞ୍ଜୁ ବାଦକ ଥିଲା । କଳି କରିବା ପରେ ଅନେକ ସମୟ ଯାଏ ସେ ପ୍ରାୟତଃ ମୂକ ପାଲଟି ଯାଉଥିଲା ଏବଂ ପରେପରେ ତା'ର ଆଙ୍ଗୁଳିର କାଉଁରୀ ସ୍ପର୍ଶରେ ବେଞ୍ଜୁଟିରୁ ଝରି ପଡୁଥିଲା ସମ୍ମୋହନ ସଙ୍ଗୀତର ମୂର୍ଚ୍ଛନା । ଯେଉଁ ପରିବେଶ କିଛି ସମୟ ଆଗରୁ ମନେହେଉଥିଲା ଖୁବ୍ ଅସହ୍ୟ, ହଠାତ୍ ସେଠି ସକାଳର ପକ୍ଷୀମାନଙ୍କ କିଚିରିମିଚିର ପରି ପରିବେଶଟି ବେଶ୍ ଆନନ୍ଦଦାୟକ ହୋଇ ଯାଉଥିଲା । କିଛି ସମୟ ଧରି ଏଇ ସଙ୍ଗୀତର ଅଲୌକିକତାରେ ବୁଡି ରହିବା ପରେ ଜନାର୍ଦ୍ଦନ ପୁନଶ୍ଚ ସ୍ୱାଭାବିକ ଅବସ୍ଥାକୁ ଫେରି ଆସୁଥବଲା । ବନ୍ଧୁତାର ବୁଢ଼ିଆଣୀ ଜାଲ ବୁଣିବାରେ ବ୍ୟସ୍ତ ରହୁଥିଲା ।

ଅନେକବାର ଏଇ ଘଟଣାମାନଙ୍କର ପୁନରାବୃତ୍ତି ଘଟୁଥିଲା ଆମ ଦୁହିଁଙ୍କ ଭିତରେ । ଜନାର୍ଦ୍ଦନ ବି କମ୍ ଉଚ୍ଚାଭିଳାଷୀ ନଥିଲା । ସେଇଥିପାଇଁ ତ ତାକୁ ମହାରାଷ୍ଟ୍ରର ଏକ କାଗଜ କଳରେ କେମିଷ୍ଟ ଚାକିରିଟାଏ ମିଳିଗଲା ମୋଟା ଅଙ୍କର ଦରମାରେ । ଅଗତ୍ୟା ସେ ଆମ ସହ କରୁଥିବା ଚାକିରିରୁ ଇସ୍ତଫା ଦେଇଦେଲା ଦିନେ । ଏଠି ହୁଏତ ତା'ର ଦାନା ପୂରି ଯାଇଥିଲା । ଆମମାନଙ୍କ ଗହଣରୁ ଚାକିରି ଜାଗାକୁ ଯିବା ଆଗରୁ ଛୋଟକାଟିଆ ବିଦାୟ

ସମ୍ବର୍ଦ୍ଧନା ଦେବାକୁ ହେଲା, ଯେଉଁଥିରେ ମୋତେ ତା' ସମ୍ପର୍କରେ ଦୁଇପଦ କହିବାକୁ ବାଧ୍ୟ କରାଗଲା । ସବୁ ସ୍ମୃତିକୁ ପଛରେ ପକାଇ ଜନାର୍ଦ୍ଦନ ତା'ର ନୂତନ କାର୍ଯ୍ୟସ୍ଥଳୀ ଅଭିମୁଖେ ଯାତ୍ରା ଆରମ୍ଭ କଲା । ବିଜୟନଗରମ୍‌ଠାରୁ ତା'ର ଟିକେଟ ରିଜର୍ଭ ହୋଇସାରିଥିଲା ଦୁଇଦିନ ଆଗରୁ । ମହାରାଷ୍ଟ୍ର ଯିବାପାଇଁ ସେ ଏଥର ଦକ୍ଷିଣୀ ଏକ୍ସପ୍ରେସ୍‌ରେ ଯାଇ ବସିପଡିଲା ନିର୍ଦ୍ଧାରିତ ସିଟ୍‌ରେ । ସେଇଦିନ ଅଚାନକ ମୂଷଳ ଧାରାରେ ବର୍ଷା ଆରମ୍ଭ ହେଲା । ଲୋକେ ଘରୁ ବାହାରିବା ସମ୍ଭବ ନଥିଲା । ଜନାର୍ଦ୍ଦନର ଗାଡି ହୁଇସିଲ୍ ମାରି ତା'ର ଗନ୍ତବ୍ୟ ପଥରେ ଆଗେଇବାକୁ ଲାଗିଲା । ରାତି ସାରା ବର୍ଷା ଚାଲିଥାଏ, ଗାଡି ବି । ଭୋର୍ ହେବାକୁ ଅଳ୍ପ ସମୟ ବାକି ଥାଏ । କୌଣସି ଏକ ନଦୀ ଉପର ପୋଲରେ ତା'ର ଗାଡିଟି ଯାଉଥିବା ବେଳେ ଅଚାନକ ବନ୍ୟାଜଳର ପତନ ଓ ସ୍ରୋତ ବଢ଼ିବା ଆରମ୍ଭ କଲା । ଏହା ଏତେ ଦ୍ରୁତ ଥିଲା ଯେ ଠିକ୍ ପୋଲ ମଝିରେ ବନ୍ୟା ଜଳ ଜନାର୍ଦ୍ଦନର ବଗି ଭିତରକୁ ପଶିଲା ଏବଂ ବଗିରେ ସକାଳର ଶୀତୁଆ ପାଗର ଆରାମ ଉପଭୋଗ କରୁଥିବା ଅନେକ ଯାତ୍ରୀ ସେଇ ସ୍ରୋତରେ ଭାସିଯାଇ ମୃତ୍ୟୁବରଣ କଲେ । ପରଦିନ ପ୍ରକାଶିତ ସ୍ଥାନୀୟ ଏବଂ ଇଂରାଜୀ ଦୈନିକ ଖବରକାଗଜମାନଙ୍କରେ ମୃତ ବ୍ୟକ୍ତିମାନଙ୍କ ତାଲିକା ବାହାରିଲା । ଆମେମାନେ ଉତ୍ସୁକତାର ସହ ସେଇ ଖବରକାଗଜମାନଙ୍କ ପୃଷ୍ଠା ଓଲଟାଇଲୁ । ମୋତେ ଏବଂ ଅନ୍ୟାନ୍ୟ ସହକର୍ମୀଙ୍କୁ ହତବାକ୍ କରିଦେଲା ସମ୍ବାଦଟି । ମୃତ୍ୟୁବରଣ କରିଥିବା ରେଳଯାତ୍ରୀଙ୍କ ତାଲିକାରେ ଜନାର୍ଦ୍ଦନର ନାମ ଏବଂ ବୟସ ଉଲ୍ଲେଖ କରାଯାଇଥିଲା । ସାରା ଦିନ ଅଫିସ୍‌ରେ ଜନାର୍ଦ୍ଦନ ଓ ତା'ର ମୃତ୍ୟୁସମ୍ବାଦ ଚର୍ଚ୍ଚା ହେଲା । ବିଷାଦର କଳାମେଘ ସବୁରି ମୁଖାକାଶକୁ ଢ଼ାଙ୍କି ଦେଇଥିଲା ଯେପରି । କିଛି ଅନ୍ତରଙ୍ଗ ବନ୍ଧୁ ଶୋକସଭାର ଆୟୋଜନ କଲେ । ସଭାରେ ଜନାର୍ଦ୍ଦନର ଗୁଣ କୀର୍ତ୍ତନ କରାଗଲା । ମୃତ୍ୟୁ ପରେ ସବୁ ଲୋକଙ୍କର ଗୁଣଗୁଡିକ ତରାଟ ଫୁଲ ପରି ଫୁଟି ଉଠନ୍ତି ପ୍ରିୟ ପରିଜନଙ୍କ ମନ ବଗିଚାରେ । ତାହା ହିଁ ହେଲା ଏଠି । ପରେପରେ ତା'ର ଆତ୍ମାର ସଦ୍‌ଗତି ନିମନ୍ତେ ନିରବ ପ୍ରାର୍ଥନା ମଧ୍ୟ ହେଲା ।

: ମୋ ମନରେ ଗୋଟେ କଥା ବାରମ୍ବାର ଆସୁଛି ।'' ନିରବତା ଭାଙ୍ଗି ଜଣେ ବରିଷ୍ଠ ଅଧିକାରୀ କଥାଟି ଆରମ୍ଭ କଲେ ।

: ଆମେ ଗୋଟେ ଟେଲିଗ୍ରାମ ପଠେଇଲେ କେମିତି ହୁଅନ୍ତା ?'' ସେ କହିଲେ ଶୋକ ସଭାରେ ଉପସ୍ଥିତ ବନ୍ଧୁମାନଙ୍କୁ ।

: କୋଉଠିକି ପଠେଇବେ ?'' ଆଉ ଜଣେ ପ୍ରଶ୍ନ କଲା ।

: ମହାରାଷ୍ଟ୍ର କାଗଜ କଳକୁ ।''

: କ'ଣ ପାଇଁ ?'' ଆଉ ଜଣଙ୍କର ଜିଜ୍ଞାସା ।

: ମୋ ମନ କହୁଛି-ସେ ବଞ୍ଚିଛି । ବିଜୟନଗରମ୍‌ରେ ତା' ସହ ମୋର ଭେଟ ହୋଇଥିଲା । ମୁଁ ତାକୁ ସେଠି ଶେଷ ବିଦାୟ ଦେଇଥିଲି ।'' ଅଧିକାରୀ ଜଣକ ପ୍ରବଣତାର ଶିକାର ହୋଇଯାଇଥିଲେ ଯେପରି, ହେବା ବି ସ୍ୱାଭାବିକ୍ ।

ସେଦିନର ସଭା ସେଇଠି ଭାଙ୍ଗି ଯାଇଥିଲା, ମାତ୍ର ଏହାର ଚାରିଦିନ ପରେ ହଠାତ୍ କଥାଟା ବିଜୁଳି ବେଗରେ ପ୍ରଚାରିତ ହୋଇଗଲା କାରଖାନାର କୋଣ ଅନୁକୋଣରେ : ଜନାର୍ଦ୍ଦନ ବଞ୍ଚିଛି... । ଅବିଶ୍ୱାସ ଓ ଆନନ୍ଦର କକ୍‌ଟେଲ୍ ଅନୁଭବରେ ଆକ୍ରାନ୍ତ ସମସ୍ତେ । ଶୋକସଭା ପରେ ସେଦିନ ବରିଷ୍ଠ ଅଧିକାରୀ ମହାରାଷ୍ଟ୍ରର କାଗଜକଳକୁ ଜନାର୍ଦ୍ଦନ ସମ୍ପର୍କରେ ତାରବାର୍ତ୍ତାଟିଏ ପଠାଇ ପ୍ରତ୍ୟୁତ୍ତରରେ ଜାଣିବାକୁ ପାଇଥିଲେ : ଜନାର୍ଦ୍ଦନ ବଞ୍ଚିଛି । ପରେ ଅବଶ୍ୟ ଅନୁରୋଧକ୍ରମେ ଜନାର୍ଦ୍ଦନ ଦୁଇଦିନ ପାଇଁ ତା'ର ପୁରୁଣା କମ୍ପାନିକୁ ଆସି ଆମମାନଙ୍କ ସହ କଟାଇଥିଲା । ରେଳରେ ଯାଉଥିବା ବେଳେ ହଠାତ୍ ବଢ଼ିପାଣିର ପ୍ରବଳ ସ୍ରୋତରେ ସେ କିପରି ତା'ର ଡବାରୁ ଭାସି ଯାଉଥିବା ବେଳେ ଜଣେ ପଞ୍ଜାବୀ ସୈନିକଙ୍କ ଦ୍ୱାରା ଉଦ୍ଧାର ପାଇଥିଲା ତା'ର ବିଶଦ୍ ବିବରଣୀ ଆମମାନଙ୍କୁ ଶୁଣାଉଥିଲା ।

ଦନାର୍ଦ୍ଦନର ସେଇ ରୋମାଞ୍ଚକର କାହାଣୀ ଶୁଣୁଥିବା ବେଳେ ଇଂଲଣ୍ଡର ରାଜା ତୃତୀୟ ଉଇଲିୟମ୍‌ଙ୍କ କଥାଟି ବାରମ୍ବାର ମନେ ପଡୁଥିଲା : 'ପ୍ରତିଟି ଗୁଳି ତା'ର ଧାତୁ ଖଣ୍ଡ ହିଁ ପାଇଥାଏ ।' (Every bullet has its billet)

ବାସ୍ତବିକ୍, ଯାହା ଘଟିବାର ଥାଏ ତାହାହିଁ ଘଟେ । ହୋଇପାରେ ପୁରୁଷର ଭାଗ୍ୟ ଅଥବା ନାରୀର ଚରିତ୍ର ।

*ଅନୁପମ ଭାରତ ୧୬.୬.୨୦୦୦*

# ଅନ୍ୟ ଜଣେ ଭାନୁଜୀ ରାଓ

ଆଦ୍ୟ ବୈଶାଖର ଆତଙ୍କ ସେଦିନ ଗ୍ରାସ କରିସାରିଥିଲା ସାରା ସହରକୁ । ଆଉ ସେଇଥିପାଇଁ ମଧ୍ୟାହ୍ନର ଖରା ତା'ର କରିସ୍ମା ଦେଖାଇବା ଆଗରୁ ଛୋଟ ଛୋଟ ଦୋକାନର ସଟର୍‌ମାନ ତଳକୁ ଲମ୍ବିଯାଉଥିଲା ସହରରେ ଆଉ ବଡ ଦୋକାନମାନଙ୍କରେ ଘୁ ଘୁ ରଟିବା ଆରମ୍ଭ କରୁଥିଲା ହାତଗଢ଼ା ୱାଟର କୁଲରମାନ । କଟକ ସହର ପ୍ରାୟତଃ ସବୁବେଳେ ଏମିତି- ବୈଶାଖର ଝାଞ୍ଜିରେ ମୂର୍ଚ୍ଛା ଯାଏ, ଶ୍ରାବଣର ଛମ୍‌ଛମ୍ ବର୍ଷାରେ ଉବୁଟୁବୁ ହେଉଥାଏ ଆଉ ମାଘର ନିଷ୍ଠୁର ଶୀତରେ ରହିରହି କମ୍ପି ଉଠୁଥାଏ ।

ମହାବାତ୍ୟା ପରେ ଏ ବର୍ଷ ସବୁଠୁ ବେଶୀ ଖରା ହେବ ଓ ଅଂଶୁଘାତରେ ପୂର୍ବ ବର୍ଷ ଅପେକ୍ଷା ଅଧିକ ମୃତ୍ୟୁହାର ଘଟିବ ବୋଲି ପ୍ରଚାରିତ ହୋଇସାରିଥିଲା ଚାରିଆଡେ । ସେଇଥିପାଇଁ ଚାରିଆଡେ ବିଛେଇ ପଡିଥିଲା ଆତଙ୍କ । ହାଇକୋର୍ଟ ସାମ୍ନା କାଳିଗଳି ଭିତରେ ପଶିବା ବେଳକୁ ସେ ଆତଙ୍କ ପ୍ରାୟତଃ ଅପସରି ଯାଇଥିଲା ମନ ଭିତରୁ ।

ଗୋଟାଏ ଫାଟକ ସାମ୍ନାରେ ଅଟକି ଗଲି । ଏଇଠି କୁଆଡେ କବି ଭାନୁଜୀ ରାଓ ରୁହନ୍ତି । ଅନେକ ବର୍ଷ ହେଲା କବିଙ୍କୁ ଭେଟିବା ଲାଗି ମନ ଛଟପଟ ହେଉଛି । ଆଜି ହୁଏତ ଯୋଗ ଅଛି । ଅନେକବାର ଏଇ ବାଟ ଦେଇ ଯା'ଆସ କରିଛି ଅଥଚ କେବେବି ଏତେ ବ୍ୟଗ୍ରତା ନଥିଲା ମନରେ, ଆଜି ପରି ।

ଫାଟକ ଭିତର ଦେଇ ଘର ଆଡକୁ ଚାହିଁଲି । ବେଶ୍ ସଂଭ୍ରାନ୍ତ ଘର, ଘରର ବଗିଚା ଓ କୁକୁର ରହିବା ପାଇଁ ତିଆରି ହୋଇଥିବା କୋଠରୀ । ଗୋଟାଏ ପ୍ରଚ୍ଛନ୍ନ ନିରବତାର ଅଖଣ୍ଡ ରାଜତ୍ୱ ଯେପରି ଚାରିଆଡେ । ଅନେକ ସମୟ ଅପେକ୍ଷା ପରେ ଫାଟକ ଖୋଲି ଭିତରକୁ ଚାଲିଲି । ଗୋଟାଏ ମଣିଷ ଅଥବା ବିଲେଇ ଛୁଆ ନଜରକୁ ଆସିଲେନି । ଶୂନ୍‌ଶାନ୍ । ନିର୍ଜନତା ପରି ନିର୍ଜନ ପରିବେଶ । ଜର୍ମାନୀ ଦାର୍ଶନିକ ସୋପେନ୍‌ହର୍‌ଙ୍କ କଥା ମନେପଡିଲା : ଏକୁଟିଆ ହୋଇଯିବା ସବୁ ମହାନ୍ ବ୍ୟକ୍ତିଙ୍କ ଭାଗ୍ୟ । ବେଳେବେଳେ ସେ ଭାଗ୍ୟ ବିଳପି ଉଠେ, ମାତ୍ର ଦୁଇଟି ଅଶୁଭ ଘଟଣାଠାରୁ ଏହା ତଥାପି କମ୍ ଯନ୍ତ୍ରଣାଦାୟକ ।'' ଭାନୁଜୀ ନିଜେ ଅବିବାହିତ । ସାରା ଜୀବନ ଏକାକୀ ବିତାଇ ଦେବାର ତପସ୍ୟାରେ ସେ ଯେପରି ମଗ୍ନ । ଏକାକୀତ୍ୱ ଆଉ ଅଲୋଡାପଣର ପଥିକ ସେ । ସେଇ ଅଭାବବୋଧର ସଂଗୀତ ଗାଇଛନ୍ତି ମଦର ଟେରିଜା : 'ନିର୍ଜନବୋଧ ଆଉ ଅଲୋଡାପଣ ହିଁ ମାରାତ୍ମକ ଦାରିଦ୍ର୍ୟତା ।' ସେଇ କଥାଟିକୁ ନିଜ ବାଗରେ

କହିଛନ୍ତି ରବୀନ୍ଦ୍ରନାଥ : 'ହେ ଦାରିଦ୍ର୍ୟ ତୁମେ ମୋତେ କରିଛ ମହାନ୍ ।' କି ଦାରିଦ୍ର୍ୟତାରେ ସଢୁଥିଲେ ରବୀନ୍ଦ୍ରନାଥ- ନିର୍ଜନତା ବା ଏକଲାପଣ ଛଡା ? ଏମିତି ଭାବୁଭାବୁ ହଠାତ୍ ଝିଅଟିଏ ପାଖ ଘରୁ ବାହାରି ଆସି ପ୍ରଶ୍ନିଳ ଆଖିରେ ଚାହିଁଲା : କାହାକୁ ଦରକାର ?''

: କବି ଭାନୁଜୀଙ୍କୁ ଭେଟି ପାରିବି କି ?'' ଏହା ହିଁ ଥିଲା ମୋର ସଂକ୍ଷିପ୍ତ ଉତ୍ତର ।

ବାସ୍, କିଛି ନ କହି ଝିଅଟି ପୁଣି ପାଖ ଘର ଭିତରକୁ ଚାଲିଗଲା । ଅଗତ୍ୟା ବାରଣ୍ଡାରେ ପଡିଥିବା କାଠ ବେଞ୍ଚିଟିରେ ବସି ମୁଁ ଅପେକ୍ଷା କଲି ତାଙ୍କୁ ।

ହଠାତ୍ ସବୁ ନିରବତା ଓ ନିର୍ଜନପଣକୁ ବେଖାତିର୍ କରି ପାଖକୁ ଆସିଲେ କବି ଭାନୁଜୀ ରାଓ । ନିର୍ବାକ୍ ଭଳି ଚାହିଁଥାଏ ତାଙ୍କୁ । କ୍ଷୀଣ ଶରୀର, ଅବିକଳ ଜିଡୁ କୃଷ୍ଣମୂର୍ତ୍ତିଙ୍କ ପରି ମୁଖମଣ୍ଡଳ, ଢ଼ିମାଢ଼ିମା ଦୁଇଟି ଲୋଭନୀୟ ଆଖି । ଧୋତି ପିନ୍ଧାରୁ କେହି ଠଉରାଇ ପାରିବନି ଯେ ଏକଦା ସେ ମସୌରୀର ଆଡ୍‌ମିନିଷ୍ଟ୍ରେଟିଭ୍ ଷ୍ଟାଫ୍ କଲେଜ ପରି ସମ୍ଭ୍ରାନ୍ତ ଅନୁଷ୍ଠାନରେ ଅଧ୍ୟାପନା କରୁଥିଲେ । ଖୁବ୍ ଭଦ୍ରୋଚିତ, ଧୀର ଭାଷୀ ଓ ନମ୍ର ।

କେବେବି କୌଣସି ସାହିତ୍ୟ ସଭା ଅଥବା କବିତା ଆସରରେ ତାଙ୍କୁ ଭେଟିବାର ସମ୍ଭବନା ନାହିଁ । ଅବସର ନେବାର ପନ୍ଦର ବର୍ଷ ପରେ ବି ସେଇ ଅଭ୍ୟାସ ବଳବତ୍ତର ରହିଛି । ଏଇ ପନ୍ଦର ବର୍ଷ ଭିତରେ ପ୍ରକାଶ ପାଇଛି ଏଗାରଟି କବିତା ପୁସ୍ତକ : ବିଷାଦ ଏକ ଋତୁ, ନଈ ଆରପାରି, ଚନ୍ଦନବନରେ ଏକା, ଦର୍ପଣ ଆଗରେ, ଏକା ଏବଂ ଏକାଏକା, ହଳଦୀପତ୍ରର ବାସ୍ନା, ଜହ୍ନର ରକ୍ତ ଧଳା, ଅନ୍ତର୍ଗତ ସୁଖଦୁଃଖ, ଶବ୍ଦ ସଂଗେ ଶୃଙ୍ଗାର, ସ୍ୱପ୍ନର ପ୍ରଚ୍ଛଦ ଏବଂ ରକ୍ତମାଂସର କବିତା ।

ପ୍ରତିଦିନ ସେ ଅନ୍ତତଃ ଗୋଟାଏ କରି କବିତା ଲେଖନ୍ତି । ଠିକ୍ ନିଃଶ୍ୱାସ ପ୍ରଶ୍ୱାସ ନେବା ପରି କବିତା ଲେଖିବା ଗୋଟେ ଆବଶ୍ୟକତା ତାଙ୍କ ପାଇଁ । ସବୁ କବିତାରେ ପ୍ରେମର ଫଗୁ ବୋଳା ହୋଇଛି ଯେମିତି । ସେଇଥିପାଇଁ କବି ନିଜେ ହିଁ ସ୍ୱୀକାର କରନ୍ତି : 'ଜୀବନକୁ ଗଭୀର ପ୍ରେମ ନକଲେ ପ୍ରେମ କବିତା ଲେଖିହୁଏନି ।' ଲରେନ୍ସଙ୍କ କଥା ମନେପଡେ । ସେ ବି ଥରେ କହିଥିଲେ : ''ପ୍ରେମ ପାଖରେ ତୁମକୁ ସବୁବେଳେ ଲହଲହ ହେବାକୁ ପଡିବ । ଠିକ୍ କୁକୁରଟି ତା'ର ଲାଞ୍ଜ ହଲାଇବା ପରି ।'' ଜୀବନକୁ ନିବିଡ ଭାବେ ଭଲ ପାଇଥିବା କବି ଭାନୁଜୀ ବୋକା ବନିଯାଇଥିଲେ, ଠିକ୍ କବି ଜନ୍ ଡନ୍‌ଙ୍କ ପରି । ତାଙ୍କ ଭାଷାରେ : 'ମୁଁ ଜାଣେ, ମୁଁ ହେଉଛି ଡବଲ୍ ବୋକା । କାରଣ ମୁଁ ପ୍ରେମ କରେ ଆଉ ସେ କଥା କବିତାରେ ଗୁଣୁଗୁଣୁ କରେ ।'

ଏବେ ପ୍ରଚୁର କବିତା ଲେଖୁଥିବା କବି ହଠାତ୍ ଦୀର୍ଘବର୍ଷ ଧରି କବିତା ରଚନାଠାରୁ କାହିଁକି ନିଜକୁ ଦୂରେଇ ରଖିଥିଲେ ବୋଲି ପଚାରିଲେ, ସେ ଜବାବ୍ ଦିଅନ୍ତି : ଯୁଦ୍ଧ ଭୂଇଁରେ କ'ଣ କବିତା ଲେଖାହୁଏ ?

: ଆପଣ କ'ଣ ସୀମାନ୍ତରେ ସୈନିକ ଥିଲେ ?'' ମୁଁ ପଚାରିଲି ।

ସେ ସାମାନ୍ୟ ହସିଲେ ଆଉ କହିଲେ : ନା !'' ମୁଁ ବୁଝି ପାରିଲିନି । ସେ ଏଥର କହିବା ଆରମ୍ଭ କଲେ । ମସୌରୀରେ ଚାକିରି କରିବା ଆଗରୁ ସେ ଓଡିଆ କବିତା ଭୂମିରେ ନିଜ ପଦଚିହ୍ନ ରଖି ସାରିଥିଲେ । ସେ ଖ୍ୟାତିର ମହକ ପହଞ୍ଚି ଯାଇଥିଲା ମସୌରୀ ଯାଏଁ । ମାତ୍ର କିଛି ଅସହିଷ୍ଣୁ ସହଯୋଗୀ ପ୍ରଚାର କଲେ ଯେ, ଓଡିଆ କବିତାରେ ପ୍ରସିଦ୍ଧି ଆଣିଥିବା କବି ଭାନୁଜୀ ରାଓ ଏବଂ ମସୌରୀରେ ଚାକିରି କରୁଥିବା ଭାନୁଜୀ ରାଓ ଏକା ବ୍ୟକ୍ତି ନୁହଁନ୍ତି । 'କବି ଭାନୁଜୀ ରାଓଙ୍କ ମୃତ୍ୟୁ ହୋଇସାରିଛି ଅନେକ କାଳରୁ' ଏପରି ଏକ ଅପପ୍ରଚାର ସେଠାରେ ତୀବ୍ରତର ହୋଇଥିଲା । ଏପରିକି ଏଇ ପ୍ରଶାସନିକ ପ୍ରଶିକ୍ଷଣ ଅନୁଷ୍ଠାନର ମୁଖ୍ୟ ମଧ୍ୟ ଗୁଜବଟିକୁ ବିଶ୍ୱାସ କଲେ । କବି ଭାନୁଜୀଙ୍କର ସମସ୍ତ ଯୁକ୍ତି ସେଠି ଅସାର ହେଲା । ଅନେକ ସମୟରେ ତର୍କ ରୂପାନ୍ତରିତ ହେଉଥିଲା କଳହ ଆଉ ଅପ୍ରୀତିକର ପରିସ୍ଥିତିରେ । କବି ଭାନୁଜୀ ରାଓ ଯେ ଜୀବିତ ଅଛନ୍ତି ତା'ର ପ୍ରମାଣ ଚାହୁଁଥିଲେ ଅନୁଷ୍ଠାନର କର୍ତ୍ତୃପକ୍ଷ । ସେଇ ଷଡଯନ୍ତ୍ର ବିରୁଦ୍ଧରେ ଯୁଦ୍ଧ କରୁକରୁ ଦିନେ କବି ଘୋଷଣା କଲେ : 'କବି ଭାନୁଜୀ ରାଓ ମରି ସାରିଛନ୍ତି କେବେଠୁ ?'

: ତୁମେ ପ୍ରମାଣ ଦେଇପାରିବ କି ?'' ମୁଖ୍ୟ ପ୍ରଶ୍ନ କଲେ ।

: ମୁଁ ଯେ ନିଜେ ତାଙ୍କ ଶବବାହକ ଥିଲି । ଏତିକି ତା'ର ପ୍ରମାଣ ।'' କବି ଭାନୁଜୀ ରାଓ କହିଲେ ।

: ମୁଁ କିନ୍ତୁ ଏଥିରେ ସନ୍ତୁଷ୍ଟ ନୁହେଁ ।'' ଉତ୍ତର ମିଳିଲା । ଏଥର କବି ଭାନୁଜୀଙ୍କ ପ୍ରଶ୍ନବାଣ- ଆପଣ ସବୁବେଳେ କୁହନ୍ତି ଲଣ୍ଡନ୍‌ର ଗଳିରେ ଆପଣ ଖବରକାଗଜ ବାଣ୍ଟୁଥିଲେ । ଏବେ ତ ଆପଣ ଏଇ ସଂସ୍ଥାର ମୁଖ୍ୟ, ତେବେ ଏ ଦୁଇଜଣ ବ୍ୟକ୍ତି ଯେ ଜଣେ ଲୋକ, ଏକଥା କେମିତି ପ୍ରମାଣ କରିବେ ?''

ଯଦିଓ କବି ଭାନୁଜୀ ରାଓଙ୍କ ଯୁକ୍ତି ତାଙ୍କୁ ଜଣେ ଅହଙ୍କାରୀ ଭାବେ ପରିଚିତ ହେବାକୁ ଉପରିସ୍ଥ କର୍ମଚାରୀଙ୍କୁ ଖୋରାକ୍ ଯୋଗାଇ ଥିଲା, ମାତ୍ର ପରବର୍ତ୍ତୀ କାଳରେ ଷଡଯନ୍ତ୍ରକାରୀ ସହଯୋଗୀମାନେ ନିଜନିଜ ଚାକିରିମାନ ହରାଇଥିଲେ । ଯୁଦ୍ଧ ଶେଷରେ ତାଙ୍କରି ବିଜୟ ହେଲା, ତାହାହିଁ କେବଳ ଆଶ୍ୱାସନା ।

ଚିର ସମୟାନୁବର୍ତ୍ତୀ କବି ଭାନୁଜୀ ରାଓଙ୍କ କଲମ ଏବେ ବିରାମହୀନ । ତାଙ୍କ ଯାତ୍ରା ଦୀର୍ଘଜୀବୀ ହେବାର କାମନା କରି ଆସନ୍ତୁ ତାଙ୍କ ସହ ଏଥର ଗାଇବା : ଶତାବ୍ଦୀ ଶତାବ୍ଦୀ ଧରି/ଚାଲିଅଛି ବାଟ,/ଶୁଣିଅଛି ହେମନ୍ତର କୁହାଟ,/ ଯାହା ଭେଦ କରେ/କାଶତଣ୍ଡୀ ବଣ, ଅନାବନା ଘାସ/ନଗ୍ନ ନଈପଠା, ଆଉ ମଳାଜହ୍ନ/ପାଣି ଧାର ପାଖେ.... ।'

ତାଙ୍କ ଘରୁ ବାହାରି ଆସିବା ବେଳେ ଖରାର ଦୁଷ୍ଟାମୀ ବଢ଼ିଯାଇଥିଲା ।

*ଅନୁପମ ଭାରତ ୧୦.୧.୨୦୦୦*

# ୧୯୭୫

ପଚିଶି ବର୍ଷ ତଳେ ଭାରତରେ ଯେଉଁ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଇଥିଲା, ଏବେ (ଜୁନ୍ ୨୫,୨୦୦୦) ସେ ଘଟଣାର ସ୍ମୃତିଚାରଣ କରି ଅନେକ ଜନନେତା, ଲେଖକ ଓ ସାମ୍ବାଦିକ ଟିଭି ଏବଂ ଖବରକାଗଜମାନଙ୍କରେ ବହୁ କଥା କହିଲେ । ସେମାନଙ୍କ ଭିତରୁ ପ୍ରାୟତଃ ଅଧିକାଂଶ ଇନ୍ଦିରାଗାନ୍ଧିଙ୍କ କଳାଶାସନ କଥା କହି, ଅନେକ ଲୋମହର୍ଷଣକାରୀ ଘଟଣାର ଅବତାରଣା କଲେ । ଆଶ୍ଚର୍ଯ୍ୟ ଓ ଆଶ୍ୱସନାର କଥା ଯେ ପଚିଶି ବର୍ଷ ତଳେ ଜୟପ୍ରକାଶ ନାରାୟଣଙ୍କ ଆହ୍ୱାନକ୍ରମେ ଯେଉଁମାନେ ଇନ୍ଦିରାଗାନ୍ଧିଙ୍କ ଶାସନ ପ୍ରଣାଳୀ ଓ ଏକଚାଟିଆ ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ସେମାନେ ଆଜି ସେମାନଙ୍କ ଇପ୍‌ସିତ କୁର୍ସିରେ ବସିଛନ୍ତି । ହୁଏତ ସେତିକି ହୋଇଥିଲେ ଭାରତୀୟମାନେ ହତାଶ ହୋଇନଥା'ନ୍ତେ । ମାତ୍ର ସେଇ ଜନ ଆନ୍ଦୋଳନକାରୀମାନେ ଏବେ ଭାରତୀୟ ନାଗରିକଙ୍କ ସ୍ୱପ୍ନକୁ ଧୂଳିସାତ୍ କରି ଇନ୍ଦିରାଗାନ୍ଧିଙ୍କ ପଦାଙ୍କ ଅନୁସରଣ କରିଛନ୍ତି । ଏହାର ନଗ୍ନ ଉଦାହରଣ ହେଉଛନ୍ତି, ଜୟପ୍ରକାଶଙ୍କ ପ୍ରଦେଶ ତଥା ତାଙ୍କର ନୀତିରେ ଅଗାଧ ବିଶ୍ୱାସ ରଖିଥିବା ଏବଂ ପରେପରେ ସେ ନୀତି ସବୁକୁ କବର ଦେଇଥିବା ବ୍ୟକ୍ତି ଲାଲୁପ୍ରସାଦ ଯାଦବ । ତାଙ୍କ କଥା ପଡିଲେ, ଶହେବର୍ଷ ତଳେ ବିଶିଷ୍ଟ ରାଜନୈତିକ ନେତା ରୁଜଭେଲ୍‌ଟ କହିଥିବା ପ୍ରସଙ୍ଗଟି ମନେପଡିଯାଏ । ଲୋକପ୍ରିୟ ପ୍ରବାଦଟିଏ ଅଛି; ତାହା ହେଉଛି- 'ମୁହଁରେ ଖୁବ୍ ନମ୍ର ଭାଷା ଏବଂ ହାତରେ ଠେଙ୍ଗାଟିଏ ଧରି ଚାଲିଲେ- ତମେ ଅନେକ ଆଗକୁ ଯାଇପାରିବ ।'

ଲାଲୁ ପ୍ରସାଦ କେତେଦୂର ମିଷ୍ଟଭାଷୀ, ସେ କଥା ସମସ୍ତେ ଜାଣନ୍ତି । ମାତ୍ର ଠେଙ୍ଗାଟି ଯେ ଏଯାବତ୍ ସେ ହାତଛଡା କରି ନାହାଁନ୍ତି ଏବଂ ସେଇ ଠେଙ୍ଗା ଯୋଗୁଁ ସେ ଗଣତନ୍ତ୍ରକୁ ମଧ୍ୟ ଖାତିର୍ କରନ୍ତି ନାହିଁ ।

ଜରୁରୀ ପରିସ୍ଥିତି, ଯାହାସବୁ କ୍ଷତି କରୁନା କାହିଁକି, ଅନେକ ଗୁଡିଏ ନେତା ସୃଷ୍ଟି କରିବାରେ ସାହାଯ୍ୟ କଲା । ଯେଉଁମାନେ ଏହାକୁ ବିରୋଧ କରିଥିଲେ, ସେମାନଙ୍କୁ ସେଇ କ୍ଷମତାର ଆସନ ଦେବାପାଇଁ ଭାରତର ସୁନାଗରିକ ଗଣ ଖୁବ୍ ତତ୍ପର ହୋଇପଡିଲେ । ମାତ୍ର ଏହାଦ୍ୱାରା ସେମାନଙ୍କ ସ୍ୱପ୍ନ ସାକାର ହୋଇଛି ବୋଲି କହି ହେବନି । ଜରୁରୀ ପରିସ୍ଥିତିର ମୂଲ୍ୟାୟନ ପାଇଁ ଦୁଇଗୋଷ୍ଠୀ ଏବେ ଆମ ଦେଶରେ ଅଛନ୍ତି । ସେମାନେ ହେଲେ : ସପକ୍ଷବାଦୀ ଓ ବିପକ୍ଷବାଦୀ । ଏହାକୁ ସମର୍ଥନ କରୁଥିବା ବ୍ୟକ୍ତିଙ୍କ ମତ ହେଲା ଏଇ ପରିସ୍ଥିତି ଯୋଗୁଁ

ପ୍ରଶାସନିକ କ୍ଷେତ୍ରରେ ଅନେକ ଉନ୍ନତି ପରିଲକ୍ଷିତ ହୋଇଥିଲା । ଅଫିସ୍‌ରେ ଉପସ୍ଥାନ, ସମୟାନୁବର୍ତ୍ତିତା ଏବଂ କ୍ଷିପ୍ରତା ସହ ଶିକ୍ଷାୟନରେ ଶୃଙ୍ଖଳା, ଉତ୍ପାଦନ ଓ ସହଯୋଗ ତଥା ସାମାଜିକ କ୍ଷେତ୍ରରେ ଅନୁଶାସନ ହିଁ ଏଥିଯୋଗୁଁ ସମ୍ଭବ ହୋଇଥିଲା । ସେଇଥିପାଇଁ ବିଶିଷ୍ଟ ଲେଖକ ଖୁସ୍‌ୱନ୍ତ ସିଂ ଜରୁରୀ ପରିସ୍ଥିତିକୁ ସମର୍ଥନ କରିବା କଥା ଅନେକବାର ପ୍ରଚାରିତ ହେଉଛି । ମାତ୍ର ଗୋଟିଏ କଥା ମନକୁ ଆସୁଛି- ଏଇ ଶୃଙ୍ଖଳା ଆଣିବା ପାଇଁ ଭାରତରେ ଜରୁରୀ ପରିସ୍ଥିତି ଜାରି କରିବା କ'ଣ ଏକାନ୍ତ ଆବଶ୍ୟକ ? ଏହାର ଅନ୍ୟ କିଛି ବିକଳ୍ପ ନାହିଁ ? ନା ଆମେ କରିଥିବା ଅପକର୍ମକୁ ଠିକ୍ ବୋଲି ସାବ୍ୟସ୍ତ କରିବା ଲାଗି ଏହା ଏକ କୌଶଳମାତ୍ର ? ଜରୁରୀ ପରିସ୍ଥିତି ଜାରି ନକରି ଆମେ ସାମାଜିକ ତଥା ଅର୍ଥନୈତିକ କ୍ଷେତ୍ରରେ ଶୃଙ୍ଖଳା ଆଣିପାରିବା ନାହିଁ କି ?

ଜରୁରୀ ପରିସ୍ଥିତି ଅସାଧୁ ବ୍ୟକ୍ତିଙ୍କୁ ସାଧୁ କରିବାରେ ବିଫଳ ହୋଇଛି । ମାତ୍ର ଅନେକ ସାଧୁଙ୍କୁ ଏହା ଅସାଧୁ କରିବାରେ ସହାୟକ ହୋଇଛି । ବ୍ୟକ୍ତି ଚରିତ୍ରକୁ ସଜାଡ଼ିବାରେ ପରାଜୟ ବରଣ କରିଛି ଏଇ ବ୍ୟବସ୍ଥା । ଲୋକେ କେବଳ ଭୟରେ ଭଲ ହେବାକୁ ଚେଷ୍ଟା କରିଛନ୍ତି ବା ଭଲ ଦେଖାଇବାକୁ ଚାହୁଁଛନ୍ତି । ଯାହା ସେମାନଙ୍କ ଅସଲ ଚରିତ୍ର ନୁହେଁ । ଗୋଟିଏ ଉଦାହରଣ ଦେବି । ନିକଟରେ ଜରୁରୀ ପରିସ୍ଥିତିକୁ ସମାଲୋଚନା କରି ଲେଖାଟିଏ ପ୍ରକାଶିତ ହୋଇଥିବାର ପଢ଼ିଲି । ଲେଖକ ହେଉଛନ୍ତି ଜଣେ ଅଧ୍ୟାପକ । ଏକଦା ଏ ସ୍ତମ୍ଭିକ ଉକ୍ତ ଅଧ୍ୟାପକଙ୍କର ଛାତ୍ର ହେବାର ସୁଯୋଗ ଲାଭ କରିଥିଲା ।

ପଚିଶ ବର୍ଷରୁ କିଛି ଅଧିକକାଳ କଥା । ନୂଆ କରି ଲେଖାଲେଖିରେ ହାତ ଦେଇଥାଏ । 'ଅନାମ' କାବ୍ୟ ଆନ୍ଦୋଳନର ମୁଖ୍ୟ କବି କୁମାର ମହାନ୍ତିଙ୍କ କାବ୍ୟିକ ମହକରେ ମସ୍‌ଗୁଲ୍ ହୋଇ ଅପହଞ୍ଚ ସ୍ୱପ୍ନମାନଙ୍କୁ ଧରିବା ଲାଗି ହାତ ବଢ଼ାଉଥାଏ । ସହପାଠୀ ଅନ୍ନଦା ମିଶ୍ରଙ୍କ ସହ ମିଶି କବିତା ପତ୍ରିକାଟିଏ ପ୍ରକାଶ କରିବା ସ୍ଥିର ହେଲା । ପତ୍ରିକାର ନାଁ ଥିଲା 'ସ୍ୱାକ୍ଷର' । ରାତି ରାତି ବସି ପତ୍ରିକା ପାଇଁ ସଂଗୃହୀତ କବିତା ଗୁଡିକ ସଂପାଦନା କରିବା ଏବଂ ପ୍ରଚଳିତ ସାମାଜିକ ବ୍ୟବସ୍ଥା ପ୍ରତି ବିଦ୍ରୁପ କରୁଥିବା ଲେଖାମାନ ନିର୍ବାଚନ କରିବା ପରେ ସେସବୁ ଛାପିବା ପାଇଁ ଦଇତାପଡା ସାହିର ଗୋପାଳବାବୁଙ୍କ ଛାପାଖାନାକୁ ପଠାଗଲା ।

ଠିକ୍ ସମୟରେ ପତ୍ରିକାଟିର ଛପାକାମ ମଧ୍ୟ ଶେଷ ହୋଇଗଲା । ଯେଉଁଦିନ 'ସ୍ୱାକ୍ଷର'ର ପ୍ରଥମ ସଂଖ୍ୟା ବଜାରକୁ ଆସିଗଲା, ବନ୍ଧୁ ଅନ୍ନଦା ସେଦିନ ଆନନ୍ଦରେ ଆତ୍ମହରା ହୋଇ ଯାଇଥିଲେ । ମାତ୍ର ତାଙ୍କର ସେ ଆନନ୍ଦ ସବୁଦିନ ପରି ଥିଲା କ୍ଷଣସ୍ଥାୟୀ । ପତ୍ରିକାଟି ପ୍ରକାଶ ପାଇବା ପରେ ଆମେ ଦୁହେଁ ରହୁଥିବା ଛାତ୍ରବାସର ତତ୍ତ୍ୱାବଧାରକଙ୍କୁ ପତ୍ରିକାଟିଏ ଉପହାର ଦେଇଥିଲୁ ସୌଜନ୍ୟତା ରକ୍ଷା କରି । ସେତେବେଳେ ତତ୍ତ୍ୱାବଧାରକ ତଥା ଆମ ମହାବିଦ୍ୟାଳୟର ଅଧ୍ୟାପକ ଏ ଉଦ୍ୟମ ପାଇଁ ଆମକୁ ଖୁବ୍ ଉତ୍ସାହ ଦେଇଥିଲେ । ଏହାପରେ

ମୁଁ ଚାଲିଗଲି କବି କୁମାର ମହାନ୍ତିଙ୍କ ଦଇତାପଡାସ୍ଥିତ ବାସଭବନକୁ ପତ୍ରିକାଟିଏ ଧରି । ପ୍ରାୟ ଘଣ୍ଟାକ ପରେ ଧଇଁସଇଁ ହୋଇ ଅତ୍ୟନ୍ତ ଭୟଭୀତ ହୋଇ ବନ୍ଧୁ ଅନ୍ନଦା ସେଠି ପହଞ୍ଚିଲେ ।

ତାଙ୍କଠାରୁ କଥାଟା ଶୁଣି ମୁଁ ବି ହଡବଡେଇ ଗଲି ପ୍ରଥମେ । 'ସ୍ୱାକ୍ଷର'ରେ ପ୍ରକାଶିତ ତଥା ସଂପାଦିତ ଲେଖା ଭିତରେ ଅନେକ ସରକାରୀ ବିରୋଧୀ ସ୍ୱର ଭରି ରହିଥିଲା । ଆଉ ସେଇଥିପାଇଁ ଆମ ଦୁହିଁଙ୍କୁ ପତ୍ରିକାର ସଂପାଦକ ଭାବେ ଆରେଷ୍ଟ କରିବା ଲାଗି ଛାତ୍ରାବାସରେ ପୋଲିସ୍ ପହଞ୍ଚି ପଚରା ଉଚରା ଆରମ୍ଭ କରିଦେଇଥିଲା । ସହଜେ ଇମରଜେନ୍ସିର ଆତଙ୍କ ଚାରିଆଡେ ।

କବି କୁମାର ମହାନ୍ତି ପୋଲିସ୍ ବିଭାଗର ଉଚ୍ଚପଦସ୍ଥ କର୍ମଚାରୀ ହୋଇଥିବାରୁ ଆମ ଦୁହିଁଙ୍କର ହାତକଡା ପଡିବା ସମ୍ଭବ ହୋଇନଥିଲା କେବଳ । ତେବେ ଯେଉଁ ସତ୍ୟଟି ସେଦିନ ଆମ ସାମ୍ନାକୁ ଆସିଥିଲା, ସେ କଥା ଏଯାବତ୍ ଏ ଲେଖକ ଭୁଲି ପାରି ନାହିଁ । ତା'ହେଲା, ଆମ ଦୁହିଁଙ୍କୁ ଆରେଷ୍ଟ କରିବା ଲାଗି ପୋଲିସ୍‌କୁ ହଷ୍ଟେଲ୍‌ର ତତ୍କାଳୀନ ତତ୍ତ୍ୱାବଧାରକ ହିଁ ଟେଲିଫୋନ୍ କରି ଖବର ଦେଇଥିଲେ, କାଳେ ତାଙ୍କ ଉପରେ ଆମ ଲେଖା ଯୋଗୁଁ କିଛି ବିପଦ ପଡିବ ବୋଲି । ପଚିଶି ବର୍ଷ ପରେ ସେଇ ତତ୍ତ୍ୱାବଧାରକ ଏବେ ଜରୁରୀ ପରିସ୍ଥିତିକୁ ଭର୍ତ୍ସନା କରି ଲେଖା ପ୍ରକାଶ କରୁଛନ୍ତି । ଏପରି ବ୍ୟକ୍ତିତ୍ୱର ଅଭାବ ଆମ ଚାରିକଡେ ଆଦୌ ନାହିଁ । ଏପ୍ରକାର ଚରିତ୍ରକୁ ଭେଟିଲେ ମନେପଡିଯା'ନ୍ତି ମାର୍କିନ୍ ନେତା ମାର୍ଟିନ୍ ଲୁଥର୍ କିଙ୍ଗ୍ । ତାଙ୍କ ଭାଷାରେ : ଯଦି ଜଣେ ବ୍ୟକ୍ତି କ'ଣ ପାଇଁ ମରିବ ତାହା ଆବିଷ୍କାର କରିନାହିଁ, ତେବେ ବଞ୍ଚିବା ଲାଗି ସେ ଯୋଗ୍ୟ ନୁହେଁ ।'' ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ତତ୍ତ୍ୱାବଧାରକ ଏବେ ତତ୍ରୁରୀକାଳୀନ ପରିସ୍ଥିତିକୁ ନିନ୍ଦା କରୁଛନ୍ତି । କାରଣ ଏବେ ତତ୍କାଳୀନ ବିଦ୍ରୋହୀ ନେତୃବୃନ୍ଦ କେନ୍ଦ୍ର ଏବଂ ରାଜ୍ୟରେ କ୍ଷମତାସୀନ ଅଛନ୍ତି ।

ସବୁଠୁ ବିଡମ୍ବନାର କଥା, ଜରୁରୀ ପରିସ୍ଥିତିକୁ ସେତେବେଳେ ନିଜ ଆଚରଣରେ ସମର୍ଥନ କରୁଥିବା କେତେକ ବରିଷ୍ଠ ସାହିତ୍ୟିକ ଏବେ ଗୁରୁତ୍ୱପୂର୍ଣ୍ଣ ପଦବୀରେ ରହିଛନ୍ତି । ସେମାନେ ସବୁବେଳେ ଗଡିଶା ମାଛ ପରି ବ୍ୟବହାର କରନ୍ତି । ତାଙ୍କର ଧାରଣା ସେମାନେ ସହଜରେ କାହା ହାତରେ ଧରାପଡିବେ ନାହିଁ । କିନ୍ତୁ କାଳର ନିୟମ ବଡ ବିଚିତ୍ର । ସେମାନଙ୍କ ଚାଲାକି ପାଇଁ ଯେତେବେଳେ ଅଙ୍ଗୁଳି ନିର୍ଦ୍ଦେଶ ହେବ, ସେତେବେଳେ କିଛି ଉତ୍ତର ନଥିବ, ସେମାନେ ବି ନଥିବେ । ମାତ୍ର ଓଡିଶାର ଯେଉଁ କେତେଜଣ ସାହିତ୍ୟିକ ତତ୍କାଳୀନ ରାଜନୈତିକ ପରିସ୍ଥିତି ବିରୁଦ୍ଧରେ ତାଙ୍କର ସ୍ୱର ଉତ୍ତୋଳନ କରିଥିଲେ, ସେମାନଙ୍କୁ ସ୍ମରଣ କରିବାର ସମୟ ଏବେ ଆସି ଯାଇଛି ।

୧୯୭୫କୁ ଭାରତୀୟମାନେ କେବେବି ଭୁଲିପାରିବେ ନାହିଁ ।

# ସ୍ୱର୍ଣ୍ଣ ତ୍ରିଭୂଜ

ଭୁବନେଶ୍ୱର, ପୁରୀ ଏବଂ କୋଣାର୍କର ମନ୍ଦିର ଏବଂ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନକୁ ସଂଯୋଗ କରି ପର୍ଯ୍ୟଟନ ବିଭାଗ ଏହାକୁ ସ୍ୱର୍ଣ୍ଣ ତ୍ରିଭୂଜ ଆଖ୍ୟା ଦେଇଛନ୍ତି । ମାତ୍ର ଆଜି ସେ ସମ୍ପର୍କରେ ଆଲୋଚନା କରିବାର ଆବଶ୍ୟକତା ନାହିଁ ।

ଭାରତୀୟ ସମ୍ବିଧାନର ତିନିଗୋଟି ସ୍ତମ୍ଭ ମଧ୍ୟରୁ ବିଚାର ବିଭାଗ ଏକ ଶକ୍ତିଶାଳୀ ଅଙ୍ଗ । ମୁଖ୍ୟ ବିଚାରପତି, ଆଇନମନ୍ତ୍ରୀ ଏବଂ ଆଟର୍ଣ୍ଣି ଜେନେରାଲ୍ ହେଉଛନ୍ତି ଏହି ବିଭାଗର ତିନୋଟି ଅମୂଲ୍ୟ ରତ୍ନ ସଦୃଶ : ହୀରା, ମୋତି ଓ ମାଣିକ୍ୟ । ମାତ୍ର ନିକଟରେ କେନ୍ଦ୍ର ଆଇନ ମନ୍ତ୍ରୀଙ୍କୁ ତାଙ୍କ ପଦବୀରୁ ଇସ୍ତଫା ଦେବା ପାଇଁ ପ୍ରଧାନମନ୍ତ୍ରୀ କହିବା ପରେ ବିଚାର ବିଭାଗରେ ସୃଷ୍ଟି ହୋଇଥିବା ଫାଟ ଏବେ ବାହାରକୁ ଦେଖାଯାଉଛି । ଯେଉଁଦିନ ଆଇନମନ୍ତ୍ରୀ ରାମ ଜେଠ୍‌ମାଲାନି ଇସ୍ତଫା ଦେଲେ, ତାଙ୍କର ପ୍ରଥମ ଆକ୍ଷେପ ଥିଲା ଭାରତର ଆଟର୍ଣ୍ଣି ଜେନେରାଲ୍ ସୋଲି ସୋରାବ୍‌ଜୀଙ୍କ ପ୍ରତି । ଯଦିଓ ଦୁଇଜଣଯାକ ଘନିଷ୍ଠ ବନ୍ଧୁ ବୋଲି ପରସ୍ପରକୁ ଦାବି କରୁଛନ୍ତି-ତଥାପି ଟିକିଏ ସୁଯୋଗ ପାଇଲେ ସେମାନେ ପରସ୍ପରକୁ କାଦୁଅ ଫୋପାଡିବାରେ ଲାଗିଛନ୍ତି ସର୍ବସାଧାରଣରେ ।

ପରେପରେ ଶ୍ରୀ ଜେଠ୍‌ମାଲାନି ଦୋଷାରୋପ କରି କହିଛନ୍ତି ଯେ ଆଟର୍ଣ୍ଣି ଜେନେରାଲ ଶ୍ରୀ ସୋରାବ୍‌ଜୀ ଅନୁଚିତ ଭାବେ ବୋଫର୍ସ ଦୁର୍ନୀତି ମାମଲା ସହ ଜଡିତ ଥିବା ହିନ୍ଦୁଜା ଶିଳ୍ପଗୋଷ୍ଠୀଙ୍କୁ ଆଇନ ପରାମର୍ଶ ଦେଇ ସେମାନଙ୍କଠୁ ତାଙ୍କର ପରାମର୍ଶ ବାବଦରେ ଅର୍ଥ ଗ୍ରହଣ କରିଛନ୍ତି । ଭାରତର ଆଟର୍ଣ୍ଣି ଜେନେରାଲ୍ ଥିବା ସମୟରେ ଏପରି ଅର୍ଥ ଗ୍ରହଣ କରିବା ତାଙ୍କ ପକ୍ଷରେ ଅନୁଚିତ ହୋଇଛି ବୋଲି ଜେଠ୍‌ମାଲାନି ଅଭିଯୋଗ କରିଛନ୍ତି । ଯଦିଓ ସୋରାବ୍‌ଜୀ ଶ୍ରୀ ଜେଠ୍‌ମାଲାନିଙ୍କ ବିବୃତ୍ତିକୁ ଅସ୍ୱୀକାର କରିଛନ୍ତି, ମାତ୍ର ଭାରତର ମୁଖ୍ୟ ନ୍ୟାୟାଧୀଶ ଶ୍ରୀ ଆନନ୍ଦଙ୍କ ପ୍ରତି ଶ୍ରୀ ଜେଠ୍‌ମାଲାନି କରିଥିବା ଅଭିଯୋଗକୁ ଶ୍ରୀ ଆନନ୍ଦ ଏଯାବତ୍ ଅସ୍ୱୀକାର କରିନାହାଁନ୍ତି ।

ନିଜର ନିୟନ୍ତ୍ରଣହୀନ ଜିଭ ପାଇଁ ଶ୍ରୀ ଜେଠ୍‌ମାଲାନିଙ୍କୁ ପୂର୍ବରୁ ଅନେକଥର ସତର୍କ କରାଇ ଦିଆଯାଇଛି । ମାତ୍ର ଚୁପ୍ ରହିବାରେ ସେ ବିଫଳ ହୋଇଛନ୍ତି ସବୁବେଳେ । ସେଥିପାଇଁ ପ୍ରଧାନମନ୍ତ୍ରୀ ବ୍ୟଙ୍ଗୋକ୍ତି କରି ଏବେ କହିଛନ୍ତି- 'ଚୁପ୍ ରହିବାର କଳାଟିକୁ ଶ୍ରୀ ଜେଠ୍‌ମାଲାନି ଏଯାବତ୍ ଅଭ୍ୟାସ କରିନାହାଁନ୍ତି ।' ଏଥର ଘଟଣା ଏପରି ସ୍ତରକୁ ଚାଲିଗଲା

ଫଳତଃ ଶ୍ରୀ ଜେଠମାଲାନି ଭାରତ ସରକାରଙ୍କ କେତେଗୁଡିଏ ଗୁପ୍ତ ଚିଠି ଓ ତଥ୍ୟ ବାହାରେ ପ୍ରକାଶ କରିବା ପାଇଁ ସାମ୍ବାଦିକମାନଙ୍କ ସାହାରା ନେଲେ । ଏଇ ଗୁପ୍ତ ତଥ୍ୟକୁ ପ୍ରକାଶ କରି ଶ୍ରୀ ଜେଠ୍‌ମାଲାନି ମନ୍ତ୍ରୀ ଥିବା ସମୟରେ ଗୋପନୀୟତା ରକ୍ଷା କରିବା ପାଇଁ ନେଇଥିବା ଶପଥ ଉଲ୍ଲଘଂନ କରିଛନ୍ତି ବୋଲି ଅଭିଯୋଗ ହେବା ସହ ଆଇନାନୁମୋଦିତ କାର୍ଯ୍ୟାନୁଷ୍ଠାନ ତାଙ୍କ ବିରୁଦ୍ଧରେ ଆରମ୍ଭ ହେବ ବୋଲି ସୂଚନା ମଧ୍ୟ ମିଳିସାରିଲାଣି । ତାଙ୍କର ଏତାଦୃଶ ଆଚରଣ ଦେଖି ବ୍ରିଟିଶ୍ ଦାର୍ଶନିକ ଜେରେମି ବେନ୍‌ଥାମ୍‌ଙ୍କ ଉକ୍ତିଟି ବାରମ୍ବାର ମନକୁ ଆସେ : 'ଓକିଲମାନେ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯେଉଁମାନେ ଆଇନର ଅଜ୍ଞତା ଯୋଗୁଁ ଦଣ୍ଡିତ ହୁଅନ୍ତି ନାହିଁ ।' ବ୍ୟକ୍ତିଗତ ଅହଙ୍କାରର ସଂଘର୍ଷ ହିଁ ଏ ନାଟକର ସୂତ୍ରପାତ କରିଛି । ଗୋଟିଏ କୋଷରେ ଯେପିର ଦୁଇଟି ତରବାରୀ ରହିବା ସମ୍ଭବ ନୁହେଁ ଅଥବା ଗୋଟାଏ ଜଙ୍ଗଲରେ ଦୁଇଟି ସିଂହ ରହିପାରେନା, ଠିକ୍ ସେଇପରି ଦୁଇଜଣ ବିଶିଷ୍ଟ ଆଇନ୍‌ବିତ୍ ଗୋଟିଏ ସରକାରର ଖୋଳପା ଭିତରେ ସହାବସ୍ଥାନ କରିବା ସମ୍ଭବ ହୋଇପାରିନି ବୋଲି ଧାରଣା ହେଉଛି । ଭାରତର ଦୁଇ ବିଶିଷ୍ଟ ଜ୍ଞାନୀ ବ୍ୟକ୍ତିଙ୍କର ଏତାଦୃଶ ବ୍ୟବହାରକୁ ଲକ୍ଷ୍ୟ କରି ପୁଣିଥରେ ସେଇ ଅକୃତଜ୍ଞ କଙ୍କଡା ବିଛା ଏବଂ ସରଳ କୁମ୍ଭୀର କଥା ମନେପଡେ ।

ଅନେକ ଦିନ ତଳର କଥା, ବର୍ଷାଋତୁ । ନଦୀ ହୋଇଯାଇଥାଏ ପୂର୍ଣ୍ଣଗର୍ଭା । ବୁଢ଼ା କଙ୍କଡା ବିଛାଟିଏ ନଦୀ ଆରପାରିକୁ ଯିବାକୁ ଚାହୁଁଥାଏ, ମାତ୍ର ତା'ର ସାହସ କୁଳଉ ନଥାଏ । ହଠାତ୍ ସେ ଦେଖିଲା କୁମ୍ଭୀରଟିଏ ନଦୀ ପାର ହେବା ଲାଗି ପ୍ରସ୍ତୁତ ହେଉଛି । ସଂଗେସଂଗେ କଙ୍କଡା ବିଛାଟି ତା' ପାଖକୁ ଯାଇ ଅନୁନୟ ସ୍ୱରରେ କହିଲା-ମହାଭାଗ, ମୋର ଧାରଣା ଆପଣ ନଦୀ ପାର ହେବାକୁ ମନସ୍ଥ କରିଛନ୍ତି । ଆପଣ ତ ଜଣେ ଦକ୍ଷ ସନ୍ତରଣକାରୀ । ଆପଣଙ୍କ ପିଠିରେ ବସାଇ ମୋତେ ଟିକେ ଆରପାରିକୁ ନେଇପାରିବେ କି ?

କଙ୍କଡା ବିଛାର ଚାଟୁ କଥାରେ ତରଳିନଯାଇ କୁମ୍ଭୀରଟି କହିଲା : ମୁଁ ଜାଣେ, ମୁଁ ତମ ପରି ବୁଦ୍ଧିମାନ ନୁହେଁ । ମାତ୍ର ତମର ଗୁଣ ସମ୍ପର୍କରେ ମୋତେ ଅନେକ ଦିନରୁ ଜଣାଅଛି । ତମକୁ ପିଠିରେ ବସାଇ ନେବା ଭଳି ଭୁଲ୍ ଅନ୍ତତଃ ମୁଁ କରିବି ନାହିଁ, କାରଣ ତମ ନାହୁଡର ଦଂଶନ ମୁଁ ସହିପାରିବିନି ।

: ଏଇଟା କିପରି ଗୋଟେ କଥା ? ଆପଣ ମୋତେ ଆପଣଙ୍କ ପିଠିରେ ବସାଇ ନଦୀ ଆରପାରିକୁ ନେବେ ଅଥଚ ମୁଁ ଆପଣଙ୍କୁ ଦଂଶନ କରିବା କଥା ଚିନ୍ତା କରିବି ?'' ଏପରି କଥାବାର୍ତ୍ତା ପରେ କୁମ୍ଭୀରଟି କଙ୍କଡା ବିଛାକୁ ପିଠିରେ ବସାଇ ନଦୀ ପାର ହେବା ଲାଗି ପ୍ରସ୍ତୁତ ହେଲା । ଠିକ୍ ମଝି ନଈରେ କଙ୍କଡା ବିଛାଟି ତା'ର ସ୍ୱାଭାବବଶତଃ

କୁମ୍ଭୀରଟିକୁ ଦଂଶନ କଲା ଏବଂ ଏହାରି ଫଳରେ କୁମ୍ଭୀରଟି ଧିରେ ଧିରେ ପାଣିରେ ବୁଡିବା ଆରମ୍ଭ କଲା । ଏଥର କୁମ୍ଭୀରଟି କହିଲା : ତୁମେ ମୋତେ କହିଥିଲ ନା ନାହୁଡ ମାରିବା କଥା ତମେ ଚିନ୍ତା କରିବ ନାହିଁ, କିନ୍ତୁ ଏ କ'ଣ କଲ ?

: କହିତ ଥିଲି ନିଶ୍ଚୟ । ହେଲେ ମୋ ସ୍ୱଭାବ କେମିତି ଛାଡିବି ?'' କଙ୍କଡା ବିଛା ଉତ୍ତର ଦେଲା ।

ସତରେ କେହି କ'ଣ ନିଜର ସ୍ୱଭାବ ଛାଡିପାରେ ? ଏଇ ପରିପ୍ରେକ୍ଷୀରେ ବିଚାର କଲେ ଶ୍ରୀରାମ ଜେଠ୍‌ମାଲାନିଙ୍କ ସ୍ୱଭାବ ସହିତ ଊଣାଅଧିକେ ସମସ୍ତେ ପରିଚିତ । ଏବେ ସେ ମୁଖ୍ୟ ବିଚାରପତି ଏବଂ ଆଟର୍ଣ୍ଣି ଜେନେରାଲଙ୍କ ଉପରେ କରିଥିବା ଅଭିଯୋଗ ସବୁ ନୂଆ ନୁହେଁ ।

ମାତ୍ର ଏତେଦିନ ଧରି ସେ ଚୁପ୍ ରହିଥିଲେ କାହିଁକି ? ଏହା କ'ଣ ତାଙ୍କ ସାଧୁତାର ନମୁନା ? ବିଦ୍ରୁପ କରି ସାମୁଏଲ୍ ଜନ୍‌ସନ୍ ଯାହା କହିଥିଲେ, ସେ କଥା ଆଜିବି ଜେଠ୍‌ମାଲାନିଙ୍କ ପ୍ରତି ପ୍ରଯୁଜ୍ୟ : 'ମୁଁ କୌଣସି ଲୋକର ପଛପଟେ ନିନ୍ଦା କରିବା ଆଦୌ ଭ୍ରୁକ୍ଷେପ କରେନାହିଁ, ମାତ୍ର ମୁଁ ଭାବୁଛି ଭଦ୍ରଲୋକଟି ଜଣେ ଆଇନଜୀବୀ ।'

ଶ୍ରୀଜେଠ୍‌ମାଲାନୀଙ୍କ କାର୍ଯ୍ୟକଳାପର ଏକ ସୁଦୂରପ୍ରସାରୀ ପ୍ରଭାବ ରହିଛି, ଯାହା ନିଶ୍ଚିତ ଭାବେ ଭୟଙ୍କର । ଏପରି ପରସ୍ପର ପ୍ରତି କାଦୁଅ ଫୋପଡାରେ ଜନସାଧାରଣଙ୍କର ଆଇନ ବ୍ୟବସ୍ଥା ଉପରୁ ଆସ୍ଥା ହିଁ ଚାଲିଯିବ । ଯାହା ଗଣତନ୍ତ୍ରର ହୃତ୍‌ପିଣ୍ଡ ସଦୃଶ । ଏହା ଗଣତନ୍ତ୍ରର ମୃତ୍ୟୁଘଣ୍ଟା ବାଜିବା ସହ ସମାନ । ତାହାହିଁ ଆଜି ଚିନ୍ତାର ବିଷୟ ।

# ସୂର୍ଯ୍ୟୋଦୟର ଦେଶ - ୨

ଏକଦା ଗୋଟିଏ ଦମ୍ପତି ନିଜ ଘରର କାମକୁ ନେଇ ସବୁବେଳେ ଝଗଡା କରୁଥିଲେ । ସ୍ତ୍ରୀଟି ଘରେ ଠିକ୍ ଭାବେ କାମ କରୁନି ବୋଲି ସ୍ୱାମୀ ଅଭିଯୋଗ କଲାବେଳେ, ସ୍ୱାମୀ ଜଣକ ଖୁବ୍ ଦାୟିତ୍ୱହୀନ ବୋଲି ସ୍ତ୍ରୀ ଦୋଷାରୋପ କରୁଥିଲେ । ଅବଶେଷରେ, ଏଇ କଳହକୁ ବିଦାୟ ଦେବା ଲାଗି ସେମାନେ ନିର୍ଣ୍ଣୟ କଲେ ଯେ ଘର ଭିତରେ ଘଟୁଥିବା ସମସ୍ତ କାମର ଦାୟିତ୍ୱ ସ୍ତ୍ରୀ ନେବ ଏବଂ ଘର ବାହାରେ ଯାହାସବୁ ଘଟିବ ସ୍ୱାମୀ ସେସବୁ ସମ୍ଭାଳିବ । କିଛିଦିନ ପରେ ଯେତେବେଳେ ସ୍ୱାମୀଟି ଗାଁ ମୁଣ୍ଡ ଟୁଙ୍ଗୀ ଘରେ ବସି ଗପ ଜମେଇଥିଲା, ଠିକ୍ ସେଇ ସମୟରେ ଜଣେ ଆସି ଖବର ଦେଲା ଯେ, ତା'ର ଘର ଭିତରେ ନିଆଁ ଲାଗିଯାଇଛି । ସ୍ୱାମୀଟି ତତ୍‌କ୍ଷଣାତ୍ ଉତ୍ତର ଦେଲା : ମୁଁ କ'ଣ କରିପାରିବି ? ସେ ଦାୟିତ୍ୱ ମୋର ନୁହେଁ, ଘର ଭିତରର ଦାୟିତ୍ୱ ମୋ' ସ୍ତ୍ରୀର ।'' ଏଥିରୁ ଘରଟିର ଅବସ୍ଥା କ'ଣ ହୋଇଥିବ ସହଜରେ ଅନୁମାନ କରାଯାଇପାରେ ।

ପରସ୍ପର ପ୍ରତି ଥିବା ନୈତିକ ଦାୟିତ୍ୱ ବିନା ଏବଂ ବିଶ୍ୱାସରହିତ ଦାମ୍ପତ୍ୟ ଜୀବନ କିପରି ମାରାତ୍ମକ ହୋଇପାରେ ତା'ର ଅନେକ ଉଦାହରଣ ଏଠି ଦିଆଯାଇପାରେ । ବିଶ୍ୱାସରେ ହିଁ ଭଗବାନ ମିଳିଯା'ନ୍ତି ବୋଲି ଏକ ଧାରଣା ଆମକୁ ଦିଆଯାଇଛି କୈଶୋରରୁ । ତର୍କ କୁଆଡେ ଭକ୍ତଠାରୁ ଭଗବାନଙ୍କୁ ଦୂରେଇ ରଖିବା ଲାଗି ପାଚେରୀଟିଏ ତିଆରି କରିଥାଏ, ତେବେ ବିଶ୍ୱାସ ଓ ଅବିଶ୍ୱାସର ଖେଳକୁ ନୂଆ ସଂଜ୍ଞା ଦେବାକୁ ଯାଇ କବି ରୋଲାଣ୍ଡ ଥରେ କହିଥିଲେ : କୌଣସି ସ୍ୱାମୀକୁ ବେଶୀ ଅବିଶ୍ୱାସ କରନାହିଁ ଏବଂ କୌଣସି ଅବିବାହିତ ଯୁବକକୁ ବେଶୀ ବିଶ୍ୱାସ କରନାହିଁ ।'' ମାତ୍ର ମାତ୍ରାଧିକ ବିଶ୍ୱାସ ବେଳେ ବେଳେ ମଣିଷକୁ ଏକ ଅନିର୍ବଚନୀୟ ଯନ୍ତ୍ରଣା ଦେବାରେ ସହାୟକ ହୋଇଥାଏ । ଗୋଟିଏ ହେଟା ବାଘର ନିରୀହପଣ, ଘୋଡାର ସ୍ୱାସ୍ଥ୍ୟ, ବାଳକର ପ୍ରେମ ଏବଂ ବେଶ୍ୟାର ପ୍ରତିଜ୍ଞା ଉପରେ ଯେଉଁମାନେ ବିଶ୍ୱାସ କରନ୍ତି, ସେମାନଙ୍କୁ କେବଳ ପାଗଳର ଆଖ୍ୟା ଦିଆଯାଇପାରେ ବୋଲି ସେକ୍ସପିଅର କହିଛନ୍ତି ।

ବିଶ୍ୱାସ ହିଁ ବନ୍ଧୁତାର ସହୋଦର । ବିଶ୍ୱାସ ରହିତ ଜୀବନ ସମ୍ପର୍କରେ ଟିପ୍ପଣୀ ଦେଇ କାଥେର୍‌ଉଡ୍ କହନ୍ତି : ବର୍ଷବର୍ଷ ଧରି ଗୋଟିଏ ଛାତ ତଳେ ରହୁଥିବା ଦୁଇଜଣ ବ୍ୟକ୍ତି ପରସ୍ପରକୁ ସବୁଦିନେ ଭେଟୁଥିଲେ ବି ସେମାନେ ପରସ୍ପରର ବନ୍ଧୁ ହୋଇପାରନ୍ତିନି

ଅଥଚ ମାତ୍ର ଗୋଟିଏ ଥର ଦେଖାରେ କେଇପଦ କଥାବାର୍ତ୍ତା ଦୁଇଜଣ ବ୍ୟକ୍ତିଙ୍କୁ ବେଶ୍ ନିକଟତର କରିଦିଏ ।'' ଦୁହିଁଙ୍କର ରୁଚି ଏକା ହେଲେ ହିଁ ବନ୍ଧୁତାର ଜୁଆର ଉଠେ । ଜଣକର ଆଦର୍ଶ ଆରଜଣକୁ ଅନୁପ୍ରେରିତ କରେ । ଜଣେ ଭଗବାନ ହେଲେ ଆର ଜଣକ ଭକ୍ତ ହୋଇଯାଏ ।

ଏ ସମ୍ପର୍କରେ ଆମ ସମୟର ଥିବା ଅନେକ ଉଦାହରଣ ଭିତରୁ ଗୋଟିଏ ଏଠି ନିଆଯାଇପାରେ । ଘଟଣାଟି ଘଟିଥିଲା ଜାପାନର ପୂର୍ବତନ ପ୍ରଧାନମନ୍ତ୍ରୀ ତାକେସିତାଙ୍କ ଇସ୍ତଫା ଦେବାର ମାତ୍ର ଦିନକ ପରେ ।

ରିକ୍ରୁଟ୍‌ମେଣ୍ଟ ସ୍କାଣ୍ଡାଲ୍‌ରେ ଅଭିଯୁକ୍ତ ହେବା ପରେ ତାକେସିତା ପ୍ରଧାନମନ୍ତ୍ରିତ୍ୱରୁ ଓହରି ଆସିବାକୁ ସ୍ଥିର କରିଥିଲେ । ଜାପାନର ରାଜନୈତିକ ଇତିହାସରେ ଏହା ଅବଶ୍ୟ ନୂତନ ଘଟଣା ନଥିଲା । ମାତ୍ର ତାକେସିତାଙ୍କ ଇସ୍ତଫା ଘୋଷଣାର ପରବର୍ତ୍ତୀ ଦିନ ତାଙ୍କର ଘନିଷ୍ଠ ସହଯୋଗୀ ଇହେଇ ଆଓକି ଆତ୍ମହତ୍ୟା କଲେ ।

ଲହେଇ ଆଓକିଙ୍କ ମୃତ୍ୟୁ ଜାପାନର ବୁଦ୍ଧିଜୀବୀ ମହଲରେ ଗଭୀର ଉଦ୍‌ବେଗ ସୃଷ୍ଟି କରିଥିଲା । ରିକ୍ରୁଟ୍‌ମେଣ୍ଟ ସ୍କାଣ୍ଡାଲ୍‌ରେ ଅଭିଯୁକ୍ତ ତାକେସିତାଙ୍କର ସେ ଥିଲେ ବ୍ୟକ୍ତିଗତ ସଚିବ । ରାଜନୈତିକ ମହଲରେ ତାଙ୍କର ଅନେକ ଖ୍ୟାତି ଥିଲା ଏବଂ ତାଙ୍କ ଭଳି ତୀକ୍ଷ୍ଣ ବୁଦ୍ଧିଦୀପ୍ତ ସଚିବଙ୍କୁ ପାଇବା ପାଇଁ ଅନେକ ନେତା ମନେମନେ ଝୁରି ହେଉଥିଲେ । ମାତ୍ର ନିଜକୁ ଫାଶି ଦେଇ ଏବଂ ହାତର ବଳା କାଟି ସେ ନିଜ ଜୀବନ ପ୍ରଦୀପକୁ ନିର୍ବାପିତ କରିଦେଲେ । ଏହା କିନ୍ତୁ ତାକେସିତା ଅଥବା ତାଙ୍କ ନାମରେ ହୋଇଥିବା ଅଭିଯୋଗର ଆତ୍ମଦହନକୁ ଯେ ନିର୍ବାପିତ କରିପାରିବ ନାହିଁ-ସେ କଥା ବିଶ୍ୱକୁ ବୁଝିବାକୁ ଡେରି ହେଲା ନାହିଁ ।

ମାତ୍ର ବଦନାମରେ ଜର୍ଜରିତ ଆଓକି ଲଜ୍ଜାରେ ଆଦୌ ନିଜ ଘରକୁ ଯାଉନଥିଲେ । ନିଜ ପରିବାରଠୁ ଦୂରରେ ରହି ସେ ଜୀବନର ଶେଷ କେଇଦିନ ଏକ ଅଜ୍ଞାତ ହୋଟେଲ୍‌ରେ ରାତ୍ରି ଯାପନ କରୁଥିଲେ । ସେ ଜାଣିଥିଲେ ଏ କଳଙ୍କ ପାଇଁ ତାଙ୍କ ପରିବାରର ଲୋକେ ତାଙ୍କୁ ଆଦୌ ଉତ୍ସାହିତ କରିବେ ନାହିଁ । ବରଂ ନିଜର ଅପକର୍ମ ପାଇଁ ସେମାନେ ତାଙ୍କୁ ଦାୟୀ କରିବେ ।

ଏକଦା ଏହାହିଁ ଥିଲା ଭାରତୀୟ ଜନସଂସ୍କୃତି ଓ ପରମ୍ପରା । ଦସ୍ୟୁ ରତ୍ନାକରଙ୍କ ଜୀବନରେ ତାହାହିଁ ଘଟିଥିଲା । ତାଙ୍କ ଜୀବନର ଅପକର୍ମ ପାଇଁ ପରିବାରର କେହି ଯେତେବେଳେ ନିଜକୁ ଅଂଶୀଦାର କଲେ ନାହିଁ ଦସ୍ୟୁ ରତ୍ନାକରଙ୍କ ଅନୁତାପଜନିତ ଜ୍ଞାନୋଦୟ ହିଁ ମହାକାବ୍ୟ ରାମାୟଣ ସୃଷ୍ଟି ପ୍ରଚ୍ଛଦ କାହାଣୀ ଭାବେ ସ୍ୱୀକୃତି ପାଇଲା । ସୁଖର କଥା, ଆଓକିଙ୍କ ପରି ଅନୁତାପ କରି ଦସ୍ୟୁ ରତ୍ନାକର ଆତ୍ମହତ୍ୟା କରିନାହାଁନ୍ତି ।

ଅବଶ୍ୟ ଆଓକିଙ୍କ ଆତ୍ମହତ୍ୟା ଜାପାନୀ ପରମ୍ପରା ଦ୍ୱାରା ସ୍ୱୀକୃତ । ଜଣେ ବିଶ୍ୱସ୍ତ ସେବକ ତା'ର ପ୍ରଭୁଙ୍କୁ ରକ୍ଷା କରିବା ପାଇଁ ଅନେକ ସମୟରେ ଆତ୍ମବଳୀ ଦେଇଥାଏ । ଆଓକିଙ୍କ ମୃତ୍ୟୁରେ ଗଭୀର ଭାବେ ବ୍ୟଥିତ ହୋଇ ପ୍ରଧାନମନ୍ତ୍ରୀ ତାକେସିତା ସେଦିନ କହିଥିଲେ: ତାଙ୍କର ଏତାଦୃଶ କାର୍ଯ୍ୟ ପାଇଁ ମୁଁ ଗଭୀର ଭାବେ ଦୁଃଖିତ । ଦୀର୍ଘ ତିରିଶ ବର୍ଷ ହେଲା ଆମେ ସାଙ୍ଗ ହୋଇ ଗୋଟିଏ ରାସ୍ତାରେ ଚାଲୁଥିଲୁ ।''

ଆତ୍ମହତ୍ୟା କରିବାର ପୂର୍ବଦିନ ହିଁ ଆଓକି ତାଙ୍କ ଅଫିସ୍‌ର ସବୁ ସଦସ୍ୟଙ୍କୁ ଭେଟିଥିଲେ ଏବଂ ତାକେସିତାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ ବିରୁଦ୍ଧରେ ଲଢ଼ିବା ପାଇଁ ପ୍ରତ୍ୟେକଙ୍କୁ ପରାମର୍ଶ ଦେଇଥିଲେ । କିନ୍ତୁ ରିକ୍ରୁଟମେଣ୍ଟ ସ୍କାଣ୍ଡାଲ୍‌ର ମୁଖ୍ୟ ଆସାମୀ ଥିଲେ ସେ ନିଜେ ।

ଆଓକିଙ୍କ ମୃତ୍ୟୁ ପରେ ରିକ୍ରୁଟ୍‌ମେଣ୍ଟ ସ୍କାଣ୍ଡାଲ୍‌ର ତଦନ୍ତ କେଉଁ ମୋଡ ନେଲା ସେ ପ୍ରଶ୍ନ ଆଜି ଅବାନ୍ତର । ମାତ୍ର ଜଣେ ପ୍ରଭୁଭକ୍ତ ସେବକର ଆତ୍ମହତ୍ୟା କଥା ମାନବିକ ଇତିହାସର ସମ୍ବେଦନ ପୃଷ୍ଠାରେ ନିଶ୍ଚିତ ଭାବେ ଲେଖା ହୋଇ ରହିବ, ଏଥିରେ ସନ୍ଦେହ ନାହିଁ । ଏହାହିଁ ବୋଧେ ବିଶ୍ୱବାସୀଙ୍କୁ ଜାପାନର ଆଉ ଏକ ଅନୁଭବର ଉପହାର ।

# ଦେଖେଙ୍ଗେ

୧୯୩୬ ମସିହାରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଭାବେ ମାନ୍ୟତା ପାଇବା ବେଳକୁ ଏହାର ଜିଲ୍ଲା ସଂଖ୍ୟା ଥିଲା ମାତ୍ର ଛଅ । ଏହାର ବାରବର୍ଷ ପରେ ଓଡିଶାରେ ଗଡଜାତ ଆନ୍ଦୋଳନର ଯେଉଁ ସୂତ୍ରପାତ ହେଲା ତା'ର ଫଳସ୍ୱରୂପ ଆହୁରି ସାତଗୋଟି ଜିଲ୍ଲା ଓଡିଶାରେ ମିଶିଲା । ଏଥିସହିତ ଷଢ଼େଇକଳା ଏବଂ ଖରସୁଆଁ ମଧ୍ୟ ଓଡିଶା ସହ ରହିଥିଲା । ମାତ୍ର ଓଡିଶାର ବରପୁତ୍ର ହରେକୃଷ୍ଣ ମହତାବ ତତ୍କାଳୀନ ରାଷ୍ଟ୍ରପତି ବାବୁ ରାଜେନ୍ଦ୍ର ପ୍ରସାଦଙ୍କୁ ସନ୍ତୁଷ୍ଟ କରିବା ପାଇଁ ବିହାର ସୀମାନ୍ତ ସନ୍ନିକଟ ଏଇ ଦୁଇଟି ଅଞ୍ଚଳକୁ ତାଙ୍କ ହାତରେ ସମର୍ପଣ କରିଦେଲେ । ସବୁ ତୋଷାମଦର ଗୋଟିଏ ପୁରସ୍କାର ମଧ୍ୟ ଥାଏ । ହରେକୃଷ୍ଣଙ୍କୁ ଏଥିପାଇଁ ମହାରାଷ୍ଟ୍ର ରାଜ୍ୟପାଳ ହେବାର ସୌଭାଗ୍ୟ ମିଳିଥିଲା । ତାଙ୍କୁ ମିଳିଥିବା ଏଇ ପଦବୀ ପାଇଁ ଆମେ ଓଡିଶାବାସୀ ଆଜିବି ଗର୍ବ କରୁ । ଏଇ ପରି ଆଉ ଆଠ ବର୍ଷ କଟିଗଲା, ସୀମା କମିଶନଙ୍କ ରିପୋର୍ଟକୁ ପ୍ରତିବାଦ କରି ଆମର ତତ୍କଳୀନ ନେତୃବର୍ଗ ଷଢ଼େଇକଳା ଓ ଖରସୁଆଁକୁ ଓଡିଶା ସହ ମିଶାଇବା ପାଇଁ ପ୍ରବଳ ସ୍ୱର ଉତ୍ତୋଳନ କଲେ । ମାତ୍ର ସେମାନଙ୍କ ସ୍ୱର ଦିଲ୍ଲୀରେ ବସିଥିବା କ୍ଷମତାସୀନଙ୍କ ହୃଦୟରେ ଆବେଗ ସୃଷ୍ଟି କରିବାରେ ସାହାଯ୍ୟ କଲାନି । ଆନ୍ଦୋଳନଗୁଡିକ ଇତିହାସ ବିଭାଗର ପାଠ୍ୟକ୍ରମରେ କେବଳ ଯାହା ସ୍ଥାନୀତ ହେଲା ପରବର୍ତ୍ତୀ ସମୟରେ ଛାତ୍ରମାନଙ୍କ ପାଇଁ ।

ହଠାତ୍ ୪୫ ବର୍ଷ ପରେ ଓଡିଶାର କେତେକ ବରପୁତ୍ରଙ୍କର ସ୍ୱାଭିମାନଙ୍କର ଅଭ୍ୟୁଦୟ ହୋଇଛି । ସେମାନେ ଭାବିଲେ, କେନ୍ଦ୍ର ସରକାର ଉତ୍ତରାଞ୍ଚଳ, ଛତିଶଗଡ ଏବଂ ବନାଞ୍ଚଳ ନାମରେ ତିନୋଟି ନୂଆ ରାଜ୍ୟ ସୃଷ୍ଟି କରିବା ପାଇଁ ଯେଉଁ ପ୍ରକ୍ରିୟା ଆରମ୍ଭ କରିଛନ୍ତି ଏଇ ସମୟରେ ହୋହଲ୍ଲା କଲେ ହୁଏତ ଷଢ଼େଇକଳା ଏବଂ ଖରସୁଆଁ ଓଡିଶାକୁ ପୁନର୍ବାର ଫେରାଇ ଦିଆଯିବ । ଏ ଧାରଣା ଏବେ ଭୁଲ୍ ପ୍ରମାଣିତ ହୋଇଛି । ଆମ ରାଜନୈତିକ ଇଚ୍ଛାଶକ୍ତି ଓ ଜାତୀୟ ଚରିତ୍ରର ଅଧଃପତନ ଏଥିପାଇଁ ଦାୟୀ । ଅନ୍ୟକୁ ଦୋଷ ଦେଇ ନିଜକୁ ସୁରକ୍ଷିତ ରଖିବାର ଅଭ୍ୟାସ ହିଁ ଆମ ପାଇଁ କାଳ ହୋଇଛି ସବୁବେଳେ ।

ଯଦିଓ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇବା ଆଗରୁ ଉତ୍କଳମଣି ଏବଂ ଉତ୍କଳ ଗୌରବ ଏ ସଂସାରରୁ ବିଦାୟ ନେଇ ସାରିଥିଲେ ମାତ୍ର ସେମାନଙ୍କ ସଂଗ୍ରାମ

ଓ ପ୍ରେରଣା ହିଁ ଏଇ ରାଜ୍ୟ ସୃଷ୍ଟି ପାଇଁ ଦାୟୀ । ଏ କଥା ଅନସ୍ୱୀକାର୍ଯ୍ୟ ।

ଓଡିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ତତ୍କାଳୀନ ଭାରତ ସରକାରଙ୍କ ନିର୍ଦ୍ଦେଶକ ତଥା ଏସ.ପି. ଓଡୋନେଲଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଗଲା । ଏହି କମିଟିରେ ଆସାମର ତରୁଣ ରାମ ଫୁକନ୍, ବମ୍ବେର ଏଚ୍.ଏମ୍.ମେହେଟ୍ଟା, ମାନ୍ଦ୍ରାଜର ସି.ଭି.ଏସ୍. ନରସିଂହ ରାଜୁ, ବିହାରର ସଚ୍ଚିଦାନନ୍ଦ ସିହ୍ନା ଏବଂ ଓଡିଶାର ଗଜପତି କୃଷ୍ଣଚନ୍ଦ୍ର ଦେବ ସଭ୍ୟ ରହିଥିଲେ । ୧୯୩୧ ମସିହାରେ ମାନ୍ଦ୍ରାଜର ତତ୍କାଳୀନ ଜନଗଣନା ଅଧିକାରୀ ଡବ୍ଲ୍ୟୁ.ଏମ୍. ଇଟ୍ସ୍ ନିଜର ସାକ୍ଷ୍ୟ ପ୍ରଦାନ ପୂର୍ବକ ଦୁଇଟି ମାନଚିତ୍ର ପ୍ରଦାନ କଲେ । ଗୋଟିଏ ଥିଲା ଭାଷାଭିତ୍ତିକ ଓ ଅନ୍ୟଟି ଜାତିଭିତ୍ତିକ । ଜାତି ଭିତ୍ତିକ ମାନଚିତ୍ରଟିରେ ସୀମା ନିର୍ଦ୍ଧାରଣ ହୋଇ ଥିଲେ ଓଡିଶାର ସୀମା ବିଶାଖାପାଟଣା ଯାଏ ପହଞ୍ଚି ପାରିଥା'ନ୍ତା । ମାତ୍ର ଓଡୋନେଲ୍ ମାନ୍ଦ୍ରାଜ ସରକାରଙ୍କ ଲ୍ୟାଣ୍ଡ ରେକର୍ଡ ବିଭାଗ ସଚିବ କ୍ରୋମ୍ବିଙ୍କ ପରାମର୍ଶରେ ପ୍ରଥମ ମାନଚିତ୍ରଟିକୁ କାର୍ଯ୍ୟକାରୀ କରିବା ଫଳରେ ଓଡିଶାର ଦକ୍ଷିଣରେ ଥିବା ମଞ୍ଜୁଷା, ଟିକାଲି, ଜଳନ୍ତର, ତରଳା ଓ ବୁଡାରସିଙ୍ଗି ଅଞ୍ଚଳ ଓଡିଶାରୁ ସବୁଦିନ ପାଇଁ ଛଡାଇ ନିଆଗଲା । କୃଷ୍ଣଚନ୍ଦ୍ର ଗଜପତିଙ୍କ ସହ କ୍ରୋମ୍ବିଙ୍କର ଏକ ବ୍ୟକ୍ତିଗତ ମନୋମାଳିନ୍ୟ ଯୋଗୁଁ ଓଡିଆ ଜାତିକୁ ଏହାର ପରାଭବ ଭୋଗିବାକୁ ପଡିଥିଲା । କେବଳ ଷଢ଼େଇକଳା ଏବଂ ଖରସୁଆଁକୁ ନେଇ ଆମେ ଚିନ୍ତିତ । ଓଡିଶାର ଅନ୍ୟାନ୍ୟ ସୀମାନ୍ତବର୍ତ୍ତୀ ଅଞ୍ଚଳ ଅର୍ଥାତ୍ ଜଗଦଳପୁର (ମଧ୍ୟପ୍ରଦେଶ), ଶ୍ରୀକାକୁଳମ୍ (ଆନ୍ଧ୍ରପ୍ରଦେଶ), ସିଂହଭୂମି (ବିହାର) ଏବଂ ମେଦିନିପୁର (ପଶ୍ଚିମବଙ୍ଗ) ଅଞ୍ଚଳରେ ବସବାସ କରୁଥିବା ଓଡିଆଙ୍କ ପାଇଁ ଏଯାବତ୍ ଆମେ କ'ଣ କରିଛୁ ? କେବଳ ଶସ୍ତା ବିବୃତ୍ତି ଏବଂ ବିଧାନସଭା ଗୃହରେ ମୁଥ ମରାମରି ହେଲେ ହିଁ ଆମେ ନିଜର ଓଡିଆମୀ ବଜାୟ ରଖିପାରିବା - ଏ ଧାରଣା ଭୁଲ୍ ।

ଓଡିଆ ହେଉଛି ଏକ ଅମେରୁଦଣ୍ଡୀ ପ୍ରାଣୀ । ଏହାର ନେତୃବର୍ଗ ଠିକ୍ ସେଇପରି ହେବାକୁ ବାଧ୍ୟ । ଅତୀତରେ ସେମାନଙ୍କ ମଧ୍ୟରେ ସମନ୍ୱୟର ଘୋର ଅଭାବ ଥିଲା ଏବଂ ଏବେବି ସେମାନେ ପରସ୍ପର ଗୋଡ ଟଣାଟଣିରେ ବ୍ୟସ୍ତ ।

ଓଡିଶାବାସୀ ଷଢ଼େଇକଳା ଏବଂ ଖରସୁଆଁକୁ ଆଣିବା ପାଇଁ ଦାବି ନକରି ଗୋଟିଏ ଭିକାରୀ ପରି ଦାନ ମାଗିଥିଲେ କେନ୍ଦ୍ର ସରକାରଙ୍କୁ । ସେଇଥିପାଇଁ ତ ପ୍ରଧାନମନ୍ତ୍ରୀ 'ଦେଖେଙ୍ଗେ' କହି ସେମାନଙ୍କ କଥାରେ ଗୁରୁତ୍ୱ ଦେଇ ନଥିଲେ । ପରେପରେ ଗୃହମନ୍ତ୍ରୀ ଏବଂ ସୂଚନା ଓ ପ୍ରସାରଣ ମନ୍ତ୍ରୀଙ୍କ ବିବୃତ୍ତିରୁ ଏକଥା ସ୍ପଷ୍ଟ ହୋଇଯାଇଛି ଯେ ଆମେ ଆମର ଦାବିକୁ ଠିକ୍ ଭାବେ ଉପସ୍ଥାପିତ କରିବାରେ ଅସଫଳ ହୋଇଛୁ । ଏହା କ'ଣ ଆମ ନେତୃତ୍ୱର ଦୁର୍ବଳ ଦିଗ ନୁହେଁ ।

ସଫଳ ନେତୃତ୍ୱ କେବଳ ବାକ୍ୟୁଦ୍ଧରେ ହୋଇ ନଥାଏ ବରଂ ବ୍ୟକ୍ତିର ଆଚରଣ ଓ କାର୍ଯ୍ୟପ୍ରଣାଳୀରୁ ପ୍ରମାଣିତ ହୋଇଥାଏ । ଜନସାଧାରଣଙ୍କ ଆଶାର ପ୍ରଦୀପଟିକୁ ଜଳାଇ ରଖିବା ହେଉଛି ଅସଲ ନେତାର ଦାୟିତ୍ୱ । ସେ ଦୃଷ୍ଟିରୁ ବିଚାର କଲେ ଆମକୁ ନିରାଶ ହେବାକୁ ପଡିବ । ବରଂ ଜୋ ବାଟେନ୍‌ଙ୍କ ଉକ୍ତି 'ନେତା ହିଁ ଆଶାର ବେପାରୀ' ଏଠି ଫିକା ପଡିଯିବା ସହ ଏହା ନିରାଶାର ଗନ୍ତାଘର ବୋଲି ପ୍ରମାଣିତ କରିବ ।

ଲଜ୍ଜାକର ହେଲେବି ଏହା ସତକଥା ଯେ ଆମ ଭିତରେ ଆଜି କେହି ଯୋଦ୍ଧା ନାହାଁନ୍ତି । ଯୋଦ୍ଧା ଯୁଦ୍ଧ ଭୂଇଁରେ ପ୍ରାଣବଳି ଦେବାକୁ ଶ୍ରେୟସ୍କର ମନେକରେ ମାତ୍ର ଡେଭିଡ ଓୟେନ୍‌ଙ୍କ ଭାଷାରେ : ଯୁଦ୍ଧ ମଝିରେ କୌଣସି ଯୋଦ୍ଧା ସେ ଯୁଦ୍ଧରେ ହାରିଗଲେ କ'ଣ କରିବ ଆଲୋଚନା କରେ ନାହିଁ ।

ଏବେ ଆମେ ହାରିଯିବାର ପରବର୍ତ୍ତୀ ପର୍ଯ୍ୟାୟ କଥା ଚିନ୍ତା କରୁଛୁ । ଯଦିଓ ଆମ ଆଖି ଦୁଇଟି ସମ୍ମୁଖ ଭାଗରେ ରହି ଆମକୁ ପ୍ରତୀକାତ୍ମକ ଭାବେ ଆଗେଇ ଯିବା ଲାଗି ଆହ୍ୱାନ କରୁଛନ୍ତି ମାତ୍ର ଆମକୁ ସବୁବେଳେ ଦ୍ୱିବିଧାରେ ପକାଇଛି ।

ଅନ୍ଧାରକୁ ଅଭିଶାପ ଦେବା ଅପେକ୍ଷା ମହମବତୀଟିଏ ଜାଳିବାର ଚେଷ୍ଟା ହିଁ ସମସ୍ୟାର ସମାଧାନ କରିଥାଏ । ସେଇଥିପାଇଁ ଆମକୁ 'ଦେଖେଙ୍ଗେ' ବୋଲି ଆଶ୍ୱାସନା ଦେଇ ଠକି ଦିଆଯାଏ । ତା' ନହେଲେ ଆମ ସହ ସ୍ୱର ମିଳାଇ 'ଯୁଦ୍ଧଂ ଦେହି'ର ରଣହୁଙ୍କାର କରି କେହିତ ଜଣେ କହିଥା'ନ୍ତେ : 'ଦେଖ୍ ଲେଙ୍ଗେ ।'

କିନ୍ତୁ ହାୟ । ସେଭଳି ସମ୍ଭାବନା ନିକଟ ଭବିଷ୍ୟତରେ ନାହିଁ ।

*ଅନୁପମ ଭାରତ ୪.୯.୨୦୦୦*

# ନଚିକେତାର ଦୁଃଖ

ଅଳ୍ପଦିନ ତଳେ ଭାରତର ଶକ୍ତିମନ୍ତ୍ରୀ ରଙ୍ଗରାଜନ୍ କୁମାର ମଙ୍ଗଳମ୍‌ଙ୍କ ଅକାଳମୃତ୍ୟୁ ସାରା ଭାରତବାସୀଙ୍କ ହୃଦୟତନ୍ତ୍ରୀରେ କାରୁଣ୍ୟର ସ୍ୱର ତୋଳି ଦେଇଛି । ଭାରତର ଯୁବ ପିଢ଼ିର ସବା ଆଗରେ ଥିବା କେଇଜଣଙ୍କ ଭିତରେ ତାଙ୍କ ନାଁ ବରାବର ରହୁଥିଲା । ବିଧିର ବିଚାର ବେଳେବେଳେ ମଣିଷର ସମସ୍ତ ଜ୍ଞାନ, ଗର୍ବ ଓ ଗାରିମାକୁ ତୁଚ୍ଛ ପ୍ରମାଣିତ କରିଥାଏ । ଏଠି ଦୋହରାଇବା ଉଚିତ୍ ହେବ ଯେ ରଙ୍ଗରାଜନ୍ କୁମାର ମଙ୍ଗଳମ୍‌ଙ୍କ ପିତା, ଇନ୍ଦିରାଗାନ୍ଧିଙ୍କ ସରକାରର ଜଣେ କେନ୍ଦ୍ର ମନ୍ତ୍ରୀ ଥିବାବେଳେ ବିମାନ ଦୁର୍ଘଟଣାରେ ପ୍ରାଣ ଦେଇଥିଲେ । ଜଣେ ସ୍ପଷ୍ଟବାଦୀ ଭାବରେ ତାଙ୍କର ପିତା ମୋହନ କୁମାର ମଙ୍ଗଳମ୍ ବେଶ୍ ବିବାଦୀୟ ପୁରୁଷ ଥିଲେ । ମୋହନଙ୍କ ମୃତ୍ୟୁ ବେଳକୁ ରଙ୍ଗରାଜନ୍‌ଙ୍କ ବୟସ ଏକୋଇଶି ବର୍ଷ ହୋଇଥିଲା ଏବଂ ରଙ୍ଗରାଜନ୍‌ଙ୍କ ମୃତ୍ୟୁ ବେଳେ ତାଙ୍କ ପୁତ୍ରର ମଧ୍ୟ ଏବେ ବୟସ ଏକୋଇଶି ବର୍ଷ । ଏକଥାଟି ପ୍ରକାଶ କରିଛନ୍ତି ଭାରତର ଗୃହମନ୍ତ୍ରୀ ଲାଲ୍‌କୃଷ୍ଣ ଆଦ୍ୱାନି ।

ଅବଶ୍ୟ ଏହାକୁ ଏକ ସଂଯୋଗ ଆଖ୍ୟା ଦିଆଯାଇପାରେ । ତଥାପି ଏହା ସତ୍ୟ ଯେ ମୃତ୍ୟୁର ରହସ୍ୟ ଉନ୍ମୋଚନ କାରିବାରେ ଏଯାଏ କେହି ସକ୍ଷମ ହୋଇପାରି ନାହାନ୍ତି । ଜନ୍ମ ଓ ମୃତ୍ୟୁ ମଧ୍ୟରେ ରହିଥିବା ବାକି ସମୟକୁ ଜୀବନ ବା ମଧ୍ୟାନ୍ତର କହିଛନ୍ତି ଜର୍ଜ ସାନ୍ତାୟନ । ଯେହେତୁ ଜନ୍ମ ଅଥବା ମୃତ୍ୟୁକୁ କେହି ରୋକିପାରିବେ ନାହିଁ, ଜୀବନକୁ ଉପଭୋଗ କରିବା ଲାଗି ସେ ପରାମର୍ଶ ଦେଇଛନ୍ତି ।

ମଣିଷ ଜନ୍ମନେବାର ପର ମୁହୂର୍ତ୍ତରେ ହିଁ ମରରିବାକୁ ଆରମ୍ଭ କରିଥାଏ । ତା'ର ଅନ୍ତିମ ମୁହୂର୍ତ୍ତଟି ଜନ୍ମସମୟ ସହ ଯୋଡ଼ି ହୋଇ ଯାଇଥାଏ ଯେପରି । ମୃତ୍ୟୁ ଗଳ୍ପଟି ଏକ ଅସରନ୍ତି କାହାଣୀ । ତେବେ ଯେଉଁ ପରିସ୍ଥିତିରେ ରଙ୍ଗରାଜନ୍‌ଙ୍କ ମୃତ୍ୟୁ ହେଲା, ତାହା ସମସ୍ତଙ୍କ ହୃଦୟରେ ଆଘାତ ଦେଇଛି । ମୃତ୍ୟୁର କିଛି ମାସ ପୂର୍ବରୁ ସେ ଦିଲ୍ଲୀର ଏକ ବିଖ୍ୟାତ ଘରୋଇ ଚିକିତ୍ସାଳୟ 'ଆପୋଲୋ ହସ୍‌ପିଟାଲ୍'ରେ ଚିକିତ୍ସିତ ହେଉଥିଲେ । ଉକ୍ତ ଚିକିତ୍ସାଳୟରେ ହୋଇଥିବା ଅବହେଳା ଯୋଗୁଁ ରଙ୍ଗରାଜନ୍‌ଙ୍କ ଅକାଳ ମୃତ୍ୟୁ ହୋଇଛି ବୋଲି ଦେଶରେ ଚହଳ ପଡ଼ିଗଲା । ଏପରିକି ଲୋକସଭାରେ ଏ ବିଷୟରେ ଚର୍ଚ୍ଚା ହୋଇ ଏବଂ ସ୍ୱାସ୍ଥ୍ୟମନ୍ତ୍ରୀ ଏ ସଂପର୍କରେ ଅନୁସନ୍ଧାନ ପାଇଁ ନିଷ୍ପତ୍ତି ମଧ୍ୟ ନେଇ ସାରିଛନ୍ତି । ଭାରତର ଜଣେ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ, ଦେଶର ଅତ୍ୟାଧୁନିକ ଚିକିତ୍ସାଳୟରେ ଠିକ୍ ଭାବେ ଚିକିତ୍ସିତ ନ ହୋଇପାରି ଯେପରି

ଭାବରେ ଅକାଳ ମୃତ୍ୟୁକୁ ଆଲିଙ୍ଗନ କଲେ, ଭାରତର କୋଣ ଅନୁକୋଣ ଓ ସୀମାନ୍ତବର୍ତ୍ତୀ ସ୍ଥାନମାନଙ୍କରେ ଜନସାଧାରଣଙ୍କ ସ୍ୱାସ୍ଥ୍ୟରକ୍ଷା କଥା ନେଇ ଚିନ୍ତା କରିବା କେବଳ ସମୟ ଅପଚୟ ହିଁ ହେବ ବୋଲି ମନେ କରିବାକୁ ହେବ ।

ଯଦି କୌଣସି ପୁଣ୍ୟ ବଳରୁ ରୋଗୀଟିଏ ବଂଚିଯାଏ, ସେ ଭଗବାନଙ୍କ ପାଖରେ କୃତଜ୍ଞ ରହିବା ଉଚିତ୍ । ପ୍ରତିଟି ଡାକ୍ତର ଶିକ୍ଷାଦାନ ସମାପ୍ତ ପରେ ଯେଉଁ ଶପଥଟି ନିଅନ୍ତି ପରବର୍ତ୍ତୀ କାଳରେ ରୋଗୀକୁ ଦେଖିବା ମାତ୍ରେ ସେମାନେ ସେଇ କଥାଟି ବିସ୍ମୃତ ହୋଇ ଯା'ନ୍ତି । ମଣିଷର ରୋଗକୁ ଆରୋଗ୍ୟ କରିବା ପରିବର୍ତ୍ତେ ଏମାନେ ଏବେ ମଶା ପରି ତା'ର ରକ୍ତ ଶୋଷିବାରେ ବ୍ୟସ୍ତ । ସେଇ ବ୍ୟସ୍ତତାରୁ ହିଁ ଜନ୍ମ ନେଇଛି ଘରୋଇ ଚିକିତ୍ସା ବ୍ୟବସ୍ଥା । ସରକାରୀ ହସ୍‌ପିଟାଲ୍‌ରେ ଚାକିରି କରି ଏମାନେ ଅର୍ଥମୋହଗ୍ରସ୍ତ ହୋଇ ଘରୋଇ ଚିକିତ୍ସାରେ ଲିପ୍ତ ରୁହନ୍ତି । ନିଜ ବୃତ୍ତି, ନିଜ ସମାଜ ସହ ଏମାନେ ବିଶ୍ୱାସଘାତକତା କରନ୍ତି ।

ଏଇ ବିଶ୍ୱାସଘାତକମାନଙ୍କୁ କ୍ଷମା ଦିଆଯିବା ଉଚିତ୍ କି ନୁହେଁ, ସେ ସଂପର୍କରେ କାହାଣୀଟିଏ କୁହାଯାଇପାରେ । ଥରେ ଜଙ୍ଗଲରେ ବୁଲୁବୁଲୁ ମଣିଷଟିଏ ଏକ ବାଘ ହାବୁଡ଼ରେ ପଡ଼ିଗଲା । ସ୍ୱଭାବ ବଶତଃ ବାଘଟି ମଣିଷକୁ ଆକ୍ରମଣ କରିବା ଉଦ୍ଦେଶ୍ୟରେ ଉଦ୍ୟମ କରନ୍ତେ ଅନ୍ୟ ଉପାୟ ନପାଇ ମଣିଷଟି ବିଚରା ତା' ସାମ୍ନାରେ ଥିବା ଏକ ବିଶାଳ ଗଛ ଉପରକୁ ଚଢ଼ିଗଲା ପ୍ରାଣ ରକ୍ଷା କରିବାପାଇଁ । ମାତ୍ର ଏହା ଫଳରେ ବି ସେ ତା'ର ସଙ୍କଟରୁ ମୁକୁଳି ପାରି ନଥିଲା । କାରଣ ଗଛ ଉପରକୁ ଚଢ଼ିବା ପରେ ମଣିଷଟି ସାମ୍ନାକଲା ଆଉ ଏକ ବିପଦ । ଗଛ ଡାଳରେ ବସିଥିଲା ଗୋଟିଏ ଭାଲୁ । ଗଛ ତଳେ ଅପେକ୍ଷା କରିଥିଲା ବାଘ ମଣିଷର କୋମଳ ମାଂସ ପାଇଁ । ଲୋକଟି ପାଖରେ ଆଉ କୌଣସି ବିକଳ୍ପ ନଥିଲା କେବଳ ଭାଲୁ ସହ ମିତ୍ରତା ସ୍ଥାପନ କରିବା ଛଡ଼ା । ଭାଲୁବି ଏଥିରେ ସମ୍ମତି ଜଣାଇଲା ।

ଦିନ ଯାଇ ରାତି ହେଲା । କ୍ଳାନ୍ତ ମଣିଷର ଆଖିପତା ନଇଁ ଆସୁଥାଏ, ଟିକିଏ ଶୋଇଯିବାକୁ ଇଚ୍ଛା ହେଉଥାଏ । ଏଥିରେ ବି ଭାଲୁ ତାକୁ ସାହାଯ୍ୟ କଲା । ନିଶ୍ଚିନ୍ତରେ ସେ ଶୋଇ ପଡ଼ିଲା ଭାଲୁର ଲୋମଶ କୋଳରେ । ଗଛ ତଳେ ଅପେକ୍ଷା କରିଥିବା ଭୋକିଲା ବାଘଟି ଭାଲୁକୁ ବିଶ୍ରାମ ନେଇଥିବା ମରିଷଟିକୁ ତଳକୁ ଖସାଇ ଦେବା ଲାଗି ବାରମ୍ବାର ପ୍ରବର୍ତ୍ତାଇବାରେ ଲାଗିଲା । ମଣିଷ ସବୁଠୁ ବିପଜ୍ଜନକ ପ୍ରାଣୀ ବୋଲି ଅନେକ ଉଦାହରଣ ଦେଲା । ମାତ୍ର ଭାଲୁଟି ତାର ଚାଟୁ କଥାରେ ଆଦୌ କାନ ଦେଲାନାହିଁ । ପ୍ରାୟ ଅଧରାତି ବେଳକୁ ଭାଲୁକୁ ମଧ୍ୟ ନିଦ ଆସିଲା । ଏଥର ମଣିଷଟି ଚେଇଁ ରହିଲା ଓ ଭାଲୁଟି ତା' କୋଳରେ ଶୋଇ ପଡ଼ିଲା । ଅନୁରୂପ ଭାବେ ବାଘଟି ଭାଲୁକୁ ତଳକୁ ଖସାଇଦେବା ଲାଗି ମଣିଷକୁ ଫୁସୁଲାଇଲା ଏବଂ ଏହା କଲେ ବାଘ ତାକୁ ବିନା ଦ୍ୱିଧାରେ ମୁକ୍ତି ଦେବ ବୋଲି ପ୍ରତିଜ୍ଞା କଲା । ତା'ର ପ୍ରରୋଚନାରେ ମଣିଷ ନିଦ ଯାଇଥିବା ଭାଲୁଟିକୁ ତଳକୁ ଖସାଇ

ଦେବା ବେଳକୁ ଭାଲୁଟି ଗଛର ଗୋଟିଏ ଡାଳକୁ ଧରି ଝୁଲିପଡ଼ିଲା । ଏତିକିବେଳେ ବାଘଟି ହସି ହସି ଭାଲୁକୁ ମଣିଷର ସଙ୍କୋଚପଣିଆ କଥା ଦୋହରାଇଲା ତାଚ୍ଛଲ୍ୟରେ । କ୍ରୁଦ୍ଧ ଭାଲୁଟି ମଣିଷକୁ ଚାହିଁବା ମାତ୍ରେ ଅଭ୍ୟାସଗତ ମଣିଷଟି ପୁଣିଥରେ ଭାଲୁର ଗୋଡ ଧରି ଭୁଲ୍ ସ୍ୱୀକାର କରିବା ସହ ତାକୁ କ୍ଷମା କରିଦେବା ଲାଗି ଅନେକ କାକୁତି ମିନତି କଲା । ବାଘକୁ ଜବାବ୍ ଦେବା ଛଳରେ ଏଥର ଭାଲୁ କହିଲା : ମୁଁ ଚାହିଁଲେ ଅନାୟାସରେ ମଣିଷଟିକୁ ତଳେ ପକାଇ ପାରିବି ତା'ର ଏଇ ବିଶ୍ୱାସଘାତକତା ପାଇଁ, ମାତ୍ର ତା'ର ଏଇ ପ୍ରଥମ ଦୋଷ ପାଇଁ ଯଦି ମୁଁ ତାକୁ କ୍ଷମା କରିଦିଏ ତେବେ ସେ ସାରା ଜୀବନ ଏକଥା ମନେ ରଖିବ ଏବଂ ନିଜର ସ୍ୱଭାବ ପରିବର୍ତ୍ତନ ପାଇଁ ହୁଏତ ଚେଷ୍ଟା କରିବ । ମୁଁ ତାକୁ ଏଥରକ ଛାଡ଼ିଦେବି ।

ପ୍ରସଙ୍ଗକ୍ରମେ ପ୍ରଶ୍ନ ଉଠିପାରେ ଯେ ଜଣେ ବିଶ୍ୱାସଘାତକକୁ କେତେ ବାର କ୍ଷମା ଦିଆଯିବା ଉଚିତ୍ ? ଆପୋଲୋ ହସ୍‌ପିଟାଲ୍‌ରେ ଚିକିତ୍ସିତ ହୋଇଥିବା ଅନେକ ରୋଗୀଙ୍କ କରୁଣ କାହାଣୀ ଏବଂ ନିର୍ଯ୍ୟାତନା ଖବରମାନ ଏବେ ଖବରକାଗଜମାନଙ୍କ ପୃଷ୍ଠାରେ ବାରମ୍ବାର ଆସୁଛି । ଅନ୍ତତଃ ଏଣିକି ଚିକିତ୍ସକ ଓ ଚିକିତ୍ସାଳୟରେ ଅବହେଳାରେ କୌଣସି ରୋଗୀ ମୃତ୍ୟୁବରଣ କରିବେନାହିଁ - ଏପରି ଏକ ସଂଭାବନାଟିଏ ମଧ୍ୟ ଆମେ ଆଶା କରିବା ଅନୁଚିତ ହେବ । ଏହି ଧାରାବାହିକ ପ୍ରକ୍ରିୟାଟି ସବୁକାଳେ ଥିଲା, ଅଛି ଓ ରହିବ । ତା' ନହେଲେ ପ୍ରାୟ ତେଇଶିଶହ ବର୍ଷ ତଳେ ବିଶିଷ୍ଟ ଯୋଦ୍ଧା ଆଲେକ୍‌ଜାଣ୍ଡାର୍ ଚିକିତ୍ସକମାନଙ୍କ ପ୍ରତି କରିଥିବା ତାଚ୍ଛଲ୍ୟଟି ଦୋହରାଉ ନଥାନ୍ତେ: ଅନେକଗୁଡ଼ିଏ ଚିକିତ୍ସକଙ୍କ ସାହାଯ୍ୟରେ ହିଁ ମୁଁ ମରୁଛି ।

ମୃତ୍ୟୁର ରହସ୍ୟକୁ ଉଦ୍‌ଘାଟନ କରିବାକୁ ଯମାଳୟ ପର୍ଯ୍ୟନ୍ତ ଯାଇଥିଲେ ଋଷିପୁତ୍ର ନଚିକେତା । ସ୍ୱୟଂ ଯମରାଜା ତାଙ୍କ ପୁତ୍ରକୁ ଫେରାଇ ଦେଇଥିଲେ ନିଜର ଅସହାୟତା ପ୍ରକାଶ କରି । ଠିକ୍ ଅନୁରୂପ ଭାବେ ଆମ ଶାସନ ବ୍ୟବସ୍ଥାର ମୁଖ୍ୟମାନେ ନିଜକୁ ଖୁବ୍ ଅସହାୟ ମନେ କରୁଛନ୍ତି । ସେମାନେ ଏବେ ବାକ୍ ଶୂନ୍ୟ ।

କେବେ ଠିକ୍ ହେବ ଆମର ଏ ଅବ୍ୟବସ୍ଥା ? ନଚିକେତା ପରି ସମଗ୍ର ଜନତାର ଆଖିରେ ସେଇ ପ୍ରଶ୍ନ କେବଳ ।

*ଅନୁପମ ଭାରତ ୧୦.୪.୨୦୦୦*

# ଈଶ୍ୱରଙ୍କ ଦୂତ

ଗତ ସେପ୍ଟେମ୍ବର ପାଞ୍ଚ ତାରିଖରେ ଭାରତରେ କେବଳ ଗୁରୁଦିବସ ପାଳନ କରାଯାଇନଥିଲା, ସେଦିନ ଥିଲା ମଦର ଟେରିଜାଙ୍କ ମହାପ୍ରଣାୟ ଦିବସ । ତିନି ବର୍ଷ ତଳେ କଲିକତାରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଦକ୍ଷିଣ ୟୁଗୋସ୍ଲୋଭିଆରେ ୧୯୧୦ ମସିହାରେ ଜନ୍ମ ହୋଇଥିବା ଟେରିଜା ଉଣେଇଶି ବର୍ଷ ବୟସରେ କଲିକତା ସହରରେ ପହଂଚି ଲୋରେଟୋ କନ୍‌ଭେଣ୍ଟ ସ୍କୁଲ୍‌ରେ ଭୂଗୋଳ ଏବଂ ପ୍ରଶ୍ନୋତ୍ତର ଛଳରେ ଶିକ୍ଷା ପ୍ରଦାନ ଆରମ୍ଭ କରିଥିଲେ । ୧୯୪୬ ମସିହାରେ ଥରେ ଦାର୍ଜିଲିଂକୁ ରେଳ ଯାତ୍ରାରେ ଯାଉଥିବା ବେଳେ ଏକ ଦୈବୀ ବାଣୀ ଶୁଣିବା ପରେ ସେ ଲୋରେଟୋ ସ୍କୁଲ୍‌ର ଚାରିକାନ୍ଥରୁ ନିଜକୁ ମୁକ୍ତ କରି ଗରୀବର ତ୍ରାଣକର୍ତ୍ତା ହେବା ପାଇଁ ନିଜକୁ ପ୍ରସ୍ତୁତ କଲେ । ମାତ୍ର ତିନି ଖଣ୍ଡ ଶାଢ଼ୀ ଓ ପାଞ୍ଚ ଟଙ୍କାରେ ତାଙ୍କର ଏଇ ସେବା ଜୀବନର ଅୟମାରମ୍ଭ ହୋଇଥିଲା । ପଚାଶ ବର୍ଷର ଅନୁଭୂତି ଭିତରୁ ଗୋଟିଏ ଘଟଣା ଆଦୌ ଭୁଲି ପାରୁନଥିଲେ ମଦର ଟେରିଜା । କଲିକତାର ନର୍ଦ୍ଦମାରୁ ଉଦ୍ଧାର କରିଥିବା ଗୋଟିଏ କୁଷ୍ଠ ରୋଗୀ ଟେରିଜାଙ୍କ କୋଳରେ ଶେଷ ନିଃଶ୍ୱାସ ତ୍ୟାଗ କରିବା ବେଳେ କହିଥିଲା: ସାରା ଜୀବନ ଏ ସହରର ଗଳିରେ ମୁଁ ଗୋଟିଏ ପଶୁର ଜୀବନ ଜୀଇଁଲି ଆଉ ଏବେ ମୁଁ ସ୍ୱର୍ଗର ଏକ ଅପ୍‌ସରା ପରି ମରିବାକୁ ଯାଉଛି ।'' ସେଇ ଅପ୍‌ସରାମାନଙ୍କ ଗହଣରେ ସେ ସବୁବେଳେ ରହିବାକୁ ପସନ୍ଦ କରୁଥିଲେ । ସେଥିପାଇଁ ତ ଥରେ ତାଙ୍କର କାମ ବହୁତ ବଢ଼ିଗଲାଣି ବୋଲି କହିବାରୁ ମଦର ଟେରିଜା ହସି ହସି ଉତ୍ତର ଦେଇଥିଲେ: ଯଦି ଚନ୍ଦ୍ରରେ ବି ଗରିବ ଲୋକ ଥା'ନ୍ତି; ଆମେ ସେଠିକି ମଧ୍ୟ ଯିବୁ ।''

ମଦର ଟେରିଜାଙ୍କ ଅପୂର୍ବ ମାନବିକତାର ଦୁଇଟି ଉଦାହରଣ ଏଠି ଦେବା ପ୍ରାସଙ୍ଗିକ ହେବ । ଥରେ ଭାରତୀୟ ବିମାନରେ କଲିକତା ଫେରୁଥିବା ସମୟରେ ଆକାଶ ପଥରେ ବିମାନଟିର କିଛି ଯାନ୍ତ୍ରିକ ତ୍ରୁଟି ଯୋଗୁଁ ସମସ୍ତ ଯାତ୍ରୀଙ୍କ ସହ ତାଙ୍କୁ ଏକ ପାଞ୍ଚ ତାରକା ହୋଟେଲ୍‌ରେ କିଛି ଘଣ୍ଟା ପାଇଁ ରହିବାକୁ ପଡିଲା । ଯାତ୍ରୀମାନଙ୍କ ସହ ଟେରିଜା ମଧ୍ୟ ମଧ୍ୟାହ୍ନ ଭୋଜନ କଲେ ।

ଭୋଜନ ଶେଷରେ ହୋଟେଲର କର୍ମଚାରୀଙ୍କୁ ଡାକି ମଦର ଟେରିଜା କହିଲେ: ଉଚ୍ଛିଷ୍ଟ ଖାଦ୍ୟକୁ ଏକାଠି କରି ଗୋଟେ ପ୍ୟାକେଟ୍ କରିଦିଅ, ମୁଁ ସେତକ ମୋ ସହ ନେଇଯିବି । ପ୍ରକାଶଥାଉକି, ସମ୍ଭ୍ରାନ୍ତ ଯାତ୍ରୀମାନେ ହୋଟେଲ୍ ଦ୍ୱାରା ପରିବେଷିତ ଅନେକ ସୁସ୍ୱାଦୁ ଖାଦ୍ୟକୁ

ଅଧା ଖାଇବା ପରେ ଛାଡି ଦେଇଥିଲେ । ଟେରିଜାଙ୍କ କଥା ଶୁଣିଥିବା ଜଣେ ଯାତ୍ରୀ ହଠାତ୍ କହିଲେ: ମଦର, ସେ ସବୁ ଖାଦ୍ୟ ଅଇଁଠା, ଆପଣ ତାକୁ ନେଇ କ'ଣ କରିବେ ? ନିଜର ସ୍ୱଭାବ ସୁଲଭ ଭଙ୍ଗୀରେ ହସି ହସି ଟେରିଜା କହିଲେ: ନିର୍ମଳ ହୃଦୟରେ ମୋର ପିଲାମାନେ ଜୀବଦ୍ଦଶାରେ ବି ଏପରି ସୁସ୍ୱାଦୁ ଖାଦ୍ୟ ପାଇବେନି । ତାଙ୍କରି ପାଇଁ ଏତକ ନେଉଛି ।'' ପ୍ରଶ୍ନକର୍ତ୍ତାଙ୍କ ମୁହଁ ଲଜ୍ୟାରେ ଲାଲ୍ ହୋଇଗଲା ।

୧୯୭୯ରେ ତାଙ୍କୁ ନୋବେଲ୍ ଶାନ୍ତି ପୁରସ୍କାର ଦିଆଯିବାର ଘୋଷଣା ପ୍ରତିକ୍ରିୟାରେ ସେ କହିଥିଲେ: ନୋବେଲ୍ ପୁରସ୍କାରର ଅର୍ଥ ମୋ ପାଇଁ ହେଉଛି, ପୁରସ୍କାର ବାବଦରେ ମିଳୁଥିବା ଟଙ୍କାରେ ମୁଁ ଅଧିକ ଭୋକିଲା ଲୋକଙ୍କ ମୁହଁରେ ଦାନା ଦେବାକୁ ସକ୍ଷମ ହୋଇପାରିବି । ଠିକ୍ ସେଇଥିପାଇଁ ନୋବେଲ୍ ପୁରସ୍କାର ପ୍ରଦାନ କରୁଥିବା ଅଧିକାରୀମାନଙ୍କ ପାଖକୁ ଏକ ଚିଠି ଲେଖି, ନୋବେଲ୍ ପୁରସ୍କାର ପ୍ରଦାନ ପରେ ଆୟୋଜିତ ପାରମ୍ପରିକ ଭୋଜିରେ ଖର୍ଚ୍ଚ କରାଯାଉଥିବା ଟଙ୍କା ତାଙ୍କୁ ଦେବା ପାଇଁ ଅନୁରୋଧ କରିଥିଲେ, ଯଦ୍ୱାରା ସେ ଟଙ୍କାକୁ ସେ ଗରିବ ଲୋକଙ୍କ ପାଇଁ ଖର୍ଚ୍ଚ କରିପାରିବେ । ଆଶ୍ଚର୍ଯ୍ୟର କଥା, ନୋବେଲ୍ ପୁରସ୍କାର ଇତିହାସରେ ପ୍ରଥମ ଥର ପାଇଁ ପାରମ୍ପରିକ ଭୋଜି ଅନୁଷ୍ଠିତ ହୋଇନଥିଲା ଏବଂ ପ୍ରସ୍ତାବିତ ଟଙ୍କା ମଦର ଟେରିଜାଙ୍କୁ ଦିଆଯାଇଥିଲା ।

କଲିକତା ନଗରୀରେ ପ୍ରତିଦିନ ସକାଳେ ମଇଳା ସଫା କରୁଥିବା ମେହେନ୍ତରାଣୀଙ୍କ ଧଳା ଲୁଗା ପରି ନିଜର ବେଶ ଭୂଷାକୁ ଆଦରି ନେଇ ଗରିବ ଲୋକଙ୍କ ମନକୁ ସେ ଜୟ କରିପାରିଥିଲେ ବି ଜୀବନ କାଳରେ ଅନେକ ବାର ତାଙ୍କୁ ଧର୍ମାନ୍ତରୀକରଣ ପ୍ରକ୍ରିୟାରେ ଲିପ୍ତ ରହିବା, ଅନେକ ଅସାଧୁ ବ୍ୟକ୍ତିଙ୍କଠାରୁ ଦାନ ଗ୍ରହଣ କରିବା, ମାତୃଗର୍ଭରେ ଭ୍ରୁଣହତ୍ୟା ପାଇଁ ବିରୋଧ କରିବା ଯୋଗୁଁ 'ଧାର୍ମିକ ସାମ୍ରାଜ୍ୟବାଦୀ' ବୋଲି ତାଙ୍କୁ ସମାଲୋଚନାର ଶିକାର ହେବାକୁ ପଡିଥିଲା । ତଥାପି ସେ ସବୁକୁ ତାଙ୍କର ଭ୍ରୁକ୍ଷେପ ନଥିଲା କେବେ ।

ଏବେ ମଦର ଟେରିଜାଙ୍କୁ ଈଶ୍ୱରଙ୍କ ଦୂତ ଭାବେ ସ୍ୱୀକୃତି ଦେବା ଲାଗି ଆବଶ୍ୟକୀୟ ପ୍ରକ୍ରିୟାଟି ଆରମ୍ଭ ହୋଇଯାଇଛି । ଯଦିଓ ଖ୍ରୀଷ୍ଟଧର୍ମର ପରମ୍ପରା ଅନୁଯାୟୀ ମୃତ୍ୟୁର ପାଞ୍ଚବର୍ଷ ପରେ ହିଁ ଏଇ ଧାର୍ମିକ ପ୍ରକ୍ରିୟାଟି ଆରମ୍ଭ ହେବା କଥା, ମାତ୍ର ମଦର ଟେରିଜାଙ୍କ ପାଇଁ ଏଇ କଟକଣାଟି ଲାଗୁ ହେବନାହିଁ ବୋଲି ଭାଟିକାନ୍‌ର ଅଧିକାରୀ ପ୍ରକାଶ କରିଛନ୍ତି ।

ଈଶ୍ୱରଙ୍କ ଦୂତ ଭାବେ ଘୋଷଣା କରିବା ଲାଗି ଫାଦର ବ୍ରିଆନ୍ କୋଲୋଡାଇଚୁକ୍ ସାକ୍ଷ୍ୟ ଗ୍ରହଣ ପାଇଁ ନିଯୁକ୍ତି ପାଇଛନ୍ତି । ଏଇ ପ୍ରକ୍ରିୟାଟି ମୁଖ୍ୟତଃ ତିନୋଟି ସୋପାନ ଦେଇ ଗତି କରିବ । ପ୍ରଥମଟି ହେଲା, ମଦର ଟେରିଜାଙ୍କ ଦ୍ୱାରା ପ୍ରଚଳିତ ଧାର୍ମିକ ବ୍ୟବସ୍ଥା, ସାଧାରଣ ଧାର୍ମିକ ବ୍ୟବସ୍ଥାଠାରୁ କେତେଦୂର ଉଚ୍ଚରେ ତାହାର କଳନା କରିବା, ଦ୍ୱିତୀୟଟି ହେଉଛି ମଦର ଟେରିଜାଙ୍କ ମୃତ୍ୟୁ ପୂର୍ବରୁ ଘଟିଥିବା ଅଲୌକିକ ଘଟଣା ସବୁକୁ ଏକ ଉଚ୍ଚସ୍ତରୀୟ

ଚିକିତ୍ସକ ମଣ୍ଡଳୀ ଦ୍ୱାରା ଅନୁମୋଦିତ ହେବା ପରେ, ଯାଞ୍ଚ୍ କରିବା ଏବଂ ଶେଷ ସୋପାନଟି ହେଲା- ମଦର ଟେରିଜାଙ୍କ ମୃତ୍ୟୁ ପରେ ଘଟିଥିବା ଅଲୌକିକ ଘଟଣା ସବୁକୁ ପୂର୍ବପରି ଉଚ୍ଚସ୍ତରୀୟ ଚିକିତ୍ସକ ମଣ୍ଡଳୀଙ୍କ ଦ୍ୱାରା ଅନୁମୋଦିତ ହେବା ପରେ-ସେସବୁକୁ ଯାଞ୍ଚ୍ କରିବା । ପ୍ରାଥମିକ ସ୍ତରରେ ବିଭିନ୍ନ ବ୍ୟକ୍ତିଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରିବା ଏବଂ ଏସବୁକୁ ଯାଞ୍ଚ୍ କରିବା ଲାଗି ଏକ ବିପକ୍ଷ ମତ ଦେଉଥିବା ବ୍ୟକ୍ତିଙ୍କୁ ନିଯୁକ୍ତ କରିବା ଆଦି ଏଇ ପ୍ରକ୍ରିୟାର ଅନ୍ତର୍ଭୁକ୍ତ । ଏହି ପ୍ରକ୍ରିୟାଟି ସାଧାରଣତଃ ଛଅରୁ ଦଶ ବର୍ଷ ଯାଏ ଲାଗିଯିବ ବୋଲି ଅନୁମାନ କରାଯାଉଛି । କାରଣ ଏଇ ପ୍ରକ୍ରିୟା ଦ୍ୱାରା ଇତାଲିୟ ସନ୍ୟାସୀ ପାଦ୍ରେ ପିଓଙ୍କୁ ଈଶ୍ୱରଙ୍କ ଦୂତ ଭାବେ ଘୋଷଣା କରିବା ଲାଗି ଦୀର୍ଘ ତିରିଶି ବର୍ଷ ଲାଗି ଯାଇଛି ଯା ଭିତରେ ।

ଅନେକ ସାକ୍ଷ୍ୟ ଗ୍ରହଣ ସରିଲାଣି । ଚିକାଗୋର ଜଣେ ବ୍ୟାଙ୍କ କର୍ମଚାରୀ ଦୁର୍ଘଟଣାଗ୍ରସ୍ତ ହେବା ପରେ କିପରି ମଦର ଟେରିଜାଙ୍କ ଆଶୀର୍ବାଦରୁ ସଂପୂର୍ଣ୍ଣ ଆରୋଗ୍ୟ ହୋଇଛନ୍ତି, ଟେଲ୍ ଆବିଭ୍ ସହରରେ ଥିବା କର୍କଟ ରୋଗାକ୍ରାନ୍ତ ଏକ ଯୁବତୀ କିପରି ତାଙ୍କ ଆଶୀର୍ବାଦରୁ ଆରୋଗ୍ୟ ହୋଇପାରିଛି- ସେସବୁ ଏବେ ଚର୍ଚ୍ଚାର ବିଷୟ ହୋଇଛି ସବୁଆଡେ । ଅନେକ ଅଲୌକିକ ଘଟଣାର ସାକ୍ଷ୍ୟ ଗ୍ରହଣ ହୋଇଥିଲେ ବି ସେସବୁକୁ ନିୟମାନୁଯାୟୀ ଗୁପ୍ତ ରଖାଯାଇଛି । ଏସବୁ ଘଟଣାବଳୀକୁ ନଅଜଣ ଆଧ୍ୟାତ୍ମିକବାଦୀ ଓ ଜଣେ କାଥଲିକ୍ ଧର୍ମାଧ୍ୟକ୍ଷ ଯାଞ୍ଚ୍ କରି ଦେଖିବେ । ଯଦି ଦୁଇ ତୃତୀୟାଂଶ ବିଚାରକ ଏଥିରେ ସହମତି ପ୍ରକାଶ କରନ୍ତି ତେବେ ଏଇ ପ୍ରସ୍ତାବଟି ପୋପ୍‌ଙ୍କ ପାଖକୁ ଯିବ 'ଈଶ୍ୱରଙ୍କ ସେବକ'ର ମୋହର ଲାଗିବା ପାଇଁ । ଅବଶ୍ୟ ଏହାପରେ ଈଶ୍ୱରଙ୍କ ଦୂତ ହେବା ପାଇଁ ପଥ ପରିଷ୍କାର ହୋଇଯିବ ।

ଅଳ୍ପ କେଇ ବର୍ଷ ଭିତରେ ମଦର ଟେରିଜାଙ୍କୁ 'ଈଶ୍ୱରଙ୍କ ଦୂତ' ଘୋଷଣା କରାଯିବାର ସମ୍ଭାବନା ଅଧିକ । ନିଜର ଅନାବିଳ ହୃଦୟ ଓ ସ୍ୱାର୍ଥରହିତ ଜୀବନ ଯୋଗୁଁ ଜଣେ ସାଧାରଣ ନାରୀ ହୋଇ ବି ସେ ଏତେ ମର୍ଯ୍ୟାଦାବନ୍ତ ହୋଇପାରିଲେ-ତାହା ହିଁ ଆଶ୍ୱସନାର ବୀଜ ବପନ କରିପାରିଛି । ମାର୍କଟ୍ୱେନ୍ ଯଥାର୍ଥରେ କହିଥିଲେ: 'ମଣିଷକୁ ତା'ର ହୃଦୟରୁ ଜାଣି ହୁଏ, ତା'ର ଆଖି ଅଥବା ବୁଦ୍ଧି ଯୋଗୁଁ ନୁହେଁ ।'

*ଅନୁପମ ଭାରତ ୨୫.୯.୨୦୦୦*

# 'ହୋଟେଲ୍ କଲମ୍ବସ୍'ର କାହାଣୀ

: ରିଭର୍‌ସାଇଡ୍ ବସ୍‌ରେ ଗୋଟେ ପକେଟ୍‌ମାର ସମ୍ପର୍କରେ ମୁଁ ଖବର ଦେବାକୁ ଚାହେଁ ।

: ଆଚ୍ଛା ।

: ସାର୍ ?

: ଆଚ୍ଛା, ମୁଁ ଆଚ୍ଛା କହିଲି, ଖବର ଦିଅ ।

: ପ୍ରାୟ ଛଅଫୁଟ୍ ଲମ୍ବା, ପ୍ରାୟ ଦୁଇଶହ ପାଉଣ୍ଡ, ପ୍ରାୟ ପଞ୍ଚତିରିଶ ବର୍ଷ ବୟସ, ଦେଖିବାକୁ ସୁନ୍ଦର, ସୁନ୍ଦର ପୋଷାକ ପିନ୍ଧିଛି, ଗୋଟେ ନିଗ୍ରୋ ।

: ଆଚ୍ଛା।

: ଭାବିଲି ଖବର କରିଦେବି ।

: ଆଚ୍ଛା ।

: ଆପଣ କିଛି କରିବେ କି ?

: ଆମେ ତ କିଛି ଗୋଟେ କରିବା ଦରକାର, ନୁହେଁ କି ? ଆପଣଙ୍କ ନାଁ ଟା କ'ଣ ?

: ଆର୍ଟର ସାମ୍‌ଲର୍ ।

: ଠିକ୍ ଅଛି ଆର୍ଟ । ତମେ କୋଉଠି ରୁହ ?

: ମହାଶୟ, ମୁଁ ନିଶ୍ଚୟ କହିବି । ମାତ୍ର ମୁଁ ଜାଣିପାରେକି ସେ ଲୋକଟା ସମ୍ପର୍କରେ ଆପଣ କ'ଣ କରିବାକୁ ଚାହୁଁଛନ୍ତି ?

: ଆମେ କ'ଣ କରିବା ଠିକ୍ ହେବ ବୋଲି ତମେ ଭାବୁଚ ?

: ତାକୁ ହାତକଡି ପକାଅ ।

: ପ୍ରଥମେ ତ ତାକୁ ଧରିବାକୁ ପଡିବ ।

: ତମକୁ ବସ୍ ଭିତରେ ଗୋଟେ ଲୋକ ରଖିବାକୁ ପଡିବ ।

: ବସ୍ ଭିତରେ ରଖିବା ପାଇଁ ଆମ ପାଖରେ ଲୋକ ନାହିଁ । ବୁଝିଲ ଆର୍ଟ, ଏଠି ବହୁତ ସଂଖ୍ୟାରେ ବସ୍ ଅଛି କିନ୍ତୁ ଆମ ପାଖରେ ଲୋକ ଆଦୌ ନାହାଁନ୍ତି । ବଡଲୋକ, ଉଚ୍ଚପଦସ୍ଥ ବ୍ୟକ୍ତି, ଦୁନିଆଯାକର ପ୍ରଥା, ଭୋଜିଭାତ-ଏସବୁ ପାଇଁ ଆମକୁ ସଜାଗ ହେବାକୁ

ପଡୁଛି ଆର୍ଟ । ବଜାର ସଉଦା ବେଳେ ଅନେକ ମହିଳା ସେମାନଙ୍କ ମନିପର୍ସ ବି ଭୁଲି ଯାଉଛନ୍ତି ।

: ମୁଁ ବୁଝିପାରୁଛି । ଆପଣଙ୍କ ପାଖରେ ଲୋକ ନାହାଁନ୍ତି ଅଥଚ ତା' ସାଙ୍ଗକୁ ଅନ୍ୟାନ୍ୟ ଜରୁରୀ କାମ ଓ ରାଜନୈତିକ ଚାପ ବି ପଡୁଛି । ମୁଁ କିନ୍ତୁ ଲୋକଟାକୁ ଚିହ୍ନେଇ ଦେଇଥା'ନ୍ତି ।

: ପରେ ଦେଖିବା ।

: ତୁମେ ତା'ହେଲେ ତାକୁ ଚିହ୍ନେଇବାକୁ ଚାହୁଁନ ?

: ନିଶ୍ଚିତ ଭାବରେ । ମାତ୍ର ଆମ ପାଖରେ ଗୋଟେ ଲମ୍ବା ତାଲିକା ଅଛି ।

ଏହାହିଁ ହେଉଛି ବିଶିଷ୍ଟ ଔପନ୍ୟାସିକ ସଲ୍ ବେଲୋଙ୍କ ଉପନ୍ୟାସ 'ମିଷ୍ଟର ସାମଲର୍ସ୍ ପ୍ଲାନେଟ୍'ର ମୁଖ୍ୟ ଚରିତ୍ର ଆର୍ଥର ସାମଲର୍ଙ୍କ ସହ ପୋଲିସ୍ର ଟେଲିଫୋନ୍ରେ କଥାବାର୍ତ୍ତାର କିଛି ଅଂଶ । ଜଣେ କଳାବ୍ୟକ୍ତି ବସ୍ ଭିତରେ ପକେଟ୍ମାର କାର୍ଯ୍ୟ କରୁଥିବାର ପ୍ରତ୍ୟକ୍ଷ ଅନୁଭୂତି ସମ୍ପର୍କରେ ଔପନ୍ୟାସିକ ସଲ୍ ବେଲୋ ଖୁବ୍ ସୁନ୍ଦର ଭାବେ ଚିତ୍ରଣ କରିଛନ୍ତି ଏଇ ଚରିତ୍ର ମାଧ୍ୟମରେ ।

'ପକେଟ୍ମାର' ବିଭିନ୍ନ ପ୍ରକାରର ଚୌର୍ଯ୍ୟବୃତ୍ତି ମଧ୍ୟରୁ ଅନ୍ୟତମ । ଋଷିଆରେ ଗୋଟେ ଲୋକପ୍ରିୟ ପ୍ରବାଦ ଅଛି : ଧରାନପଡିବା ପର୍ଯ୍ୟନ୍ତ ଜଣକୁ ଚୋର ବୋଲି କୁହାଯାଇପାରିବନି ।'' ଅନୁରୂପ ଭାବେ ଭାରତୀୟ ଆଇନ ପରମ୍ପରାରେ ମଧ୍ୟ କୁହାଯାଇଛି ।

: ଦୋଷୀ ବୋଲି ପ୍ରମାଣିତ ନହେବା ପର୍ଯ୍ୟନ୍ତ ଜଣେ ନିର୍ଦ୍ଦୋଷୀ ବ୍ୟକ୍ତି । ଅବଶ୍ୟ ଏହା ଆଧୁନିକ ଆଇନ ପ୍ରଣାଳୀର ଏକ ସ୍ୱତଃସିଦ୍ଧ ଧାରା, ମାତ୍ର ପ୍ରାଚୀନ ସମାଜରେ ଏ ପ୍ରକାରର ଦୃଷ୍ଟିଭଙ୍ଗୀ ଏକ ବିରଳ ଉଦାହରଣ ମାତ୍ର । ଚୋରି କରିବା ପରେ ଜଣେ ଯଦି ତା'ର ଉପରିସ୍ଥ କର୍ମଚାରୀ ଅଥବା ସାମାଜିକ ବ୍ୟବସ୍ଥାର ଉଚ୍ଚ ମାନ୍ୟତାପ୍ରାପ୍ତ ବ୍ୟକ୍ତିଙ୍କ ଦ୍ୱାରା ଧରା ନପଡେ ସେଯାଏଁ ବ୍ୟକ୍ତିଜଣକ ନିର୍ଦ୍ଦୋଷ । ଏବେବି ଏଇ ପ୍ରାଚୀନ ସମାଜର କଳଙ୍କିତ ବ୍ୟବସ୍ଥା ଯୋଗୁଁ ଆମ ସାମାଜିକ ଜୀବନ ପ୍ରଣାଳୀରେ ଯାବତୀୟ କଳଙ୍କର କାଳି ଲାଗି ରହିଛି ।

ତେବେ ଏସବୁ ଆଲୋଚନା କରିବା ଲେଖକର ଉଦ୍ଦେଶ୍ୟ ନୁହେଁ । ମାତ୍ର ପକେଟ୍ମାର ଭଳି ଚୋରି ବିଦ୍ୟାରେ ନିଜକୁ ଉତ୍ସର୍ଗ କରିଥିବା ବ୍ୟକ୍ତିବିଶେଷଙ୍କ ଜୀବନଚର୍ଯ୍ୟା ସମ୍ପର୍କରେ ଅଧିକରୁ ଅଧିକ ଅବହିତ ହେବା ଏକ ଲୁଚ୍ଚାୟିତ ଅଭିଳାଷ ମାତ୍ର ।

ଥରକର ଘଟଣା । ପନ୍ଦରବର୍ଷ ତଳେ ଏକ ବ୍ୟକ୍ତିଗତ କାମରେ ମାଡ୍ରାସ (ବର୍ତ୍ତମାନର ଚେନ୍ନାଇ) ଯାଇଥାଏ । ସେଦିନ ଥାଏ ସରକାରୀ ଛୁଟିଦିନ । ଦୋକାନ୍

ବଜାର ପ୍ରାୟ ବନ୍ଦ ଥାଏ । ନିଜ ମନମୁତାବକ ଅଥବା ବରାଦରେ କୌଣସି ଜିନିଷ କିଣିବା ସମ୍ଭବ ନଥିଲା ସେଦିନ । ଅଗତ୍ୟା ମଧ୍ୟାହ୍ନ ଭୋଜନ ବେଳକୁ ପହଞ୍ଚିଲି ଗୋଟେ ହୋଟେଲ୍ ପାଖରେ । ନାମଫଳକରୁ ଜାଣିଲି ହୋଟେଲ୍‌ଟିର ନାଁ : ହୋଟେଲ୍ କଲମ୍ବସ୍ ।

କେଜାଣି କାହିଁକି ହଠାତ୍ ହୋଟେଲ୍ କଲମ୍ବସ୍‌ର ପ୍ରେମରେ ପଡିଗଲି । ସେଇଠୁ ଆରମ୍ଭ ହେଲା ଯାବତୀୟ ଫରମାଇସ୍ । ଚିକେନ୍ ତନ୍ଦୁରୀ, ବଟର ନାନ୍ ଇତ୍ୟାଦି । ଆକଣ୍ଠ ଭୋଜନର ପର୍ବ ସରିଲା, ହାତ ଧୋଇ ଅଗତ୍ୟା କାଉଣ୍ଟର ପାଖକୁ ଆସିଲି ପଇସା ଦେବା ପାଇଁ ।

ହଠାତ୍ ଏକ ଅହେତୁକ ଭୟରେ ଶିହରି ଉଠିଲି । ହସ ହସ ମୁଖାକାଶ ପାଣ୍ଡୁର ଦେଖାଗଲା ।

ନିଜ ଅଲକ୍ଷ୍ୟରେ ବାରମ୍ବାର ହାତ ସାର୍ଟ ଏବଂ ପ୍ୟାଣ୍ଟ ପକେଟ୍‌କୁ ଚାଲି ଯାଉଥାଏ । ହୋଟେଲ୍ ସାମ୍ନାରେ ଥିବା କାଉଣ୍ଟରରେ ବସିଥିବା ଭଦ୍ରବ୍ୟକ୍ତି ମୁହଁ ଖୋଲିଲେ;

: କିଛି ଅସୁବିଧା ହେଲା କି ?

: ପକେଟ୍‌ମାର ହୋଇଗଲା । ମୁଁ ବିବ୍ରତ ହୋଇ ତାଙ୍କୁ ଜଣାଇଲି । ମୁହଁ ଶେଥା ପଡିଯାଇଥାଏ ସେତେବେଳକୁ । କାରଣ ହୋଟେଲ୍ କଲମ୍ବସ୍‌ରୁ ମାଡ୍ରାସ୍‌ରେ ରହୁଥିବା ହୋଟେଲ୍ ଯାଏ ଟାଉନ୍‌ବସ୍‌ରେ ଯିବା ଲାଗି ପଇସା ନଥାଏ ମୋ' ପାଖରେ ।

: ମିଛ କଥା । ତାଙ୍କ ମୁହଁ ଲାଲ୍ ପଡିଗଲା ।

: ଏହା କିନ୍ତୁ ସତ, ମୋର ପକେଟ୍‌ମାର ହୋଇଛି ।'' ମୁଁ ଅନୁନୟ ସ୍ୱରରେ କହିଲି । ଠିକ୍ ସେଇ ସମୟରେ ମୁହଁରେ ଉକୁଟି ଉଠୁଥାଏ ଛୋଟଛୋଟ ସ୍ୱେଦବିନ୍ଦୁ । ଉତ୍ତମ ଭୋଜନର ପରବର୍ତ୍ତୀ ଆତ୍ମସନ୍ତୋଷ ଧୂଆଁ ପରି ମିଳେଇ ଯାଇଥାଏ ।

ପରବର୍ତ୍ତୀ ସମୟରେ ହୋଟେଲ୍ କଲମ୍ବସ୍‌ର କାଉଣ୍ଟରରେ ବସିଥିବା ଭଦ୍ରବ୍ୟକ୍ତିଙ୍କ ଗଳା ନରମ ପଡିଗଲା । ସହାନୁଭୂତିରେ ଆର୍ଦ୍ର ହୋଇଗଲା ତାଙ୍କର ମନ । ସେ ତାଙ୍କ ହୋଟେଲ୍‌ରେ ହୋଇଥିବା ବିଲ୍‌କୁ କେବଳ ଛାଡି ଦେଇ ନଥିଲେ, ବରଂ ମୁଁ ରହୁଥିବା ହୋଟେଲ୍‌କୁ ଯିବା ଲାଗି ବସ୍‌ଭଡା ମଧ୍ୟ ହାତରେ ଧରାଇ ଦେଲେ । ଡାକରେ ତାଙ୍କ ପଇସା ପଠାଇବା ଲାଗି ମୁଁ ଯେତେବେଳେ ତାଙ୍କ ଠିକଣା ମାଗିଲି ସେ ବିନମ୍ରତାର ସହ ମୋର ଅନୁରୋଧକୁ ଏଡାଇ ଦେବା ସହ ଏକ ମଧୁର ତାଗିଦ୍‌ରେ ମୋତେ ସୂଚାଇ ଦେଲେ : ମନେରଖ, ତୁମର ପକେଟ୍‌ମାର ହୋଇନି, କାରଣ ମାଡ୍ରାସ୍‌ରେ ଆଦୌ ପକେଟ୍‌ମାର ହିଁ ନାହାଁନ୍ତି ।''

ମୁଁ ଚୁପ୍ ରହିଲି; କାଳେ ତାଙ୍କୁ ବାଧିବ ବୋଲି । ମାତ୍ର ରହୁଥିବା ହୋଟେଲରୁ ନିଜ ଘରେ ପହଞ୍ଚିବା ଯାଏ ଉକ୍ତ ଘଟଣାଟି ମୋତେ ଖୁବ୍ ଆଚ୍ଛନ୍ନ କରି ରଖିଥିଲା । ଘରେ

ପହଞ୍ଚିବାର ଦିନ କେଇଟା ପରେ ଯେତେବେଳେ ସଫା କରିବା ଲାଗି ସାର୍ଟଟିକୁ ଧୋବାକୁ ଦିଆଗଲା ଏବଂ ପକେଟ୍ ଝାଡିବା ପରେ ଧୋବା ମୋ ହାତକୁ ଶହେଟଙ୍କିଆ ନୋଟ୍ ଖଣ୍ଡିଏ ବଢ଼ାଇ ଦେଲା, ମୁଁ ତା'ର ସାଧୁତା ପାଇଁ ଯେତିକି ଆଶ୍ଚର୍ଯ୍ୟ ହେଲି ତା'ଠାରୁ ଅଧିକ ବ୍ୟଥିତ ହେଲି ଏଇଥିପାଇଁ ଯେ ଉକ୍ତ ଶହେଟଙ୍କିଆ ନୋଟ୍ ଖଣ୍ଡିକ ମୁଁ ହୋଟେଲ୍ କଲମ୍ବସ୍କୁ ନେଇଯାଇଥିଲି ।

ହଠାତ୍ ପ୍ରବାଦଟିଏ ମନେପଡିଲା: ଶୁଣାକଥାକୁ ଜମା ବିଶ୍ୱାସ କରନାହିଁ; ଏବଂ ଦେଖିଥିବା ଘଟଣାକୁ ଅଧା ବିଶ୍ୱାସ କର ।'' ସେଇ ଦିନଠୁ କେଜାଣି କେମିତି ଧାରଣା ହୋଇଯାଇଛି ଯେ ଚେନ୍ନାଇରେ ଆଦୌ ପକେଟମାର ନାହାଁନ୍ତି ।

# ଆତ୍ମ ନିର୍ବାସନରେ ବୁଦ୍ଧ

'ତିବ୍ବତର ମାଙ୍ଗ୍‌ମାଙ୍ଗ ନାମକ ଛୋଟ ଗାଁଟିରେ ମୁଁ ମୋର ଶେଷ ରାତି କଟାଇଲି । ବରଫ ଭୂଇଁର ଏଇ ଉପାନ୍ତ ଜାଗାଟିରେ ପହଞ୍ଚିବା ମାତ୍ରେ ବର୍ଷା ଆରମ୍ଭ ହୋଇଯାଇଥିଲା । ବରଫ ଝଡ ଓ ତୁଷାରପାତ ଭିତରେ ସାରା ସପ୍ତାହ ଧିରେଧିରେ ଚାଲିବା ପରେ ଅତ୍ୟନ୍ତ ଖରାପ ପାଗ ସହ ଏଇ ବର୍ଷା ଆରମ୍ଭ ହୋଇଯାଇଥିଲା । ଆମ୍ଭେମାନେ ଖୁବ୍ କ୍ଳାନ୍ତ ହୋଇପଡିଥିଲୁ ଏବଂ ସାରା ରାତି ମୂଷଳ ଧାରାରେ ବର୍ଷା ପଡୁଥିଲା । ଆହୁରି ଖରାପ ଘଟଣା ହେଲା, ମୋର ତମ୍ବୁଟି ହଠାତ୍ କଣା ହୋଇଗଲା ଏବଂ ମୁଁ ମୋର ଶେଯକୁ ଯେଉଁଆଡେ ରଖୁଥିଲେ ବି ତମ୍ବୁ ଭିତରେ ଛୋଟ ଝରଣାଟିଏ ଫୁଟିଗଲା ଏବଂ ସେଥିରୁ ମୋର ବାହାରିବାର ଉପାୟ ହିଁ ନଥିଲା । ଫଳତଃ ଗତ କିଛିଦିନ ହେଲା ଭୋଗୁଥିବା ଜ୍ୱର ହଠାତ୍ ବଢ଼ିଗଲା ଏବଂ ଏହା ଭୀଷଣ ନାଳଝାଡା ଆଡକୁ ଗତିକଲା ।

ପରଦିନ ସକାଳେ ମୁଁ ଅତ୍ୟନ୍ତ ଅସୁସ୍ଥ ଥିଲି । ତେଣୁ ଆମେ ଯେଉଁଠି ଥିଲୁ ସେଇଠାରେ ହିଁ ରହିଲୁ । ମୋ ସାଥିରେ ଥିବା ଲୋକମାନେ ଆଖପାଖରେ ଥିବା ଗୋଟିଏ ଘରକୁ ମୋତେ ନେଇଗଲେ । ମାତ୍ର ଉକ୍ତ ଘରଟି ମୋ ତମ୍ବୁ ଅପେକ୍ଷା କମ୍ ସୁରକ୍ଷା ଦେଲା । ଅଧିକନ୍ତୁ, ତଳ ମହଲାରୁ ଉଠୁଥିବା ଗାଈମାନଙ୍କର ଦୁର୍ଗନ୍ଧ ଯୋଗୁଁ ଉପର ମହଲାରେ ପଡି ରହି ମୁଁ ନିର୍ଯ୍ୟାତିତ ହେଉଥିଲି । ସେଦିନ ମୋ ପାଖରେ ଥିବା ଏକ ରେଡିଓରୁ ଏକ ଖବର ଅଲ୍‌ଇଣ୍ଡିଆ ରେଡିଓ ଦ୍ୱାରା ପ୍ରସାରିତ ହୋଇଥିଲା । ଖବରଟି ଥିଲା, ମୁଁ ଭାରତକୁ ଯିବା ବାଟରେ ଘୋଡା ଉପରୁ ଖସି ପଡି ଭୀଷଣ ଭାବେ ଜଖମ ହୋଇଛି । ଏହି ସମ୍ବାଦ ଶୁଣି ମୁଁ ଖୁସି ହେଲି କାରଣ ଏହାହିଁ ଏକମାତ୍ର ଦୁର୍ଭାଗ୍ୟ ଯାହାକୁ ମୁଁ ଆଡେଇ ଯାଇପାରିଥିଲି । ଯଦିଓ ମୁଁ ଜାଣିଥିଲି ଏହି ସମ୍ବାଦ ମୋର ବନ୍ଧୁମାନଙ୍କର ଚିନ୍ତାର କାରଣ ହେବ ।'

୧୯୫୯ ମସିହା ମାର୍ଚ୍ଚ ଏକତିରିଶ ତାରିଖ ଦିନ ତିବ୍ବତରୁ ପଳାଇ ଆସି ଭାରତରେ ପାଦ ରଖିବାର ପୂର୍ବ ରାତିର ଘଟଣା ବର୍ଣ୍ଣନା କରିଛନ୍ତି ଧର୍ମଗୁରୁ ଦଲାଇଲାମା ତାଙ୍କ ଆତ୍ମଜୀବନୀ ପୁସ୍ତକ : 'ଫ୍ରିଡମ୍ ଇନ୍ ଏକ୍‌ଜାଇଲ୍'ରେ । ୧୯୩୮ ମସିହାରେ ମାତ୍ର ଦୁଇବର୍ଷ ବୟସରେ ପାରମ୍ପରିକ ପ୍ରଣାଳୀରେ ଦଲାଇଲାମାଙ୍କୁ ତିବ୍ବତର ଶାସକ ହେବା ଲାଗି ଆବିଷ୍କାର କରାଯାଇଥିଲା । କଠୋର ରୀତି ଓ ନୀତି ଭିତରେ ଜୀବନଯାପନ କରିଥିବା ଏଇ ବ୍ୟକ୍ତି ମାତ୍ର ସାତବର୍ଷ ବୟସରେ ଏକ ହଜାର ପ୍ରକୋଷ୍ଠ ବିଶିଷ୍ଟ ପୋଟଲା

ରାଜପ୍ରସାଦରେ ସିଂହାସନ ଅଳଙ୍କୃତ କରିବା ସହ ମାତ୍ର ପନ୍ଦର ବର୍ଷ ବୟସରେ ସେ ଦେଶର ମୁଖ୍ୟ ହୋଇଥିଲେ । ନୂତନ କମ୍ୟୁନିଷ୍ଟ ଦର୍ଶନରେ ଅନୁପ୍ରାଣିତ ଚାଇନାର କ୍ରୁର ଦୃଷ୍ଟି ଓ ଆକ୍ରମଣ ଯୋଗୁଁ ୧୯୫୯ରେ ସେ ଭାରତକୁ ପଳାଇ ଆସି ହିମାଳୟର ଧର୍ମଶାଳାରେ ଅନ୍ୟାନ୍ୟ ଶରଣାର୍ଥୀଙ୍କ ସହ ଜୀବନଯାପନ କରୁଛନ୍ତି । ଯେଉଁଦିନ ଭାରତରେ ଦଲାଇଲାମା ପାଦ ଦେଲେ, ସେଦିନ ତାଙ୍କର ଦୁଇଜଣ କର୍ମଚାରୀ ପ୍ରଧାନମନ୍ତ୍ରୀ ନେହେରୁଙ୍କର ଏକ ତାରବାର୍ତ୍ତା ବଢ଼ାଇ ଦେଲେ । ଯେଉଁଥିରେ ଲେଖାଥିଲା : ଭାରତରେ ଆପଣଙ୍କର ନିରାପଦ ଆଗମନକୁ ମୁଁ ଏବଂ ମୋର ସହକର୍ମୀ ଗଣ ଅଭିନନ୍ଦନ ଜଣାଉଛୁ । ଆପଣଙ୍କୁ, ଆପଣଙ୍କ ପରିବାର ଏବଂ ସାଥୀମାନଙ୍କୁ ଭାରତରେ ରହିବା ଲାଗି ଆବଶ୍ୟକୀୟ ସୁବିଧା ସୁଯୋଗ ଯୋଗାଇ ଦେବାରେ ଆମେ ଖୁସୀ ହେବୁ । ଆପଣଙ୍କୁ ଗଭୀର ସମ୍ମାନ କରୁଥିବା ଭାରତୀୟମାନେ ନିଃସନ୍ଦେହରେ ଆପଣଙ୍କ ବ୍ୟକ୍ତିତ୍ୱକୁ ପାରମ୍ପରିକ ସମ୍ମାନ ପ୍ରଦର୍ଶନ କରିବେ । ସମ୍ମାନର ସହ ନେହେରୁ ।' (My Colleagues and I Wel-come you and send greetings on your safe arrival in India. We shall be happy to afford the necessary facilities to you, your family and entourage to reside in India. The People of India, who hold you in great veneration, will no doubt acord their traditional respect to your personage. Kind regards to you. Nehru)

ମାତ୍ର ସେସବୁ ଏକଚାଳିଶ ବର୍ଷ ତଳର କଥା । ଯଦିଓ ଏବେ (ଜାନୁୟାରୀ ସାତ ତାରିଖ) ଶତାବ୍ଦୀର ପ୍ରଥମ ସପ୍ତାହରେ ତିବ୍ବତର କର୍ମପା ଧାର୍ମିକ ସଂପ୍ରଦାୟର ସପ୍ତଦଶ ଗୁରୁ ଚଉଦ ବର୍ଷ ବୟସ୍କ ଉର୍ଗିନ୍ ତ୍ରିନ୍‌ଲେ ଦୋର୍ଜି (Orgyen Trinley Dorji)ଙ୍କର ଲାସାର ସୁରଫୁ ଧର୍ମପୀଠରୁ ଦୃଢ଼ ନିରାପର୍ତ୍ତା ବଳୟ ଭେଦ କରି ପ୍ରାୟ ଏକହଜାର କିଲୋମିଟର ପଥ ଅତିକ୍ରମ କରି ଭାରତକୁ ପଳାଇ ଆସିବା କଥା ରହସ୍ୟାଚ୍ଛନ୍ନ ରହିଛି, ମାତ୍ର ଦଲାଇଲାମାଙ୍କ ଆଗମନକୁ ସ୍ୱାତ କରିବା ପରି ତାଙ୍କୁ ସମ୍ବର୍ଦ୍ଧନା ଦିଆଯାଇନାହିଁ ।

'ଦଲାଇ' ଏକ ମଙ୍ଗୋଲିଆନ୍ ଶବ୍ଦ । ଏହାର ଅର୍ଥ ହେଲା 'ସାଗର' । ମାତ୍ର 'ଲାମା' ଏକ ତିବ୍ବତୀୟ ଶବ୍ଦ, ଯାହାର ଅର୍ଥ ହେଉଛି 'ଗୁରୁ' ବା 'ଶିକ୍ଷକ' । ମାତ୍ର ଚାଇନା ଭାଷାରେ 'ଲାମା'ର ଅର୍ଥ ଭିନ୍ନ ଅଟେ, ସେମାନେ ଏଇ ଶବ୍ଦକୁ ଜୀବନ୍ତ ବୁଦ୍ଧ ବା 'ବୁ-ଫୁ' (buo-fou) କହିଥାନ୍ତି । ତିବ୍ବତୀୟ ଧାର୍ମିକ ବିଶ୍ୱାସରେ ଏବେବି ଦଲାଇଲାମା ଓ କର୍ମପା ଲାମା ବିଶିଷ୍ଟ ତଥା ସମ୍ମାନାସ୍ପଦ ଆସନର ଅଧିକାରୀ । ୧୯୮୫ ମସିହା ଜୁନ୍ ୨୬ ତାରିଖ ଦିନ ଉର୍ଗିନ୍ ତ୍ରିନ୍‌ଲେ ଦୋର୍ଜି ପୂର୍ବ-ତିବ୍ବତର ଖାମ୍ ଲାଥୋକ (Kham

Lhathok) ଠାରେ ଏକ ଯାଯାବର ପରିବାରରେ ପିତା ଧୋନୁପ୍ ଏବଂ ମାତା ଲୋଗାଙ୍କ ଔରସରୁ ଜନ୍ମଗ୍ରହଣ କରିଥିଲେ । ଏହି କର୍ମପା ଲାମା ଜନ୍ମର ପ୍ରାୟ ଚାରିବର୍ଷ ପୂର୍ବରୁ ଷୋଡଶ କର୍ମପା ଲାମା ରାଙ୍ଗଡଙ୍ଗ୍ ରିଘପେ ଦୋର୍ଜୀଙ୍କର ୧୯୮୧ ମସିହା ନଭେମ୍ବର ୬ ତାରିଖ ଦିନ ଚିକାଗୋ ସହରରେ ଦେହାବସାନ ଘଟିଥିଲା । ଏହାପରେ ସପ୍ତଦଶ କର୍ମପା ଲାମାଙ୍କ ପାଇଁ ସମଗ୍ର ତିବ୍ବତରେ ବୌଦ୍ଧ-ଧର୍ମର କାଗ୍ୟୁ ସମ୍ପ୍ରଦାୟ ମଧ୍ୟରେ ତାଙ୍କୁ ସପ୍ତଦଶ ଅବତାର ଭାବେ ଗ୍ରହଣ କରାଗଲା ।

ମାତ୍ର ଏଯାବତ୍ ସପ୍ତଦଶ କର୍ମପା ପାଇଁ ତିନିଜଣ ପ୍ରତିଦ୍ୱନ୍ଦୀ ହିଁ ଆସିଛନ୍ତି ଉର୍ଗିନ୍ଙ୍କୁ ମିଶାଇ । ସିକିମ୍‌ରେ ଥିବା ପ୍ରତିଦ୍ୱନ୍ଦୀଙ୍କ ନାମ ହେଉଛି 'ଦାଓ୍ୱା ସାଙ୍ଗ୍‌ପୋ ଦୋର୍ଜୀ' ଏବଂ ତିବ୍ବତରେ ଥିବା କର୍ମପାଙ୍କ ନାମ ହେଉଛି 'ଥାଏ ଥିଲ୍‌ନେ ଦୋର୍ଜୀ' । ଅବଶ୍ୟ ଅଧିକାଂଶ ଧର୍ମଗୁରୁ ଏବଂ ଲାମାଙ୍କ ସମେତ ଦଲାଇଲାମା ମଧ୍ୟ ସପ୍ତଦଶ କର୍ମପା ଲାମାଙ୍କୁ ଜୁନ୍ ତିନି ତାରିଖ ଉଣେଇଶି ଶହ ବୟାନବେ ମସିହାରେ ସ୍ୱୀକୃତି ପ୍ରଦାନ କରିଥିଲେ ଏବଂ ସେଇବର୍ଷ ସେପ୍ଟେମ୍ବର ସତେଇଶିରେ ମଧ୍ୟ ଚୀନ୍ ସରକାର ଏଇ କର୍ମପାଙ୍କୁ ସ୍ୱୀକୃତି ଘୋଷଣା କରିଥିଲେ । ଯଦିଓ ସପ୍ତଦଶ କର୍ମପାଙ୍କୁ ନେଇ ସେବେଠୁ ବିବାଦ ଲାଗି ରହିଛି । ତିବ୍ବତୀୟ ଧାର୍ମିକ ବ୍ୟବସ୍ଥାରେ କର୍ମପା ଲାମାଙ୍କ ସ୍ଥାନ ତୃତୀୟରେ ଏବଂ ତିବ୍ବତ ବାସୀଙ୍କର ତାଙ୍କ ପ୍ରତି ଯଥେଷ୍ଟ ଭକ୍ତି ଓ ସମ୍ମାନ ରହିବା ଏକ ସାଧାରଣ କଥା । ତାଙ୍କୁ ଭାରତରେ ଆଶ୍ରୟ ଦେବା ଲାଗି ଦଲାଇଲାମା ମଧ୍ୟ ଭାରତ ସରକାରଙ୍କୁ ୟା' ଭିତରେ ଅନୁରୋଧ କରିସାରିଛନ୍ତି ।

ଏକଚାଳିଶି ବର୍ଷ ପୂର୍ବେ ଭାରତକୁ ଦଲାଇଲାମା ପଳାଇ ଆସିବା ପରି କର୍ମପା ମଧ୍ୟ ତାଙ୍କ ସହଯାତ୍ରୀଙ୍କ ସହ ଆସିବା ବେଳେ ସାଧାରଣ ବେଶ ପୋଷାକରେ ଭାରତକୁ ଆସିଥିଲେ ଏବଂ ବାଲିରେ ତିଆରି ସାଂପା (Tsampa) ଭଳି ଖାଦ୍ୟ ମଧ୍ୟ ଖାଇଥିଲେ । ଅବଶ୍ୟ ଦଲାଇଲାମା ଏବଂ କର୍ମପା ଲାମାଙ୍କ ଭାରତାଭିମୁଖୀ ପଳାୟନକୁ ଯଦି ଏକ ଗଣଦୌଡ ପ୍ରତିଯୋଗିତା ରୂପ ଦିଆଯାଏ, ତେବେ କର୍ମପା ଉଭୟ ସମୟ ଏବଂ କ୍ଷିପ୍ରତାରେ ଆଗରେ ରହିବେ ବୋଲି ଜଣେ ତିବ୍ବତୀୟ ଗବେଷକ କହିଛନ୍ତି । ଉର୍ଗିନ 'କଳାଟୋପି'ର ହକ୍‌ଦାର ହେବେ ନା ନାହିଁ, ଭାରତ ସରକାର ତାଙ୍କୁ ଦଲାଇଲାମାଙ୍କ ପରି ଏଠାରେ ରହିବା ପାଇଁ ଅନୁମତି ଦେବେ କି ନାହିଁ ଆଜି ଏକ ପ୍ରଶ୍ନବାଚୀ ହୋଇ ରହିଛି । ତେବେ ଏତେ ଦୁର୍ଗମ ପଥ ଅତିକ୍ରମ କରି ଭାରତକୁ ଆସିଥିବା ଏଇ ନିର୍ବାସିତ ବୁଦ୍ଧ, ପ୍ରଭୁ ବୁଦ୍ଧଦେବଙ୍କ ଶାନ୍ତିବାଣୀ ପ୍ରଚାର କରିବାରେ କେତେଦୂର ସକ୍ଷମ ହେବେ - ସମୟ କେବଳ ତା'ର ଉତ୍ତର ଦେବ ।

*ଅନୁପମ ଭାରତ*

# ଜୀଅନ୍ତା ଚିଙ୍ଗୁଡି

ମଣିଷ ଜନ୍ମ ହେବା ପରେ ପରେ କୁଆଡେ ମରିବାକୁ ଆରମ୍ଭ କରେ । ସେ ପ୍ରକ୍ରୀୟାଟି ଚାଲିଥାଏ ଶେଷ ନିଶ୍ୱାସ ଚାଲୁଥିବା ଯାଏ । ଏବଂ ମୃତ୍ୟୁପରେ ହିଁ ମଣିଷର ଯଶଗାନ କରିବା ଏକ ପାରମ୍ପରିକ ଅଭ୍ୟାସ ମାତ୍ର । କିଛିବର୍ଷ ତଳେ ବିଶିଷ୍ଟ ଲେଖକ ନୀରଦ ଚନ୍ଦ୍ର ଚୌଧୁରୀଙ୍କର ଯେତେବେଳେ ଶହେ ଦୁଇବର୍ଷ ବୟସରେ ବିୟୋଗ ହେଲା ସାରା ବିଶ୍ୱର ଲେଖକମାନେ ସେମାନଙ୍କ ଶୋକ ସଂବାଦ ଏବଂ ସ୍ମୃତି ଆଲେଖ୍ୟରେ ନୀରଦବାବୁଙ୍କ ପ୍ରଶଂସା କରିବାରେ ଶତମୁଖ ହୋଇ ଉଠିଲେ । ମାତ୍ର ଔପନ୍ୟାସିକ ଭି.ଏସ୍.ନାଇପୁଲ ତାଙ୍କ ଶ୍ରଦ୍ଧାଞ୍ଜଳୀରେ ଲେଖିଥିଲେ: ''ନୀରଦ ଚୌଧୁରୀ ଥିଲେ ଜଣେ ବୟସ୍କ ନୁଦ୍ଦୁ..... ।'' କଥାଟି ଉଣା ଅଧିକେ ସତ, ମୃତ୍ୟୁରେ ଜଣେ ପବିତ୍ର ହୋଇଯାଏନା ।

ନିକଟ ଅତୀତରେ (ମଇ ୨୦୦୧) ଔପନ୍ୟାସିକ ଆର.କେ. ନାରାୟଣ ଆମକୁ ଛାଡି ଚାଲି ଯାଇଛନ୍ତି । ରାସି ପୁରମ୍ କ୍ରିଷ୍ଣାସ୍ୱାମୀ ନାରାୟଣଙ୍କ ଦେହାନ୍ତ ଖବର ପ୍ରସାରିତ ହେବାଦିନ ତାମିଲନାଡୁ ବିଧାନସଭା ନିର୍ବାଚନର ଫଳାଫଳ ଘୋଷଣା ଚାଲିଥିଲା । ଜୟଲଳିତାଙ୍କ ଦଳର ଜୟଯାତ୍ରା ସଂବାଦରେ ଭରପୁର ଥାଏ ରେଡିଓ ଓ ଟେଲିଭିଜନ ଚାନେଲ । ସବାଶେଷକୁ ପ୍ରସାରିତ ହେଉଥାଏ ଏଇ ଦୁଃଖଦ ଖବରଟି ।

ଆର୍:କେ: ନାରାୟଣ ହେଉଛନ୍ତି ଭାରତୀୟଙ୍କ ଦ୍ୱାରା ଲେଖୁଥିବା ଇଂରାଜୀ ଔପନ୍ୟାସିକତ୍ରୟୀଙ୍କ ଭିତରୁ ଅନ୍ୟତମ । ଅନ୍ୟ ଦୁଇଜଣ ବିଶିଷ୍ଟ ଲେଖକ ହେଉଛନ୍ତି ମୁଲ୍କ ରାଜ ଆନନ୍ଦ ଓ ରାଜା ରାଓ । ତେବେ ନାରାୟଣ ହେଉଛନ୍ତି ଏପରି ଜଣେ ବିଶିଷ୍ଟ ଔପନ୍ୟାସିକ ଯିଏ ଯୌନ କିମ୍ବା ହିଂସାକୁ ତାଙ୍କ ଲେଖାରେ ସ୍ଥାନ ନ ଦେଇ ମଧ୍ୟ ଜଣେ ସଫଳ ତଥା ଲୋକପ୍ରିୟ ଔପନ୍ୟାସିକ ହେବାର ଗୌରବ ଅର୍ଜନ କରିଛନ୍ତି ।

'ମାଲଗୁଡି'ର ସ୍ରଷ୍ଟା ଏଇ ପ୍ରିସିଦ୍ଧ ଲେଖକଙ୍କ ପ୍ରାକ୍ ଯୌବନ କାଳ ଘୋର ଆର୍ଥିକ ତଥା ମାନସିକ ସଂକଟ ଦେଇ ଗତି କରିଥିଲା । ୧୯୩୯ ମସିହାରେ ଖୁବ୍ କମ୍ ବୟସରେ ତାଙ୍କ ପତ୍ନୀ 'ରାଜମ୍'ଙ୍କ ଅକାଳ ବିୟୋଗ ତାଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା । ଅବଶ୍ୟ ପରବର୍ତ୍ତୀ ସମୟରେ ତାଙ୍କ ପରିବାର ପରିଜନଙ୍କ ପକ୍ଷରୁ ପୁର୍ନଃବିବାହ କରିବା ଲାଗି ପ୍ରବଳ ଚାପ ପଡିଥିଲା । ମାତ୍ର ଏ ସମ୍ପର୍କରେ କୌଣସି ନିଷ୍ପତ୍ତି ନେବା ପୂର୍ବରୁ ସେ ତାଙ୍କ ସ୍ୱର୍ଗତ ପତ୍ନୀଙ୍କ ଅଶରୀରି ସହ ଏକାନ୍ତରେ ଯୋଗସୂତ୍ର ସ୍ଥାପନ କରିଥିଲେ ଏବଂ ବିବାହ

କଲେ ତାଙ୍କର 'ଶିଶୁକନ୍ୟା' ପ୍ରତି ଏହା ବିପଦ ଆଣିବ ବୋଲି ଦିବଂଗତ ପତ୍ନୀ ରାଜମ୍‌ଙ୍କ ଠାରୁ ଶୁଣିବା ପରେ ସେ ପୁର୍ନଃବିବାହ ପ୍ରସ୍ତାବକୁ ପ୍ରତ୍ୟାଖାନ କରିଦେଇଥିଲେ । ଏଠି ସ୍ପଷ୍ଟ କରି ଦିଆଯାଇ ପାରେ ଯେ, ପତ୍ନୀଙ୍କ ଅକାଳ ମୃତ୍ୟୁ ପରେ ବି ଶ୍ରୀ ନାରାୟଣ ଅଧିକାଂଶ ସମୟରେ ତାଙ୍କ ଅଶରୀରି ଆତ୍ମା ସହ ନିଭୃତରେ ଯୋଗାଯୋଗ ରଖିବାରେ ସଫଳ ହୋଇଥିଲେ ।

ନିଜ ଚାରିପାଖରେ ଆତଯାତ ହେଉଥିବା ସାଧାରଣ ଚରିତ୍ରମାନଙ୍କୁ ନେଇ ସେ ଗଳ୍ପ ଓ ଉପନ୍ୟାସ ରଚନା କରୁଥିଲେ । ସାନ୍ଧ୍ୟ ଭ୍ରମଣରେ ସେ ଧୀରେ ଧୀରେ ଚାଲୁଥିଲେ । ଚରିତ୍ରମାନଙ୍କ ସହ ଏକାତ୍ମତା ସ୍ଥାପନ କରିବାରେ ସେ ଥିଲେ ଧୂରୀଣ । ସେ ନିଜର ଚରିତ୍ର ମାନଙ୍କୁ ଖୁବ୍ ଭଲ ଭାବରେ ଚିହ୍ନି ପାରିଥିଲେ ।

କାହାଣୀଟିଏ ମନେ ପଡୁଛି ପ୍ରସଂଗକ୍ରମେ । ଥରେ ଗୋଟିଏ ରାଜକୁମାର ଘୋଷଣା କଲେ ଯେ ସେ ଏପରି ଜଣେ ରାଜକୁମାରୀଙ୍କୁ ବିବାହ କରିବାକୁ ଚାହାନ୍ତି ଯିଏ କେବଳ ସୁନ୍ଦରୀ ନୁହେଁ, ସର୍ବଗୁଣ ସଂପନ୍ନା ହୋଇଥିବେ । ତା'ପରେ ରାଜକର୍ମଚାରୀଙ୍କ ଦ୍ୱାରା ରାଜକୁମାରୀ ଖୋଜା ଚାଲିଲା । ହେଲେ କୌଣସିଟି ରାଜକୁମାରୀ ରାଜକୁମାରଙ୍କ ପସନ୍ଦ ହେଲା ନାହିଁ । ଅଗତ୍ୟା ରାଜକୁମାର ନିଜେ ରାଜକୁମାରୀଙ୍କ ଅନୁସଂଧାନରେ ବିଶ୍ୱଭ୍ରମଣ କଲେ । କିନ୍ତୁ ହାୟ । ପ୍ରତିଟି ରାଜକୁମାରୀଙ୍କ ଭିତରେ କିଛି ନା କିଛି ଦୁର୍ବଳତା ସେ ଦେଖୁଥିଲେ ।

ନିରୁପାୟ ହୋଇ ଏଥର ରାଜକୁମାର ଫେରିଆସିଲେ ନଅରକୁ । ସମୟ ଗଡି ଚାଲିଥାଏ । ଦିନେ, ପ୍ରବଳ ତୋଫାନ ହେଲା ରାଜନଅର ମୁଖ୍ୟ ଫାଟକ ସେଇ ପ୍ରଚଣ୍ଡ ତୋଫାନ୍‌ଘାତରେ ଖୋଲିଗଲା । ବିଜୁଳୀ ଆଲୋକରେ ଦେଖାଗଲା ଜଣେ ସୁନ୍ଦରୀ ନାରୀ ଭିଜାବସ୍ତ୍ରରେ ଫାଟକ ସାମ୍ନାରେ ଠିଆ ହୋଇଛନ୍ତି । ରାଜକୁମାରଙ୍କ ଆଦେଶ ପାଇ କଟୁଆଳ ଉକ୍ତ ନାରୀଙ୍କୁ ଭିତରକୁ ଆଣିବା ପରେ ସେ ଜଣେ ରାଜକୁମାରୀ ବୋଲି ନିଜର ପରିଚୟ ପ୍ରଦାନ କଲେ । ଆଃ : ଖୁବ୍ ଶୀଘ୍ର ଜଣା ପଡିଯିବ, ତୁମେ ପ୍ରକୃତରେ ରାଜକୁମାରୀ ନା ନୁହେଁ । ରାଜକୁମାର ମନେ ମନେ ଭାବିଲେ ।

ଘଟଣାକ୍ରମେ ସେଦିନ ରାତିଟି ବିତାଇବାକୁ ପଡିଲା ରାଜକୁମାରୀଙ୍କୁ ରାଜ ଉଆସରେ । ଶୋଇବା ଲାଗି ଶୟନକକ୍ଷରେ ରାଜକୁମାରଙ୍କ ଆଦେଶାନୁସାରେ ଗୋଟିଏ ଉପରେ ଆଉ ଗୋଟିଏ କରି କୋଡିଏଟି ଗଦି ରଖାଗଲା । ଏବଂ ତା' ଉପରେ କୋଡିଏଟି ପକ୍ଷୀର ପରରେ ନିର୍ମିତ ଶେଯ ରଖିଲେ ମାତ୍ର ଶେଯର ତଳେ ରାଜକୁମାରଙ୍କ ନିର୍ଦ୍ଦେଶାନୁଯାୟୀ ଗୁପ୍ତରେ ତିନୋଟି ଶୁଖିଲା ମଟର ଦାନା ରଖାଯାଇଥିଲା ।

: କାଲି ରାତିରେ କେମିତି ନିଦ ହେଲା ?'' ସକାଳେ ରାଜକୁମାର ରାଜକୁମାରୀଙ୍କୁ

ପଚାରିଲେ ।

: ସାରା ରାତି ମୁଁ ଶୋଇ ପାରିନି । ମୁଁ ଜାଣେନା ମୋ ଶେଯରେ କ'ଣ ଥିଲା, ମାତ୍ର ଗୋଟିଏ କଠିନ ବସ୍ତୁ ଯୋଗୁଁ ମୁଁ ସାରାରାତି ଅନିଦ୍ରାରେ କଟାଇ ଦେଲି ।'' ରାଜକୁମାରୀ ବଖାଣିଲେ ।

ରାଜକୁମାରଙ୍କର ଆଦୌ ସନ୍ଦେହ ନ ଥିଲା ରାଜକୁମାରୀଙ୍କୁ ଚିହ୍ନିବାରେ । ତାଙ୍କର ଯୁକ୍ତି ଥିଲା : କୋଡିଏଟି ପରତିଆରି ଶେଯ ଓ କୋଡିଏଟି ଗଦି ତଳେ ରଖା ଯାଇଥିବା ତିନୋଟି ଶୁଖିଲା ମଟର ଯୋଗୁଁ କେବଳ ଜଣେ ପ୍ରକୃତ ରାଜକୁମାରୀଙ୍କ ସୂକ୍ଷ୍ମ ନିଦ୍ରାରେ ହିଁ ବ୍ୟାଘାତ ସୃଷ୍ଟି ହୋଇପାରେ । ଶେଷରେ ସେ ତାଙ୍କୁ ବିବାହ କଲେ । ରାଜକୁମାରୀଙ୍କୁ ରାଜକୁମାର ଚିହ୍ନି ପାରିବା ପରି ଆର୍.କେ.ନାରାୟଣ ତାଙ୍କ ଚରିତ୍ରମାନଙ୍କୁ ଖୁବ୍ ଆନ୍ତରିକତାର ସହ ଚିହ୍ନି ପାରିଥିଲେ । ଆର.କେ.ନାରାୟଣଙ୍କୁ ଭାରତରେ ଲୋକପ୍ରିୟ କରିବାରେ ପ୍ରମୁଖ ଭୂମିକା-ଗ୍ରହଣ କରିଥିଲେ ଦୈନିକ ଖବରକାଗଜ 'ହିନ୍ଦୁ' । ଦକ୍ଷିଣ ଭାରତର ଘରେ ଘରେ ସେ ପରିଚିତ ହୋଇଥିଲେ ଏଇ ଖବରକାଗଜ ଯୋଗୁଁ । ଭାରତ ବାହାରେ ଶ୍ରୀ ନାରାୟଣଙ୍କୁ ପରିଚିତ କରାଇଥିଲେ ବିଶିଷ୍ଟ ଔପନ୍ୟାସିକ ଗ୍ରାହମ୍ ଗ୍ରୀନ୍ । ବିଦେଶରେ ତାଙ୍କ ଖ୍ୟାତି ଏପରି ବଢ଼ି ଯାଇଥିଲା ଯେ ଏକଦା ବିଶିଷ୍ଟ ନେତା ଜୟପ୍ରକାଶ ନାରାୟଣଙ୍କୁ ଆମେରିକାରେ ଆର.କେ.ନାରାୟଣ ଭାବେ ସେଠାକାର ଯୁବକମାନେ ତାଙ୍କଠୁଁ ଅଟୋଗ୍ରାଫ୍ ନେଇଥିଲେ ।

ସରଳ ଜୀବନ ଯାପନ କରୁଥିବା ଏଇ ଲେଖକଙ୍କ ସମ୍ପର୍କରେ ସ୍ମୃତିଚାରଣ କରି ଔପନ୍ୟାସିକ ଖୁସ୍‌ବନ୍ତ ସିଂ ଅନେକ କଥା କହିଛନ୍ତି । ଥରେ ହନଲୁଲୁରେ ଦୁଇ ଲେଖକଙ୍କର ଭେଟ ହୁଏ କୌଣସି ଏକ ସାହିତ୍ୟିକ କାର୍ଯକ୍ରମରେ ।-ଦିନେ ସଂଧ୍ୟାରେ ଖୁସ୍‌ବନ୍ତ ଶ୍ରୀ ନାରାୟଣଙ୍କୁ ପ୍ରସ୍ତାବ ଦିଅନ୍ତି ଏକ ବ୍ଲୁ ପିକ୍‌ଚର ଦେଖିବାକୁ ଯିବା ପାଇଁ । ଶ୍ରୀ ନାରାୟଣ ଖୁସ୍‌ବନ୍ତଙ୍କ ପ୍ରସ୍ତାବରେ ସଂଗେ ସଂଗେ ରାଜି ହୋଇଯାନ୍ତି ଏବଂ ଦୁହେଁ ମିଶି ବ୍ଲୁ ପିକ୍‌ଚର ଦେଖିବାକୁ ଏକ ହଲରେ ପଶନ୍ତି । ମାତ୍ର କିଛି ସମୟ ପରେ ଖୁସ୍‌ବନ୍ତ ହିଁ ହଲ୍ ଭିତରୁ ପଦାକୁ ବାହାରି ଆସନ୍ତି । ନିର୍ବିକାର ଚିତ୍ତରେ ସେଯାଏଁ ଶ୍ରୀ ନାରାୟଣ ପିକ୍‌ଚରଟିକୁ ଉପଭୋଗ କରୁଥାନ୍ତି ।

'ଦି ଗାଇଡ' ଉପନ୍ୟାସର ଲୋକପ୍ରିୟତାରେ ମୁଗ୍ଧ ହୋଇ ପ୍ରସିଦ୍ଧ ଚଳଚ୍ଚିତ୍ର ଅଭିନେତା ଓ ନିର୍ଦ୍ଦେଶକ ଦେବାନନ୍ଦ ୧୯୬୪ ମସିହା ସେପ୍ଟେମ୍ବର ସକାଳେ ନ୍ୟୁୟର୍କରୁ ସିଧାସଳଖ ଆସି ପହଞ୍ଚନ୍ତି ଶ୍ରୀ ନାରାୟଣଙ୍କ ଯାଦବଗିରି ବାସଗୃହରେ । ଉଦ୍ଦେଶ୍ୟଥିଲା, 'ଗାଇଡ'କୁ ଚଳଚ୍ଚିତ୍ର କରିବା ।

ଅନେକ ସମୟ ଯାଏ ଆଲୋଚନା ହେବା ପରେ ହଠାତ୍ ଦେବାନନ୍ଦ ତାଙ୍କ

ପକେଟରୁ ଚେକ୍ ବହିଟି କାଢ଼ି, କଲମ ଖୋଲି କେତେଟଙ୍କା ଲେଖିବେ ବୋଲି ଶ୍ରୀ ନାରାୟଣଙ୍କୁ ପ୍ରଶ୍ନ କଲେ । :ତୁମ ଚଳଚ୍ଚିତ୍ର ସହ ମୁଁ ଉଠିବାକୁ ନ ହେଲେ ବୁଡିବାକୁ ଚାହେଁ, ତୁମକୁ ଶୋଷଣ କରିବାକୁ ମୁଁ ଚାହେଁନା ।'' ସଗର୍ବେ ଶ୍ରୀ ନାରାୟଣ ଉତ୍ତର ଦେଲେ । ଏଥର ହସି ହସି ଦେବାନନ୍ଦ କହିଲେ: ଆପଣଙ୍କ ସହଯୋଗରେ ଆମେ ନିଶ୍ଚିତ ଭାବେ ଆଗେଇ ଯିବୁ ଏବଂ ଏଣିକି ଆକାଶ ହିଁ ଆମର ସୀମା ହେବ ।''

ମାତ୍ର ପରବର୍ତ୍ତୀ ସମୟରେ 'ଗାଇଡ' ଚଳଚ୍ଚିତ୍ରରେ କ୍ଷତି ହୋଇଚି ଦର୍ଶାଇ ଦେବାନନ୍ଦ ଶ୍ରୀ ନାରାୟଣଙ୍କୁ ଟଙ୍କାଟିଏ ସୁଦ୍ଧା ଦେଲେ ନାହିଁ । ତାହା ହିଁ ଜଣେ ଲେଖକ ଜୀବନର ବିଡମ୍ବନା ।

କେବଳ ସେତିକି ନୁହେଁ । ଥରେ ଶ୍ରୀ ନାରାୟଣଙ୍କୁ ଲର୍ଡ ମାଉଣ୍ଟବ୍ୟାଟେନ୍‌ଙ୍କ ସହ ଗୋଟିଏ ଭୋଜିରେ ଯୋଗ ଦେବାକୁ ପଡିଲା । ଏ ପ୍ରକାର ସାକ୍ଷାତ୍‌କାର ପାଇଁ ବ୍ୟବସ୍ଥା କରିଥିଲେ ଦେବାନନ୍ଦଙ୍କ ପ୍ରଯୋଜନା ସହଯୋଗୀ ଓ ପ୍ରସିଦ୍ଧ ଔପନ୍ୟାସିକା ପର୍ଲ.ଏସ୍.ବକ । ଆଲୋଚନା ସମୟରେ ସେ (ଔପନ୍ୟାସିକା) 'ଗାଇଡ'ର କଥାବସ୍ତୁ ଲର୍ଡ ମାଉଣ୍ଟବ୍ୟାଟେନ୍‌କୁ ଶୁଣାଇଥିଲେ । ଯଦିଓ ଏଇ ଚଳଚ୍ଚିତ୍ରର ଚିତ୍ରନାଟ୍ୟ ପର୍ଲ.ଏସ୍.ବକ ନିଜେ ଲେଖିଥିଲେ ଓ ଏଥିପାଇଁ ସେ ଦେବାନନ୍ଦଙ୍କଠାରୁ ସେ ସମୟରେ ଦୁଇଲକ୍ଷ ଡଲାର ନେଇଥିଲେ, ତଥାପି ଠିକ୍ ଭାବେ କଥାବସ୍ତୁଟିକୁ ସେ ଉପସ୍ଥାପିତ କରିପାରିନଥିଲେ । ଫଳସ୍ୱରୂପ, ଏଇ ଚଳଚ୍ଚିତ୍ରଟି ଦେଖିବା ଲାଗି ବ୍ରିଟେନ୍‌ର ମହାରାଣୀଙ୍କୁ ପ୍ରବର୍ତ୍ତାଇବା ପାଇଁ ଏକ ଆୟୋଜିତ ସଭାରେ ପୁନଶ୍ଚ ଆବଶ୍ୟକତା ରହିଲାନି, ଲର୍ଡ ମାଉଣ୍ଟବ୍ୟାଟେନ୍ ପ୍ରଥମରୁ ହିଁ ନିରୁତ୍ସାହିତ ହୋଇଥିଲେ ନିଜେ ।

'ଗାଇଡ' ଉପନ୍ୟାସକୁ ନେଇ ଅନେକ ସମସ୍ୟା ସାମ୍ନା କରିଛନ୍ତି ଶ୍ରୀ ନାରାୟଣ । ୧୯୬୫ ମସିହାରେ 'ନ୍ୟୁୟର୍କ ଟାଇମସ୍'ର ସାହିତ୍ୟ ସଂପାଦକ ତଥା ବଂଧୁ ହାର୍ଭେ ବ୍ରେଟ୍ 'ଗାଇଡ' ଉପନ୍ୟାସର ମଞ୍ଚନାଟକ ରୂପାନ୍ତର କରିବା ପାଇଁ ଚାହିଁଲେ । ମାତ୍ର ନାଟକଟି ଲେଖି ସାରିବା ପରେ ଶ୍ରୀ ନାରାୟଣ ଏହି ପାଣ୍ଡୁଲିପିକୁ ପଢ଼ି ଆଶ୍ଚର୍ଯ୍ୟ ହୋଇଗଲେ । ପ୍ରଥମତଃ, ରୂପାନ୍ତରିତ ନାଟକଟିରେ ହିରୋଇନ୍‌ଙ୍କୁ ସ୍ଥାନ ଦିଆଯାଇନଥିଲା, ଅପରପକ୍ଷରେ ଅନାବଶ୍ୟକ ଭାବେ ଏଥିରେ ଦୁଇଜଣ ଅଧିକ ଚରିତ୍ର ସୃଷ୍ଟି କରାଯାଇଥିଲା । କେବଳ ଏତିକି ନୁହେଁ, ନାଟକଟିର ମୁଖ୍ୟ ଚରିତ୍ର ମଞ୍ଚ ଉପରେ ଦର୍ଶକମାନଙ୍କୁ ପଛକରି ମୁତିବା ଭଳି ଦୃଶ୍ୟ ମଧ୍ୟ ବ୍ରେଟ ଏଥିରେ ଯୋଡିଥିଲେ ।

ଶ୍ରୀ ନାରାୟଣ, ସ୍ୱାଭାବିକ ଭାବେ, ଏପରି ନାଟକକୁ ମଞ୍ଚସ୍ଥ କରିବାକୁ ଅନୁମତି ଦେଇ ନଥିଲେ । ଫଳତଃ ଘଟଣା ଏପରି ଅବସ୍ଥାକୁ ଯାଇଥିଲା ଯେ ଶ୍ରୀ ନାରାୟଣ ଓ ବ୍ରେଟ୍‌ଙ୍କ ମଧ୍ୟରେ ଆଇନ୍ ଅଦାଲତ ପର୍ଯ୍ୟନ୍ତ କଥା ପହଂଚିଲା । ଏପରିକି ନିଜ ଓକିଲଙ୍କ

ପରାମର୍ଶରେ ଶ୍ରୀ ନାରାୟଣଙ୍କୁ ଚବିଶିଘଣ୍ଟା ମଧ୍ୟରେ ଆମେରିକା ଛାଡି ଭାରତକୁ ଫେରିବାକୁ ପଡିଥିଲା । ତାଙ୍କୁ ଆତ୍ମଗୋପନରେ ରଖିବା ଲାଗି ସାହାଯ୍ୟ କରିଥିଲେ ଭାରତୀୟ ଦୂତାବାସର ଅଫିସର ତଥା ଲେଖକ କେ.ନଟବର ସିଂ । ଅବଶ୍ୟ ପରବର୍ତ୍ତୀ ସମୟରେ ହାର୍ଭେ ବ୍ରେଟ ଓ ଶ୍ରୀ ନାରାୟଣଙ୍କ ମଧ୍ୟରେ ବୁଝାମଣା ହୋଇ 'ଗାଇଡ'ଟି ପୁନଶ୍ଚ 'ବ୍ରେଡଓ୍ୱେ'ରେ ମଞ୍ଚସ୍ଥ ହୋଇଥିଲା । କାହାଣୀରେ କୌଣସି ପରିବର୍ତ୍ତନ କରାଯାଇ ନଥିଲା ।

ଜୀବନ ଯାପନ ପ୍ରଣାଳୀରେ ଅତି ସରଳ ବୋଲି ପ୍ରତୀୟମାନ ହେଉଥିବା ଶ୍ରୀ ନାରାୟଣଙ୍କୁ ବାଦ୍ ଦେଇ ଇଂରାଜିରେ ଲେଖୁଥିବା ଭାରତୀୟମାନଙ୍କ ସମ୍ପର୍କରେ ଲେଖିବା କଥା କଳ୍ପନା କରାଯାଇପାରେନା । ସେଇଥି ପାଇଁ ଜଣେ ସମାଲୋଚକ କହିଥିଲେ : ଆର୍.କେ.ନାରାୟଣ ହେଉଛନ୍ତି ପ୍ଲେଟରେ ଏକ ଜୀବନ୍ତ ଚିଙ୍ଗୁଡି ସଦୃଶ । ମୃତ୍ୟୁ ପରେ ବି ତୁମେ ତାଙ୍କୁ କଣ୍ଟା ଚାମୁଚରେ ଆଘାତ କରିବାକୁ ଚେଷ୍ଟା କଲେ, ସେ ତୁମ ଆଡକୁ ଡେଇଁ ପଡିବ, ଆଉ ଏକ ଅବତାରରେ ।

ଆଗାମୀ ଅନେକ ବର୍ଷ ପାଇଁ ଏଇ ଜୀଅନ୍ତା ଚିଙ୍ଗୁଡି ଆମ ମାନଙ୍କୁ ସମ୍ମୋହତ କରି ରଖିବେ, ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ ।

# ଏବେ ମୁଁ ବ୍ୟସ୍ତ ଅଛି

ଏବେ ଲେଖକମାନଙ୍କ ଭିତରେ ରହିଥିବା ସମ୍ପର୍କ ଓ ଅସୂୟାକୁ ନେଇ ସାହିତ୍ୟିକ ମହଲରେ ଖୁବ୍ ଆଲୋଚନା ହେଉଛି । ନିକଟରେ କବି ସଚ୍ଚିରାଉତରାୟ ଦିବଂଗତ ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତିଙ୍କ ଉପରେ ଦେଇଥିବା ଆଶାଳୀନ ମନ୍ତବ୍ୟ ଯୋଗୁଁ ଏଇ ଦିଗ ବିଷୟରେ ଆଲୋଚନା ହେଉଛି ।

ଲେଖକମାନଙ୍କର ପରସ୍ପର ପ୍ରତି କାଦୁଅ ଫୋପାଡିବା କେବଳ ଓଡିଆ ସାହିତ୍ୟ କାହିଁକି, ଭାରତର ଅନ୍ୟ ଭାଷାର ସାହିତ୍ୟ ଏବଂ ଆନ୍ତର୍ଜାତୀୟ ଖ୍ୟାତିସଂପନ୍ନ ଲେଖକମାନଙ୍କ ଭିତରେ ମଧ୍ୟ ସଂଘଟିତ ହୋଇଥାଏ । ନିକଟରେ ପରଲୋକଗମନ କରିଥିବା ଔପନ୍ୟାସିକ ଆର୍.କେ. ନାରାୟଣଙ୍କ ସହ ବିଶିଷ୍ଟ ଔପନ୍ୟାସିକ ଭି.ଏସ୍. ନାଇପୁଲଙ୍କର ମଧ୍ୟ ତିକ୍ତ ସମ୍ପର୍କ ରହିଥିଲା । 'ସାଟାନିକ୍ ଭର୍ସେସ୍' ବହିକୁ ନିଷେଧ କରିବା ଲାଗି ଇରାନ୍‌ର ଧାର୍ମିକ ନେତା ଆୟାତୋଲା ଖୋମିନୀ ଯେତେବେଳେ ଔପନ୍ୟାସିକ ସଲମାନ ରୁସ୍‌ଦୀଙ୍କ ବିରୋଧରେ ମୃତ୍ୟୁଦଣ୍ଡାଦେଶ ଜାରି କଲେ, ବିଶିଷ୍ଟ ଲେଖକ 'ଜନ୍ ଲେ କ୍ୟାରି' ସଲ୍‌ମାନ ରୁସ୍‌ଦୀଙ୍କ ସପକ୍ଷରେ ଓକିଲାତି କରି ନଥିଲେ, ଯଦିଓ ବିଶ୍ୱର ସମସ୍ତ ଲେଖକ ଏହା ବିରୋଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ ।

ଲେଖକମାନେ ଜଣେ ଜଣେ ଈଶ୍ୱର ବୋଲି ଭାରତୀୟ ଶାସ୍ତ୍ରମାନଙ୍କରେ ଉଲ୍ଲେଖ କରାଯାଇଛି । ମାତ୍ର ଏଇ ଈଶ୍ୱରୋପମ ରକ୍ତମାଂସ ଧାରୀ ମଣିଷମାନଙ୍କ 'ଆଚରଣ' ବେଳେ ବେଳେ ସେମାନଙ୍କ 'ଉଚ୍ଚାରଣ' ପ୍ରତି ସନ୍ଦେହପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ଜନ୍ମାଇଥାଏ । ସ୍ନେହ, ପ୍ରେମ, କରୁଣା, ଦୟା ଓ ସହୃଦୟତାର ଅମୃତ ପରଷୁଥିବା ବେଳେ, ଏମାନେ କାହିଁକି ବେଳେବେଳେ ବିଷ ପରଷି ଦେଇ ସମଗ୍ର ମାନବଜାତିକୁ ବିଭ୍ରାନ୍ତ କରି ଦିଅନ୍ତି- ତାହା ହିଁ ଏବେ ସୁଦ୍ଧା ରହସ୍ୟାଚ୍ଛନ୍ନ ।

ପ୍ରାୟ ପନ୍ଦରବର୍ଷ ତଳର ଘଟଣା ମନେ ପଡୁଛି । ଦିଲ୍ଲୀ ରହଣିର ଶେଷଦିନ ବନ୍ଧୁ ଅନୁରୋଧ କଲେ ବିଶିଷ୍ଟ କବି ଅମୃତା ପ୍ରୀତମ୍‌ଙ୍କୁ ଭେଟିବା ପାଇଁ । ପ୍ରସ୍ତାବଟି ମନ୍ଦ ନଥିଲା । ତା'ଛଡା ଜଣେ ଯୁବ କବି ଭାବେ ଅମୃତା ପ୍ରୀତମ୍‌ଙ୍କୁ ଭେଟିବା ଭଳି ଏକ ରୋମାଞ୍ଚକର ଅନୁଭବକୁ କିଏ ବା ହାତଛଡା କରନ୍ତା । ସେଦିନ ପୂର୍ବାହ୍ନରେ କବୟିତ୍ରୀଙ୍କ ହଜ୍‌ଖସ୍ଥ ବାନ ଭବନରେ ଯାଇ ପହଞ୍ଚିଲୁ ଆମେ । ଭିତରକୁ ଖବର

ଗଲା, କିଛି ସମୟ ପରେ ଜଣେ ବୟସ୍କ ତଥା ସୌମ୍ୟ ବ୍ୟକ୍ତି ଆମ ପାଖକୁ ଆସିଲେ । ସେ ଥିଲେ ଅମୃତାଙ୍କ ପ୍ରିୟ ପ୍ରେମିକ, ସ୍ୱାମୀ ତଥା ଚିତ୍ରକର ଇମ୍‌ରୋଜ୍ । ତାଙ୍କ ସମ୍ପର୍କରେ ତ ପଢ଼ିଥିଲି ଅମୃତାଙ୍କ ଆତ୍ମଜୀବନୀରୁ । ବେଶ୍ ମେଳାପୀ ଓ ଭଦ୍ର । ମାତ୍ର ସେ ହିଁ ଆମକୁ ସୂଚାଇ ଦେଲେ ଯେ ଅମୃତା ଏବେ ବ୍ୟସ୍ତ ଅଛନ୍ତି ଏବଂ ଆମକୁ ଦେଖା କରିପାରିବେନି । ମାତ୍ର ମୋ'ର ବନ୍ଧୁ ତାଙ୍କୁ ବାରମ୍ବାର ଅନୁରୋଧ କରିବା ଫଳରେ ଇମ୍‌ରୋଜ୍ ତାଙ୍କୁ ଟିକେ କଡା ଜବାବ୍ ଦେଲେ: 'ଆସିବା ପୂର୍ବରୁ ଆପଏଣ୍ଟମେଣ୍ଟ ନେବା ଉଚିତ ନଥିଲା କି ?' ଏହି କହିବା ପ୍ରାସଙ୍ଗିକ ହେବ ଯେ ଓଡିଶାରେ କୌଣସି ଲେଖକକୁ ଭେଟିବା ପାଇଁ କେବେ ବି ପ୍ରାକ୍ ଅନୁମତିର ଆବଶ୍ୟକତା ହିଁ ନଥିଲା, ଏବେ ବି ନାହିଁ ।

ସେଦିନ ଦୁଃଖରେ ଦୁଇ ବନ୍ଧୁ ଫେରିଥିଲୁ ଓଡିଶାକୁ । ଅବଶ୍ୟ ଅମୃତାଙ୍କ ଘର ସାମ୍ନାରେ ରହୁଥିବା ବିଶିଷ୍ଟ ପଞ୍ଜାବୀ ଲେଖକ କର୍ତାର ସିଂ ଦୁଗଗ୍‌ଲଙ୍କ ଅମ୍ଳୀୟତା ଏବେ ବି ସ୍ମୃତିପଟରେ ସତେଜ ରହିଛି, ଗୋଲାପ ଫୁଲ ପରି ।

ପନ୍ଦର ବର୍ଷ ପରେ, ପୁଣି ଥରେ ସେଇ ଦୁଃଖଦ ଅନୁଭୂତିର ପୁନରାବୃତ୍ତି । ନିକଟରେ ପ୍ରକାଶ ପାଇଥିବା ଗପ ବହିଟି ଉପହାର ଦେବା ଲାଗି ଜଣେ କବିଙ୍କ ପାଖକୁ ଗଲି । ଭୁବନେଶ୍ୱରରେ ରୁହନ୍ତି ସେ । ଓଡିଶାର ଏକ ସାହିତ୍ୟାନୁଷ୍ଠାନର ସଚିବ ଭାବେ କାମ କରୁଛନ୍ତି । କବିତା ବି ଲେଖନ୍ତି । ଓଡିଶା ପ୍ରଶାସନିକ ସେବା'ର ଅଧିକାରୀ । ଯିବା ପୂର୍ବରୁ ଜଣେ ବନ୍ଧୁଙ୍କ ଠାରୁ ଶୁଣିଲି ଯେ ଦୁଇ ବର୍ଷ ତଳର ମହାବାତ୍ୟାକୁ ନେଇ ଏକ କବିତା ବହି ସେ ଛାପୁଛନ୍ତି ଏବଂ ଗୋଟେ ଇଂରାଜି ଉପନ୍ୟାସରେ ହାତ ଦେଇଛନ୍ତି । ଏ ସବୁ ଶୁଣିବା ପରେ ତାଙ୍କ ପ୍ରତି ଆଗ୍ରହୀ ହେବା ସ୍ୱାଭାବିକ ।

ସଚିବ-କବି ଅଫିସ୍‌ରେ ଥାନ୍ତି । କାର୍ଡ ପଠାଇଲି । ଭିତରୁ ଡକରା ଆସିଲା । ଆଦରରେ ବଢ଼େଇ ଦେଲି ସଦ୍ୟ ପ୍ରକାଶିତ ବହି ଖଣ୍ଡିକ । ଚୁପ୍ ଚାପ୍ ବହିଟି ଟେବୁଲ ଉପରେ ଥୋଇଦେଇ ସେ ତାଙ୍କ ଫାଇଲ୍‌ରେ ମୁଣ୍ଡ ପୋତିଲେ । କେଇ ମୁହୂର୍ତ୍ତ ତାଙ୍କ ସାମ୍ନାରେ ଠିଆ ହେଲି । ସାମ୍ନା କାନ୍ଥରେ ଝୁଲୁଥିବା 'ଇନ୍‌କୁମ୍‌ବେନ୍‌ସି ଚାର୍ଟକୁ ଚାହିଁଲି । ତେର ନମ୍ବରରେ ତାଙ୍କ ନାଁ ଲେଖା ହୋଇଛି । ହଠାତ୍ ଓଡିଆ ଢ଼ଗଟି ମନକୁ ଆସିଗଲା : ତରକି ଥିବୁ ତେର୍‌କୁ.... ।'

ନିରବତା ଭାଙ୍ଗି, ପ୍ରଶାସନିକତାର କୃତ୍ରିମ ମୁଖଭଙ୍ଗୀ କରି ସେ କହିଲେ: ଏବେ ମୁଁ ବ୍ୟସ୍ତ ଅଛି ।'' ପୁଣି କେଇ ସେକେଣ୍ଡରେ ସେଇ ବାକ୍ୟଟିକୁ ଦୋହରାଇଲେ । ବହିଟି ବଢ଼ାଇବା ପରେ ସାମାନ୍ୟ ସୌଜନ୍ୟତା ରକ୍ଷା କରି ଧନ୍ୟବାଦଟିଏ ଦେଇ ନଥିଲେ ସେ ।

ତାଙ୍କ କୋଠରୀରୁ ଫେରି ଆସିବା ବେଳେ ମନେ ହେଲା- ଜଣେ ଅଯୋଗ୍ୟ ବ୍ୟକ୍ତି ପାଖରେ ମୁଁ ପହଞ୍ଚି ଯାଇଛି । ଯେଉଁ ବ୍ୟକ୍ତିଙ୍କର ସାହିତ୍ୟିକମାନଙ୍କ ପାଇଁ ଦୁଇପଦ କଥା ହେବା ପାଇଁ ସମୟ ନାହିଁ, ସେ ବ୍ୟକ୍ତି ସାହିତ୍ୟିକମାନଙ୍କ ଅନୁଷ୍ଠାନର ସଚିବ ହେବା ହାସ୍ୟାସ୍ପଦ କଥା ନୁହେଁ କି ?

ଏମିତି ଏଣୁତେଣୁ ଚିନ୍ତା କରୁ କରୁ ମନେ ହେଲା: ଏପରି ଅଜ୍ଞତା ପାଇଁ ତାଙ୍କୁ ଅନ୍ତତଃ କ୍ଷମା କରିଦିଆଯିବା ଉଚିତ । ତାହାହିଁ କଲି ।

# ଭୀରୁ ଭାରତ

ଜଣେ ଭୀରୁ ହିଁ କେବଳ ଗର୍ବର ସହ ଘୋଷଣା କରିଥାଏ ଯେ ଭୟ କ'ଣ ସେ ଜାଣେ ନାହିଁ । କାରଣ ସତ୍ୟକୁ ସାମ୍ନା କରିବାର ସତ୍‌ସାହସ ତା'ର ନଥାଏ । ପଚାଶ ବର୍ଷରୁ ଅଳ୍ପ ଅଧିକ ବର୍ଷ ତଳେ ଗାନ୍ଧିଜୀ ଯେଉଁ ଅହିଂସା ଅସ୍ତ୍ରଟି ଆମ୍ଭମାନଙ୍କୁ ଦେଇଯାଇଥିଲେ ସମଗ୍ର ବିଶ୍ୱକୁ ଜୟ କରିବା ଲାଗି, ଏବେ ସେ ଅସ୍ତ୍ରର ଧାର ନଷ୍ଟ ହୋଇଯାଇଥିବାର ସମ୍ବାଦମାନ ପ୍ରତିନିୟତ ପହଞ୍ଚୁଛି ଆମ ପାଖରେ ।

ଗଣତନ୍ତ୍ର ପ୍ରତି ଆମର ସମ୍ମାନବୋଧ କେତେଦୂର ବଳବତ୍ତର ରହିଛି-ତା'ର ପ୍ରମାଣ ଗତ ସପ୍ତାହର ଖବରକାଗଜରେ ପ୍ରିୟଙ୍କା ଗାନ୍ଧିଙ୍କ ପୁତ୍ରଲାଭ ସମ୍ବାଦଟି ପଢ଼ିବା ପରେ ସ୍ପଷ୍ଟ ହୋଇଯିବ । ଏଇ ଶିଶୁପୁତ୍ରଟି ଭାରତୀୟ କ୍ଷମତା ରାଜନୀତି ଆକାଶରେ ଏକ ଉଜ୍ଜ୍ୱଳ ଜହ୍ନ ପରି ଝଟକିବେ ନା ନାହିଁ, ସେ ନେଇ ଭାରତବାସୀ ଭିତରେ ଆରମ୍ଭ ହୋଇଛି ତର୍କ ଓ ଆଲୋଚନା । ଶହେକୋଟିର ଭାରତବର୍ଷକୁ ନେତୃତ୍ୱ ଦେବା ପାଇଁ ଆମର ଏଇ ରୁଗ୍‌ଣ ଚିନ୍ତାଧାରା, ଗଣତନ୍ତ୍ର ପ୍ରତି କେବଳ ବିଦ୍ରୁପ ସୃଷ୍ଟି କରିଛି ।

ଅସଲ କଥା ହେଲା, ଭାରତୀୟ ସ୍ୱାଭିମାନର ମୃତ୍ୟୁ ପ୍ରକ୍ରିୟାଟି ଅନେକ ଦିନରୁ ଆରମ୍ଭ ହୋଇଯାଇଛି । ତେବେ ବିଗତ ଦଶବର୍ଷର ଘଟଣାକ୍ରମକୁ ପର୍ଯ୍ୟାଲୋଚନା କଲେ, ଆମ ସାମ୍ନାରେ କେବଳ ଅନ୍ଧାର ହିଁ ମହଜୁଦ୍ ରହିଛି-ଏପରି ପ୍ରତ୍ୟୟ ଆମକୁ ଆହୁରି ଅଧିକ ନିଃସହାୟ କରିଦେଉଛି । ଭାରତ ଏକ 'ନରମ ଦେଶ' ବୋଲି ଏବେ ସର୍ବତ୍ର ଖୁବ୍ ଚର୍ଚ୍ଚା ହେଉଛି । ଏ ସମ୍ପର୍କରେ ବିଶିଷ୍ଟ ଲେଖକ ଗୁନାର୍ ମିରଡାଲ୍‌ଙ୍କ ବହି ଏସିଆନ ଡ୍ରାମାରେ ବିସ୍ତୃତ ଆଲୋଚନା କରାଯାଇଛି । ବସ୍ତୁଜଗତର ଯାବତୀୟ ସମ୍ଭାରକୁ ନିଜ ଅକ୍ତିଆରରେ ରଖିବାର ଇଚ୍ଛା ଓ ଅହେତୁକ ମୋହ ଯୋଗୁଁ ମଣିଷର ଅସ୍ଥି ମଜ୍ଜାଗତ ନୈତିକତାଟି ହିଁ ପ୍ରଥମେ ବଳି ପଡୁଛି । ହୁଏତ ଏଇ କାରଣ ଓ ଅବସ୍ଥାକୁ ଅନୁଧ୍ୟାନ କରି ସେଦିନ ଜଣେ କବି ଉଦାତ୍ତ କଣ୍ଠରେ ଗାଇଥିଲେ : ଜମିର ମୂଲ, କୋଠାର ମୂଲ, ସୁନାର ମୂଲ ଅଛି ଏଠି, ମଣିଷର ମୂଲ ନାହିଁ କିଛି/ଚଉକି ମୂଲ, ଚାମଚା ମୂଲ, ଭେଳିକି ମୂଲ ଅଛି ଏଠି, ଜୀବନର ମୂଲ ନାହିଁ କିଛି ।''

ବିଗତ ବର୍ଷମାନଙ୍କ ଅପେକ୍ଷା ମଣିଷ ଏବେ ମନ୍ଦିର, ମସ୍‌ଜିଦ୍ ତଥା ଗୁରୁଦ୍ୱାରକୁ ବେଶୀ ଯିବା ଆରମ୍ଭ କରିଛି, ମାତ୍ର ଦୁଃଖଦ ଘଟଣା ହେଉଛି ପୂର୍ବର ସମସ୍ତ ପରିସଂଖ୍ୟାନକୁ

ଟପି ଯାଇ ନୂତନ ରେକର୍ଡ ସୃଷ୍ଟି କରୁଛି ମଣିଷ ହତ୍ୟା, ଧର୍ଷଣ, ଘୃଣା, କାତରତା ଓ ଅସହ୍ୟତାରେ । ଗୋଟେ ଜାତିର ବିବେକର ମୃତ୍ୟୁ ଘଟିଛି ବୋଲି ଯା'ଠାରୁ କ'ଣ ଅଧିକ ପ୍ରମାଣ ଦରକାର ?

ଏକଥା ଅନସ୍ୱୀକାର୍ଯ୍ୟ, ଅଧିକାଂଶ ଦେଶରେ ବିଭିନ୍ନ ଅର୍ଥନୈତିକ ସ୍କାଣ୍ଡାଲ୍ ଘଟିଥାଏ । କ୍ଷମତାସୀନ ରାଜନୈତିକ ବ୍ୟକ୍ତିମାନେ ସେମାନଙ୍କର ସଂପୃକ୍ତି ସ୍ୱୀକାର କରିବା ସହ ଅନୁତାପ ମଧ୍ୟ କରନ୍ତି । ଫଳତଃ ସାମାଜିକ ବ୍ୟବସ୍ଥାରେ ସ୍ୱଚ୍ଛତା ଆସିବା ସହ ସେମାନଙ୍କର ନୈତିକ ମନୋବଳ ସାମାଜିକ ବିଶ୍ୱାସକୁ ପ୍ରତିହତ କରେ ନାହିଁ । ଅଥଚ ଭାରତୀୟମାନେ ସତ କହିବାକୁ ଅଭ୍ୟାସଟିକୁ ଅନେକ ଦିନରୁ ଭୁଲି ଗଲେଣି ବୋଲି ମନେହୁଏ ଅନେକ ସମୟରେ । ବୋଫର୍ସ, ହାୱାଲା, ଗୋଖାଦ୍ୟ, ହର୍ଷଦ ମେହେଟ୍ଟା ତଥା ସୁଖରାମଙ୍କ ଦୁର୍ନୀତି ଆଜି ସାଂପ୍ରତିକ ସମୟର କଳଙ୍କିତ ଅଧ୍ୟାୟ । ଅଥଚ କୌଣସି ରାଜନୈତିକ ନେତା ଏଯାବତ୍ ନିଜ ଆତ୍ମ ଦୁର୍ନୀତିରେ ସଂପୃକ୍ତ ଥିବା କଥା ସ୍ୱୀକାର କରି ନାହାଁନ୍ତି । ସ୍ୱୀକାରୋକ୍ତି ପାଇଁ ଯେଉଁ ସାହସିକତାର ଆବଶ୍ୟକତା ରହିବା କଥା, ଭାରତୀୟ ମାନସିକତାରେ ତାହା ଅବର୍ତ୍ତମାନ । ରାଜା କାଳସ୍ୟ କାରଣମ୍ । ଏବେତ ରାଜା ନାହାଁନ୍ତି । ତାଙ୍କ ବଦଳରେ ଆମ ପାଖରେ ଅଛନ୍ତି ମନ୍ତ୍ରୀ ଗଣ । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ଏବେ ମ୍ୟାଚ୍ ଫିକ୍ସିଂରେ ଜଡିତ ତଥା ଭାରତୀୟ ସ୍ୱାଭିମାନ୍‌କୁ ନିଲାମ୍ କରିଥିବା କ୍ରିକେଟ ଖେଳାଳୀମାନଙ୍କ ଘରୁ ଆୟ ବହିର୍ଭୂତ ବିପୁଳ ସମ୍ପତ୍ତି ଜବତ୍ କରାଯାଇଥିଲେ ମଧ୍ୟ ସେମାନେ କୌଣସି ଦୁର୍ନୀତିରେ ଜଡିତ ଥିବା କଥା ସ୍ୱୀକାର କରି ନାହାଁନ୍ତି । ଅଥଚ ଦକ୍ଷିଣ ଆଫ୍ରିକାର କ୍ରିକେଟ୍ ତାରକା ହାନ୍‌ସୀ କ୍ରୋନିଏ ନିଜ ଅପକର୍ମର ପର୍ଦ୍ଦା ଗୋଟିକ ପରେ ଗୋଟିଏ ଯେପରି ଖୋଲିବା ଆରମ୍ଭ କଲେ, ତାହା ଭାରତୀୟମାନଙ୍କୁ କମ୍ ଆଶ୍ଚର୍ଯ୍ୟ କରିନାହିଁ । ପ୍ରସଙ୍ଗତଃ ହାମିଲ୍‌ଟନ୍ ମନେପଡନ୍ତି : ସତ୍ୟ ଗୋଟାଏ ଟର୍ଚ୍ଚ ପରି, ତାକୁ ଯେତେ ହଲେଇବ, ସେତିକି ବେଶୀ ସେ ଆଲୋକିତ କରିବ ।''

ଅସତ୍ୟର ଯଜ୍ଞରେ ସ୍ୱାଭିମାନ ହିଁ ବଳି ପଡିଥାଏ ସବୁବେଳେ । ସତ୍ୟକୁ ଭୟ କରୁଥିବା ଆମର ନେତାମାନେ 'ଯାଅ' ବୋଲି ହୁକୁମ୍ ଦେଇଥା'ନ୍ତି- ଠିକ୍ ସରକାରୀ ଚାକିରି କରୁଥିବା ଜଣେ ଅଧସ୍ତନ କର୍ମଚାରୀକୁ ତା'ର ବରିଷ୍ଠ ଅଧିକାରୀ ଆଦେଶ ଦେବା ଢ଼ଙ୍ଗରେ । ମାତ୍ର ଜଣେ ନେତା ମୁହଁରେ ଶବ୍ଦର କଇଁଫୁଲ ଫୁଟେ: ଚାଲ ଯିବା ।' 'ଯାଅ' ଏବଂ 'ଚାଲ ଯିବା' ଭିତରେ ଅନେକ ତଫାତ୍ । ପ୍ରଥମଟି ଅପେକ୍ଷା ଦ୍ୱିତୀୟଟିରେ ଥାଏ ବିପଦ । ସେଇଥିପାଇଁ ତ ନେତାମାନଙ୍କୁ ଲକ୍ଷ୍ୟ କରି ଗିନା ଡାଭିସ୍ ଥରେ ଲେଖିଥିଲେ-ତମେ ଯଦି କୌଣସି କଥାରେ ବିପଦକୁ ପ୍ରଶ୍ରୟ ଦେବନାହିଁ; ତେବେ ସବୁ କଥାରେ ତମେ ବିପଦକୁ ଆମନ୍ତ୍ରଣ କରିବ ।'' ଏଇ ଆପ୍ତବାକ୍ୟଟିର ପୁନରାବୃତ୍ତି ଚାଲିଛି ଭାରତରେ ପ୍ରାୟ ଦଶବର୍ଷ ହେବ ।

କିଛି ଉଦାହରଣ ଏଠି ପ୍ରାସଙ୍ଗିକ ହେବ । ୧୯୮୯ ମସିହାରେ ତତ୍କାଳୀନ କେନ୍ଦ୍ର

ସ୍ୱରାଷ୍ଟ୍ର ମନ୍ତ୍ରୀ ମୁଫ୍‌ତି ମହମ୍ମଦ ସଇଦ୍‌ଙ୍କ କନ୍ୟା ରୁବେୟା ସଇଦ୍‌ଙ୍କୁ ଅପହରଣକାରୀମାନେ ପାଞ୍ଚଜଣ କାଶ୍ମୀରୀ ଉଗ୍ରପନ୍ଥୀଙ୍କ ମୁକ୍ତି ପରେ ହିଁ ଛାଡି ଥିଲେ । ଏହାର ପ୍ରାୟ ଦୁଇବର୍ଷ ପରେ ଇଣ୍ଡିଆନ୍ ଅଏଲ୍‌ର କର୍ମଚାରୀ ଦୋରାଇସ୍ୱାମୀଙ୍କୁ ଏଗାରଜଣ ଉଗ୍ରପନ୍ଥୀଙ୍କ ବଦଳରେ ଅପହରଣକାରୀ ମୁକ୍ତ କରିଥିଲେ । ଉକ୍ତ ବର୍ଷ ସଇଫୁଦ୍ଦିନ୍ ସୋଜ୍‌ଙ୍କ କନ୍ୟା ନହିଜ୍‌ଙ୍କୁ ମଧ୍ୟ ତିନିଜଣ ବନ୍ଦୀ ଉଗ୍ରପନ୍ଥୀ ବଦଳରେ ମୁକ୍ତି ଦେଇଥିଲେ । ଶତାବ୍ଦୀର ପ୍ରଥମ ଦିନ ଭାରତର ବୈଦେଶିକ ମନ୍ତ୍ରୀ, ଆଝାର୍ ମାସୁଦ୍ ସମେତ ତିନିଜଣ ଉଗ୍ରପନ୍ଥୀଙ୍କୁ ନିଜ ବିମାନରେ ବସାଇ ନେଇ କାନ୍ଦାହାର ମରୁଭୂମିରେ ଛାଡିଥିଲେ । ଫଳରେ ନେପାଳରୁ ଆସୁଥିବା ଭାରତୀୟ ବିମାନଟିକୁ ଅପହରଣ କରି ନେଇଥିବା ଉଗ୍ରପନ୍ଥୀମାନେ ମୁକ୍ତ କରିଥିଲେ । ମାତ୍ର ଦେଢ଼ମାସ ତଳେ ରୁଷିଆର ରାଷ୍ଟ୍ରପତି ଭ୍ଲାଦିମିର ପୁଟିନ୍‌ଙ୍କ ଚାପ ଫଳରେ ପୁରୁଲିଆ ଅସ୍ତ୍ରକ୍ଷେପଣ ଅପରାଧରେ ଜଡିତ ଥିବା ତଥା ଆଜୀବନ କାରାବାସ ଭୋଗୁଥିବା ପାଞ୍ଚଜଣ ବିଦେଶୀ ବିମାନ କର୍ମଚାରୀଙ୍କୁ ମଧ୍ୟ ରାଜକ୍ଷମା ମିଳିସାରିଛି ରାଷ୍ଟ୍ରପତିଙ୍କଠାରୁ ।

ଆହୁରି ଅନେକ ଉଦାହରଣ ଦିଆଯାଇପାରନ୍ତା । ମାତ୍ର ଖୁବ୍ ନିକଟରେ ସତ୍ୟ ମଙ୍ଗଳମ୍ ଜଙ୍ଗଲରେ ଥିବା ଚନ୍ଦନ କାଠ ତସ୍କର ବୀରାପ୍ପାନ, ବିଶିଷ୍ଟ ଚିତ୍ରତାରକା ରାଜକୁମାରଙ୍କୁ ଅପହରଣ କରି କର୍ଣ୍ଣାଟକ ଓ ତାମିଲନାଡୁ ସରକାରଙ୍କୁ ଯେପରି ଅପଦସ୍ତ କରିଛି-ତା'ର ପଟାନ୍ତର ନାହିଁ । ଯଦି ଭାରତର ସର୍ବୋଚ୍ଚ ନ୍ୟାୟାଳୟ ଏଥିରେ ହସ୍ତକ୍ଷେପ ନକରିଥା'ନ୍ତେ ତେବେ ଏତେବେଳକୁ ବୀରାପ୍ପାନର ଶତାଧିକ କୁଖ୍ୟାତ ସହଯୋଗୀ ଜେଲ୍‌ର ଚାରିକାନ୍ଥରୁ ମୁକୁଳି ନୂତନ ତଥା ଭୟଙ୍କର ଅପରାଧର ଖସଡା ପ୍ରସ୍ତୁତ କରିସାରନ୍ତେଣି । ରାଜକୁମାରଙ୍କୁ ମୁକୁଳାଇବା ଲାଗି କର୍ଣ୍ଣାଟକ ସରକାର ସୁପ୍ରିମକୋର୍ଟରେ ଯେଉଁ ଯୁକ୍ତି ଉପସ୍ଥାପନ କରିଛନ୍ତି ସେଥିରେ ବିରକ୍ତି ପ୍ରକାଶ କରି ବିଚାରକ ମଣ୍ଡଳୀ ମନ୍ତବ୍ୟ ଦେଇଛନ୍ତି-ତୁମର ନାଗରିକମାନଙ୍କ କଲ୍ୟାଣ ପାଇଁ ତୁମେ ଯଦି ଏବେ ବ୍ୟସ୍ତ, ତେବେ ଦୀର୍ଘ ଆଠ ବର୍ଷ ଧରି କ'ଣ କରୁଥିଲ ?'' ଗୋଟାଏ ସରକାରର ଅପାରଗତାକୁ ଭର୍ତ୍ସନା କରି ବିଚାରକ ମଣ୍ଡଳୀ କହିଛନ୍ତି : ଯଦି ତୁମେ ଏ ସମସ୍ୟାର ସମାଧାନ କରି ନପାରୁଛ, ତେବେ କ୍ଷମତାରୁ ଓହରି ଯାଇ ଅନ୍ୟକୁ ସୁଯୋଗ ଦିଅ, ଯିଏ ଏହାର ସମାଧାନ କରିପାରିବ ।''

ବିଶିଷ୍ଟ ଶିଳ୍ପପତି ହେନେରୀ ଫୋର୍ଡ ଥରେ କହିଥିଲେ : ତୁମେ କ'ଣ କରିବାକୁ ଯାଉଛ ତା' ଉପରେ ତୁମ ପ୍ରତିଷ୍ଠାର ସୌଧ ନିର୍ମାଣ କରିପାରିବ ନାହିଁ ।'' କ'ଣ କରିସାରିଛନ୍ତି - ତାହାହିଁ କର୍ଣ୍ଣାଟକ ସରକାରଙ୍କୁ ଗୋଟାଏ ଭୀରୁ ଶାସକର ମୁକୁଟ ପିନ୍ଧାଇଛି ଏଯାବତ୍ । କର୍ଣ୍ଣାଟକ ଏକ ନମୁନା ମାତ୍ର । ଭାରତ ହିଁ ସେଇ ଦିଗ୍‌ବଳୟ ଆଡେ ମୁହାଁଇଛି ଖୁବ୍ ଦ୍ରୁତ ଗତିରେ ଏବଂ ଆମେ କେବଳ ନିରବ ଦର୍ଶକ ପାଲଟିଛୁ ।

*ଅନୁପମ ଭାରତ ୧୧.୯.୨୦୦୦*

# ଦୁଇଟୋପା ଲୁହ

ୟା' ଭିତରେ ଗୋଟାଏ ବର୍ଷ ବିତିଗଲାଣି ବ୍ରଜମୋହନଙ୍କ ପରଲୋକ ପ୍ରାପ୍ତିର । ଖବରକାଗଜ ପୃଷ୍ଠାରୁ ତାଙ୍କ ଫଟୋ ଓ ସ୍ମୃତିଚାରଣ ପଢ଼ି ଏଇ ନିଷ୍କର୍ଷରେ ପହଞ୍ଚିଲି, ସତରେ ସମୟର ସ୍ରୋତ କାହାକୁ ଅପେକ୍ଷା କରେନି ।

ଗତବର୍ଷ ଜୁଲାଇ ମାସରେ ଯେତେବେଳେ ବ୍ରଜମୋହନ ମହାନ୍ତିଙ୍କର ପରଲୋକ ହେଲା, ତାଙ୍କୁ ଶ୍ରଦ୍ଧାଞ୍ଜଳି ଦେଇ ଲେଖାଟିଏ ଲେଖିବାକୁ ସ୍ଥିର କରିଥିଲି, ଲେଖାର ଶୀର୍ଷକଟିଏ ମଧ୍ୟ ଆପେଆପେ ମନକୁ ଆସିଯାଇଥିଲା : 'ବରିମୁଣ୍ଡର ବ୍ରଜମୋହନ ।' ଅଧିକାଂଶ ବ୍ୟକ୍ତି ବ୍ରଜମୋହନଙ୍କ ସମ୍ପର୍କରେ ଲେଖିଲା ବେଳେ ଧାରଣାଟିଏ ଦେଇଥା'ନ୍ତି ଯେ ବ୍ରଜମୋହନଙ୍କ ଘର ପୁରୀ ସହରରେ । କାରଣ ଓକିଲାତି ବ୍ୟବସାୟ ଓ ରାଜନୈତିକ ଜୀବନ ପୁରୀରେ ଆରମ୍ଭ ହୋଇଥିଲା ତାଙ୍କର । ମାତ୍ର ବ୍ରଜମୋହନଙ୍କ ଜନ୍ମ ପୁରୀ ସହରରେ ନୁହେଁ, ପୁରୀ ଜିଲ୍ଲାର 'ବରିମୁଣ୍ଡ' ଗ୍ରାମରେ ହୋଇଥିଲା । କିଶୋର ଜୀବନରେ, ଏକଦା ଓଡିଶା ବିଧାନସଭାର ସଦସ୍ୟମାନଙ୍କ ସମ୍ପର୍କରେ ବିବରଣୀ ପୁସ୍ତିକାରୁ ଏଇ ଖବରଟି ସଂଗ୍ରହ କରିଥିଲା ଏ ଲେଖକ । କାରଣ ବରିମୁଣ୍ଡ ଗ୍ରାମଟି ଏଇ ଲେଖକର ଗ୍ରାମଠାରୁ ଅଳ୍ପ କିଛି ମାଇଲ୍ ବ୍ୟବଧାନରେ ରହିଥିବା କଥା ଜଣାଥିଲା ସେ ସମୟରେ ।

ବ୍ୟକ୍ତିଗତ ପରିଚୟ ନଥିଲେବି ଦୁଇଟି ଅବସରରେ ବ୍ରଜମୋହନଙ୍କ ସହ ଭେଟ ହେବାର ସୁଯୋଗ ମିଳିଥିଲା । ପୁରୀର ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଅଧ୍ୟୟନରତ ଥିବାବେଳେ ଥରେ କବି କୁମାର ମହାନ୍ତି ବ୍ରଜମୋହନଙ୍କ ସହ ପରିଚୟ କରାଇଥିଲେ । ସମୟ ସଂଧ୍ୟା, ସ୍ଥାନ: ଏକ ସ୍କୁଲର ବାର୍ଷିକୋତ୍ସବ । ବୋଧହୁଏ ସେ ମୁଖ୍ୟ ଅତିଥି ଥା'ନ୍ତି ସେଇ ଉତ୍ସବର । କୁମାର ଭାଇ ପରିଚୟ ଦେବା ବେଳେ ନନାଙ୍କ ନାଁ କହିବାମାତ୍ରେ ବ୍ରଜବାବୁ ସଂଗେ ସଂଗେ ମୋତେ ପଚାରିଲେ: ନନାଙ୍କର ଯେଉଁ ମକଦ୍ଦମା ଚାଲିଥିଲା, ଏବେ ତାହା କେଉଁସ୍ତରରେ ଅଛି ?'' ଯଦିଓ ମୁଁ ବ୍ରଜବାବୁଙ୍କୁ କୌଣସି ସନ୍ତୋଷଜନକ ଉତ୍ତର ଦେଇପାରିନଥିଲି, ମାତ୍ର ନନାଙ୍କ ତତ୍କାଳୀନ ବ୍ୟବସାୟଜନିତ ଏକ ମକଦ୍ଦମା ଚାଲିଥିବା ସମ୍ପର୍କରେ ସଂପୂର୍ଣ୍ଣ ଅବଗତ ଥିଲି । ପରେ ନନାଙ୍କଠାରୁ ଅବଶ୍ୟ ଜାଣିଲି ଯେ ତାଙ୍କ ମକଦ୍ଦମା ସମ୍ପର୍କରେ ସେ କେବେବି ବ୍ରଜବାବୁଙ୍କୁ କହିନଥିଲେ କିମ୍ବା ତାଙ୍କ ସହ ବ୍ରଜବାବୁଙ୍କର କେବେବି ସାକ୍ଷାତ ଅଥବା ପରିଚୟ ହୋଇନଥିଲା । ପ୍ରାନ୍ତର

ରାଷ୍ଟ୍ରନୀତିଜ୍ଞ ଚାର୍ଲସ୍ ଡିଗଲ୍ କହିଥିବା କଥାଟି ମନେପଡିଲା : ରାଜନୀତିଜ୍ଞଟି ଯାହା କହେ ଯେହେତୁ ସେ କଥାରେ ସେ ନିଜେ ବିଶ୍ୱାସ କରେନି, ହେଲେ ଅନ୍ୟମାନେ ତାକୁ ସହଜରେ ବିଶ୍ୱାସ କଲା ବେଳେ ସେ ନିଜେହିଁ ଆଶ୍ଚର୍ଯ୍ୟ ହୋଇଯାଏ ।''

ବ୍ରଜମୋହନଙ୍କ ସହ ଆଉଥରେ ଭେଟ ହୁଏ ଯୋଗେଶ୍ୱରପୁର ବସ୍ଷ୍ଟାଣ୍ଡରେ । ଜନ୍ମସ୍ଥାନ ବରିମୁଣ୍ଡରୁ ସେ ଶଗଡ ଗାଡିରେ ବସି ଆସିଥାନ୍ତି କର୍ମସ୍ଥଳୀ ପୁରୀ ସହରକୁ ଯିବା ଲାଗି । ସେଇଠୁ ବସ୍‌ରେ ଚଢ଼ିବେ ବୋଲି ଅପେକ୍ଷା କରିଥା'ନ୍ତି । ହଠାତ୍ ପରିଚିତ ପାନ ଦୋକାନୀଟି ଇସାରାରେ ତାଙ୍କ ଉପସ୍ଥିତି କଥା ଜଣାଇଲା । ଯୋଗେଶ୍ୱରପୁର ବସ୍ଷ୍ଟାଣ୍ଡରୁ ବି ଏ ଲେଖକକୁ ପ୍ରତିଦିନ ନିମାପଡା ଯିବାକୁ ପଡୁଥିଲା । କଲେଜର ଶେଷ ବର୍ଷ ଛାତ୍ର । ଜାଣିଥାଏ-ବ୍ରଜମୋହନ ଥିଲେ ଉକ୍ତ କଲେଜରେ ପରିଚାଳନା ସମିତିର ସଭାପତି । ଟିକିନିଖି ପଚାରି ବସିଲେ ସେଠାକାର ପଢ଼ାପଢ଼ି କଥା । ଅଧିକାଂଶ ଅଧ୍ୟାପକ ଓ ଅଧ୍ୟକ୍ଷଙ୍କ ଆଚରଣ ଓ ପଠନ ଶୈଳୀ ସମ୍ପର୍କରେ ମଧ୍ୟ ସେ ପଚାରି ବୁଝିଲେ । କଥା ପ୍ରସଙ୍ଗରେ କବି କୁମାର ମହାନ୍ତି ଓ ଅନାମ ଗୋଷ୍ଠୀ ବିଷୟ ମଧ୍ୟ ଆଲୋଚନା ଭିତରକୁ ଚାଲି ଆସିଲା । ସାହିତ୍ୟଠାରୁ ହଠାତ୍ ବ୍ରଜମୋହନ ଦର୍ଶନ ଶାସ୍ତ୍ର ସମ୍ପର୍କରେ ଅନର୍ଗଳ ଭାଷଣ ଦେବା ଆରମ୍ଭ କଲେ । ପ୍ଲାଟୋ ଆରିଷ୍ଟୋଟଲ୍‌ଙ୍କଠାରୁ ଆରମ୍ଭ କରି ହେଗେଲ୍ ଓ ନିତ୍‌ସେ ସମ୍ପର୍କରେ ସେ ତାଙ୍କ ତର୍ଜମା ଓ ବିଚାର ଉପସ୍ଥାପିତ କରୁଥା'ନ୍ତି । ଜଣେ ବକ୍ତା ଆଉ ଜଣେ ଶ୍ରୋତା । ହଠାତ୍ ସରଗରମ ଆଲୋଚନାରେ ଭଙ୍ଗା ଆଣି ପୁରୀ ବସ୍ ପହଞ୍ଚି ସାରିଥିଲା ସେଠାରେ । ସେଇ ବସ୍‌ରେ ମୁଁ ଗଲି ନିମାପଡା ଓ ବ୍ରଜମୋହନ ପୁରୀ ଅଭିମୁଖେ । ତାହାହିଁ ଥିଲା ଶେଷ ସାକ୍ଷାତ୍ । ତେବେ ତାଙ୍କଠାରୁ ସେଦିନ ବିଦାୟ ନେବା ବେଳେ ରାଜନୀତି ପେଶାରେ ଏପରି ବୁଦ୍ଧିଦୀପ୍ତ ବ୍ୟକ୍ତି ଥିବାର ପ୍ରତ୍ୟକ୍ଷ ଅନୁଭବ କରି ଆଶ୍ୱସ୍ତ ହେଲି । ଅବଶ୍ୟ ତାଙ୍କର ବୁଦ୍ଧିମତ୍ତା ପାଇଁ ତାଙ୍କ ରାଜନୈତିକ ଜୀବନରେ ସାଫଲ୍ୟର ସିଡି ଚଢ଼ିବାକୁ ଯାଇ ସାପମାନଙ୍କ ହାବୁଡରେ ସେ ଅନେକଥର ପଡିଛନ୍ତି । ବୁଦ୍ଧିମାନ ନହୋଇ ବଚସ୍କର ହୋଇଥିଲେ ସେ ଆହୁରି ଶୀର୍ଷକୁ ଯାଇପାରିଥା'ନ୍ତେ ।

ବ୍ରଜମୋହନଙ୍କ କଥା ଲେଖୁଲେଖୁ ହଠାତ୍ ଖବରକାଗଜ ପୃଷ୍ଠାରୁ କଥାକାର କହ୍ନେଇଲାଲ ଦାସଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପିତ ହୋଇବା ଲେଖାଟିଏ ଦେଖିଲି । ପଚିଶି ବର୍ଷ ତଳେ କହ୍ନେଇଲାଲ ଦାସ ଯୁବକ ଅବସ୍ଥାରେ ଇହଲୋକ ତ୍ୟାଗ କରିଥିଲେ ୧୯୭୫ ମସିହା ଜୁଲାଇ ମାସରେ । କହ୍ନେଇଲାଲ ଦାସଙ୍କ ମୃତ୍ୟୁର ମାତ୍ର କେଇମାସ ପୂର୍ବରୁ ଅନାମ ଗୋଷ୍ଠୀ ସହ ସମ୍ପର୍କ ସ୍ଥାପିତ ହୋଇଥିଲା ଏ ଲେଖକର । କଥାକାର କହ୍ନେଇଲାଲ ଦାସଙ୍କର ଏକ ଅନାମ କବିତା 'ସବୁଠୁ ଭଲ, ପାଇବା ଭଲ....' ଗୋଷ୍ଠୀ ପତ୍ରିକାରେ ପ୍ରକାଶିତ ହୋଇ ବେଶ୍ ଆଲୋଡନ ସୃଷ୍ଟି କରିଥିଲା ସେ ସମୟରେ ।

ବରାବର କହ୍ନେଇଲାଲଙ୍କ ଗଳ୍ପ ପଢ଼ିବା, ଖୋଜିଖୋଜି ତାଙ୍କ ଗଳ୍ପ ପ୍ରକାଶିତ ପତ୍ରିକା କିଣିବା ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ଅବଶ୍ୟ ଅସୀତ୍ ମହାନ୍ତି ଏବଂ ପ୍ରଦୀପ ଶ୍ରୀଚନ୍ଦନଙ୍କ ସମ୍ପାଦିତ କହ୍ନେଇ କଥାଘର ପ୍ରକାଶିତ ହେବାର ଅନେକ ଆଗରୁ କହ୍ନେଇଙ୍କ ଗଳ୍ପ ଓ ଦୁର୍ଘଟଣା ଉପନ୍ୟାସ ପଢ଼ି ସାରିଥିଲା ଏ ଲେଖକ । ଯୁବ ମାନସକୁ ସ୍ୱପ୍ନ ବାଣ୍ଟିବା ଲାଗି ସେ ନିଜେ ଯେପରି ମୋହିନୀ ବେଶକୁ ଆବୋରି ନେଇଥିଲେ । କହ୍ନେଇଲାଲଙ୍କ ଲୋକପ୍ରିୟତାକୁ ଲକ୍ଷ୍ୟ କରି ତତ୍କାଳୀନ ବରିଷ୍ଠ ସାହିତ୍ୟିକ କହିଥିଲେ : ଅଳ୍ପ ବୟସରେ ମୃତ୍ୟୁ ଯୋଗୁଁ କହ୍ନେଇଲାଲଙ୍କ ଯଶ ବଢ଼ିଯାଇଛି ।'' ଏହା ଅବଶ୍ୟ ତାଙ୍କ ପ୍ରତିଭା ପ୍ରତି ଈର୍ଷା ଓ ଅସୂୟା ଭାବର ଏକ ଅସୁସ୍ଥ ଉଚ୍ଚାରଣଟିଏ ବ୍ୟତୀତ ଅନ୍ୟ କିଛି କାରଣ ନଥିଲା । କହ୍ନେଇଲାଲଙ୍କୁ କେବେବି ଭେଟିନି, ମାତ୍ର ତାଙ୍କର ଗଳ୍ପରେ ଥିବା କବିତାର ମହକରେ ଅନେକବାର ଆକ୍ରାନ୍ତ ହୋଇଛି । ଅନେକ ବରିଷ୍ଠ ଲେଖକଙ୍କୁ ତାଙ୍କ ଗଳ୍ପ ବେଶ୍ କିମିଆଁ କରି ରଖିଥିଲା ସେ ସମୟରେ ।

ଉଦାହରଣଟିଏ ଦିଆଯାଇପାରେ, କହ୍ନେଇଲାଲଙ୍କର ଗୋଟିଏ ଗଳ୍ପ (ଯାହାର ଶୀର୍ଷକ ସଂପ୍ରତି ବିସ୍ମୃତ)ର ଚରିତ୍ରଟି ଜଣେ ଫୁଟବଲ ଖେଳାଳୀ । ଫୁଟବଲ୍ ଖେଳୁଥିବା ସମୟରେ ଖେଳ ପଡିଆରେ ତା'ର ମୃତ୍ୟୁ ହୁଏ । ଉକ୍ତ ଖେଳାଳୀର ଭଉଣୀକୁ ପ୍ରେମ କରେ ତା'ର ଅନ୍ତରଙ୍ଗ ବନ୍ଧୁ । ଶବବାହକମାନେ ଖେଳାଳୀର ଶବକୁ ଶ୍ମଶାନ ନେଇଯା'ନ୍ତି, ବନ୍ଧୁ ଜଣକ ଖେଳାଳୀର ଭଉଣୀକୁ ହାତରେ ଟେକିନିଏ ଏକ କୋଠରୀକୁ । ମାଇଭାଇମାନେ ତାକୁ କାଠ ଉପରେ ଶୁଆଇ ଦିଅନ୍ତି, ବନ୍ଧୁ ତା'ର ଭଉଣୀକୁ ଶୁଆଇ ଦିଅନ୍ତି ଖଟ ଉପରେ । ସେମାନେ ମୁଖାଗ୍ନି ଦେବା ପରେ ଚାରିଆଡେ ନିଆଁ ଲାଗିଯାଏ, ବନ୍ଧୁ ଜଣକ ତା'ର ଭଉଣୀର ଓଠରେ ଓଠ ଚୁଆଇଁ ଦେବା ପରେ ତା'ର ଦେହରେ ନିଆଁ ଚରିଯାଏ ଯେପରି । ବେଶ୍ ଚମତ୍କାର ଚିତ୍ରକଳ୍ପର ପ୍ରୟୋଗ କରିଛନ୍ତି ଏ ଗଳ୍ପରେ କହ୍ନେଇଲାଲ । ଏ ଗଳ୍ପ ପ୍ରକାଶିତ ହେବାର କିଛି ବର୍ଷ ପରେ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥଙ୍କ ନାଟକ 'ମୁଁ ଦୁହେଁ' ପ୍ରକାଶିତ ହୁଏ, ଯେଉଁଥିରେ ଏଇ ଚିତ୍ରକଳ୍ପଟି ଅବିକଳ ନକଲ କରାଯାଇଛି । ଆଶ୍ଚର୍ଯ୍ୟର କଥା କୌଣସିଠାରେ ନାଟ୍ୟକାର ଶ୍ରୀ ରଥ ସୌଜନ୍ୟତା ଦୃଷ୍ଟିରୁ ଏ କଥା ସ୍ୱୀକାର କରିନାହାଁନ୍ତି । ଏ ସମ୍ପର୍କରେ ଏ ଲେଖକ ଶ୍ରୀ ରଥଙ୍କୁ ସେତେବେଳେ ପତ୍ର ଲେଖି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେ ନିରୁତ୍ତର ରହିଲେ । ଆଉଥରେ ତାଙ୍କ ସହ ଅଚାନକ ଭେଟ ହେବା ବେଳେ ଏ ପ୍ରସଙ୍ଗ ଉଠାଇବାରୁ ନାଟ୍ୟକାର ଶ୍ରୀ ରଥ କହ୍ନେଇଲାଲଙ୍କ ଗଳ୍ପଟି ପଢ଼ି ନାହାଁନ୍ତି ବୋଲି କହିଲେ । ଓଡିଶାର କୌଣସି ସମାଲୋଚକ ଏଯାବତ୍ ଏ ବିଷୟରେ ପାଟି ଖୋଲି ନାହାଁନ୍ତି, ଯଦିଓ ଘଟଣାଟି କୋଡିଏ ବର୍ଷରୁ ଅଧିକ କାଳ ହେଲା ଘଟିଲାଣି । ବଡ ଲୋକମାନଙ୍କ ଚିନ୍ତାଧାରା ଏକାପ୍ରକାର ବୋଲି ଆମେ ଆଗରୁ ଶୁଣିଥିଲୁ । ମାତ୍ର ସେମାନେ

ଅବିକଳ ଲେଖିପାରନ୍ତି ବୋଲି ଏବେ ଧାରଣା ହେଲା । ଏହାଠୁ ବଳି ଅଧିକ ଲଜ୍ଜା କିଛି ନାହିଁ ।

ଏଥର ମୂଳ କଥାକୁ ଆସେ । ଦୁଇ ଦିବଂଗତ ଆତ୍ମାଙ୍କ ପ୍ରୟାଣ ଜୁଲାଇ ମାସରେ ହୋଇଥିଲା, ଜଣେ ବୃଦ୍ଧ, ଅନ୍ୟଜଣକ ଯୁବକ ଥିଲେ । ଜଣେ ସମାଜ ପାଇଁ ଏବଂ ଆଉ ଜଣକ ସାହିତ୍ୟର ସେବା କରିବା ପାଇଁ ବଦ୍ଧପରିକର ଥିଲେ । ସେମାନଙ୍କ ପ୍ରତି ଆମେ ଅନ୍ୟାୟ କରିଛୁ । ଆସନ୍ତୁ, ଦୁଇ ଟୋପା ଲୁହ ଢ଼ାଳି ସେଇ ଦିବଂଗତ ଆତ୍ମାମାନଙ୍କ ପ୍ରତି ଆମର ଶ୍ରଦ୍ଧା ନିବେଦନ କରିବା ।

*ଅନୁପମ ଭାରତ ୭.୮.୨୦୦୦*

# ପୁଣିଥରେ ମନିକା

ଏବେ ପୁଣି 'ମନିକା'ର ପାଳି । ଗାଳ୍ପିକ ରାମଚନ୍ଦ୍ର ବେହେରାଙ୍କ 'ମନିକା' ଅଥବା ଆମେରିକାର ପୂର୍ବତନ ରାଷ୍ଟ୍ରପତି ବିଲ କ୍ଲିଣ୍ଟନ ନିନ୍ଦିତ ହୋଇଥିବା 'ମନିକା'ଙ୍କ କଥା ଏଠି ମୁଁ କହୁନି । ଆଜି ଆଉ ଜଣେ 'ମନିକା'ଙ୍କ କଥା କୁହାଯାଉଛି, ଯାହାପାଇଁ ବିଶ୍ୱରେ ଆଲୋଡନ ସୃଷ୍ଟି ହେଇ ସାରିଛି ଗତ ମାସରେ ।

ଏକଷଠୀ ବର୍ଷ ବୟସ୍କ ଲୋକପ୍ରିୟ ଔପନ୍ୟାସିକ ଜେଫ୍ରି ଆରଚର ଏକା ଧାରାରେ ଯଶ, ସୌଭାଗ୍ୟ ଓ କ୍ଷମତାର ଅଧିକାରୀ ଥିଲେ । ଲୋକପ୍ରିୟ ଉପନ୍ୟାସ : 'ନଟ୍ ଏ ପେନି ମୋ'ର ନଟ୍ ଏ ପେନି ଲେସ୍', 'କେନ୍ ଏଣ୍ଡ୍ ଆବେଲ୍', 'ଫୋର୍ଥ ଇଷ୍ଟେଟ', 'ଇଲେଭେନଥ କମାଣ୍ଡମେଣ୍ଟ', 'ଅନର୍ ଆମୋଙ୍ଗ୍ ଥିଭ୍ସ୍', 'ଫାଷ୍ଟ ଆମୋଙ୍ଗ୍ ଇକ୍ୱାଲସ୍' ଓ 'ଏ ଟ୍ୱିଷ୍ଟ ଇନ୍ ଦି ଟେଲ୍' ଆଦି ଲେଖି ସେ ବିପୁଳ ଟଙ୍କା ଅର୍ଜନ କରିଛନ୍ତି ।

ରାଜନୀତିରେ ବି ଆର୍‌ଚରଙ୍କର ରଚି ଅଛି ଖୁବ୍ ବେଶୀ । ସେଇଥିପାଇଁ ସେ ଦୁଇଜଣ ପ୍ରଧାନମନ୍ତ୍ରୀ : ମାର୍ଗାରେଟ୍ ଥାଚର ଏବଂ ଜନ ମେଜରଙ୍କ ଖୁବ୍ ନିକଟତର ଥିଲେ । ସେଇଥିପାଇଁ ବ୍ରିଟେନ୍‌ର କନ୍‌ଜରଭେଟିଭ ପାର୍ଟିର ଭାଇସ୍ ଚେୟାରମ୍ୟାନ ଓ 'ହାଉସ୍ ଅଫ୍ ଲର୍ଡସ୍'ର ସଦସ୍ୟ ଥିଲେ ସେ । ଏକଦା ଲଣ୍ଡନ ସହରର ମେୟର ପଦ ପାଇଁ ପ୍ରାର୍ଥୀ ମଧ୍ୟ ହୋଇଥିଲେ ଔପନ୍ୟାସିକ ଆରଚର ।

ବିପୁଳ କ୍ଷମତା ଓ ଅର୍ଥର ଅଧିକାରୀ ଏଇ ଔପନ୍ୟାସିକ ଏବେ ଲଣ୍ଡନର ବେଲମାର୍ସ ହାଇ ସିକୁରିଟି କାରଗାରରେ ଜୀବନ ବିତାଉଛନ୍ତି । ଚାରିବର୍ଷ ଜେଲଦଣ୍ଡ ସହ ଏକ ଲକ୍ଷ ପଚସ୍ତରୀ ହଜାର ଡଲାର ଜୋରିମାନ ଧାର୍ଯ୍ୟ କରାଯାଇଛି ବିଚାରପତିଙ୍କ ଦ୍ୱାରା । ଏହି ଜୋରିମାନା ଆଦାୟ ନ ହେଲେ ଆଉ ଏକବର୍ଷ ପାଇଁ ଆରଚର ଜେଲ୍‌ରେ ରହିବେ । ସେ ଏବେ ରହୁଥିବା ଜେଲ୍‌ରେ ବିଶ୍ୱର ସବୁଠୁ ବଡ ଧରଣର ଟ୍ରେନ୍ ଡକାୟତି ଘଟାଇଥିବା କୁଖ୍ୟାତ ରୋନି ବିଗ୍‌ସ୍ ଏବଂ ଦୂରଦର୍ଶନର ଉପସ୍ଥାପକ ଜିଲ୍ ଡାଣ୍ଡୋଙ୍କ ହତ୍ୟାକାରୀ ମଧ୍ୟ ଅଛନ୍ତି । କାଳେ ଗଭୀର ମାନସିକ ଅବସାଦରେ ଜୀବନ ବିତାଉଥିବା ଔପନ୍ୟାସିକ ଆରଚର ଆତ୍ମହତ୍ୟା କରିବସିବେ, ସେଥିପାଇଁ ତାଙ୍କ ଉପରେ ସର୍ବଦା ତୀକ୍ଷଣ୍ ଦୃଷ୍ଟି ରଖାଯାଇଛି କର୍ତ୍ତୃପକ୍ଷଙ୍କ ପକ୍ଷରୁ ।

ମାତ୍ର ଆର୍‌ଚରଙ୍କ ଦୋଷ କ'ଣ ? କେହି କେହି ଭାବିପାରନ୍ତି 'ମନିକା'ଙ୍କ ସହ

ଯୌନ ସମ୍ପର୍କ ହିଁ ତାଙ୍କ ଦୁର୍ଦ୍ଦଶାର ଅସଲ କାରଣ, ମାତ୍ର ଏହା ଠିକ୍ ନୁହେଁ । ସେ ମିଛ କହିଥିବାରୁ ହିଁ ଏପରି ଦଣ୍ଡ ପାଇଛନ୍ତି । ଘଟଣାଟି ବିସ୍ତୃତ ଭାବେ କହିବା ଆବଶ୍ୟକ ।

ରାଜନୈତିକ ଦଳ 'କନ୍‌ଜରଭେଟିଭ' ପାର୍ଟିର ଭାଇସ୍ ଚେୟାରମ୍ୟାନ୍ ଥିବା ବେଳେ ୧୯୮୬ ମସିହାରେ 'ଦି ଡେଲି ଷ୍ଟାର' ନାମକ ଏକ ଖବର କାଗଜରେ ସଂବାଦଟିଏ ଛପିଥିଲା ଯାହାର ସାଂରାଶ ହେଲା 'ମନିକା କଫଲାନ୍' ନାମକ ଏକ ଗଣିକା ସହ କୌଣସି ଏକ ହୋଟେଲ୍‌ରେ ଆଚର୍‌ର ରାତ୍ରୀଯାପନ କରିଛନ୍ତି । 'ମନିକା'ଙ୍କୁ ଚୁପ୍ ରହିବା ପାଇଁ ଆର୍‌ଚର ଦିନେ ଭିକ୍ଟୋରିଆ ଷ୍ଟେସନର ତିନିନମ୍ବର ପ୍ଲାଟଫର୍ମରେ ଉତ୍କୋଚ ଦେଉଥିବା କଥା, ସେଠାକାର ଏକ ଘରୋଇ ଗୁଇନ୍ଦା ସଂସ୍ଥା 'ଏମ୍-୧୫'ଙ୍କ ଦୃଷ୍ଟିକୁ ଆସେ, ମାତ୍ର ନିଜ ସାମ୍ମାନରେ ଆଞ୍ଚ ଆସିଥିବା ଓ ଘଟଣାଟି କପୋଳକଳ୍ପିତ ବୋଲି ଦର୍ଶାଇ ଆରଚର ଏକ ମାନହାନୀ ମୋକଦ୍ଦମା ଦାୟର କରନ୍ତି ଓ ଏ ବାବଦ୍‌ରେ 'ଦି ଡେଲି ଷ୍ଟାର' ଖବର କାଗଜ ତରଫରୁ ତାଙ୍କୁ ପାଞ୍ଚ ଲକ୍ଷ ଡଲାର କ୍ଷତିପୂରଣ ବାବଦରେ ଦିଆଯାଏ, ଯାହା ବ୍ରିଟେନ୍‌ର ମାନହାନୀ ମୋକଦ୍ଦମା ଇତିହାସରେ ସବୁଠୁ ଅଧିକ କ୍ଷତିପୂରଣ ପାଇଥିବା କେଶ୍ ଅଟେ । ମିଥ୍ୟାର ଆଶ୍ରୟ ନେଇ ଆରଚର ଏ ମୋକଦ୍ଦମା ଜିତନ୍ତି ।

ମାତ୍ର ବାରବର୍ଷ ପରେ ଘଟଣାର ମୋଡ ବଦଳିଯାଏ । ଟେଲିଭିଜନ ପ୍ରଯୋଜକ ଓ ବନ୍ଧୁ ଟେଡ୍ ଫ୍ରାଙ୍କିସ୍‌ଙ୍କ ସହାୟତାରେ ଗୋଟିଏ ଏ-୪ (A-4) ସାଇଜର ଅଫିସ୍ ଡାଏରୀରେ, 'ମନିକା'ଙ୍କ ସହ ବିତେଇଥିବା ସମୟରେ, ଆରଚର ଅନ୍ୟତ୍ର ଥିଲେ ବୋଲି ଲେଖାଯାଏ ଓ ଏହାକୁ କୋର୍ଟରେ ଦାଖଲ କରି ସେ ଏଇ ମୋକଦ୍ଦମାରେ ବିଜୟୀ ହୋଇଥାନ୍ତି । ନିଜର ବ୍ୟକ୍ତିଗତ ସଚିବ ଆଞ୍ଜୋଲ ପେପିଆଟ୍‌ଙ୍କୁ ମଧ୍ୟ ଅନୁରୂପ ଏକ ଡାଏରୀ ସୃଷ୍ଟି କରିବା ଲାଗି ଆରଚର ପ୍ରବର୍ତ୍ତାଇଥାନ୍ତି, ଯାହା ବାରବର୍ଷ ପରେ ଲୋକ ଲୋଚନକୁ ଆସେ, ସେ 'ମିଛୁଆ' ବୋଲି ପ୍ରମାଣିତ ହୁଅନ୍ତି ।

ମୋକଦ୍ଦମା ଚାଲିଥିଲା ବେଳେ ଆରଚରଙ୍କ ଆଚରଣ ସମ୍ପର୍କରେ ମଧ୍ୟ ଅନେକ କଥା ଜଣାପଡିଲା । ଶିକ୍ଷାରେ ମାତ୍ର ଏକ ବର୍ଷ ଡିପ୍ଲୋମା କରିଥିବା ଆରଚର ଅକସ୍‌ଫୋର୍ଡ ଗ୍ରାଜୁଏଟ ବୋଲି ନିଜକୁ ପରିଚୟ ଦେବା ସହ ବର୍‌କଲେ ବିଶ୍ୱବିଦ୍ୟାଳୟରୁ ଆଉ ଏକ ଡିପ୍ଲୋମା କରିଛନ୍ତି ଓ ବି.ବି.ସି.ରେ କାମ କରୁଛନ୍ତି ବୋଲି ଡାହାମିଛ କହିଥିଲେ ।

ବାରବର୍ଷତଳେ ସରିଯାଇଥିବା କେଶ୍‌ଟି ପୁନର୍ବାର ବିଚାର ହୋଇ ମାତ୍ର ମାସକ ଭିତରେ ତାଙ୍କ ପ୍ରତି ଦଣ୍ଡବିଧାନ କରାଯାଇ ପାରିଥିଲା । ଏବେ ସେ ଖବରକାଗଜ 'ଦି ଡେଲି ଷ୍ଟାର' ପାଖରୁ କ୍ଷତିପୂରଣ ପାଇଥିବା ପାଞ୍ଚଲକ୍ଷ ଡଲାର ଫେରାଇବେ କି ନାହିଁ ତା'ର ବିଚାର ଅନ୍ୟ ଏକ କୋର୍ଟରେ ଚାଲିଛି ଓ ଏହାର ରାୟ ଖୁବ୍ ଶୀଘ୍ର ପ୍ରକାଶ ପାଇବ ବୋଲି ଆଶା କରାଯାଏ ।

ବ୍ରିଟେନ୍‌ର ବିଚାର ପ୍ରକ୍ରିୟାରେ କ୍ଷୀପ୍ରତା ସମ୍ପର୍କରେ ଆଲୋଚନା କଲାବେଳେ ସ୍ୱତଃ ଭାରତର ବିଚାର ପଦ୍ଧତି କଥା ମନକୁ ଆସିଯାଉଛି ।

ବିଚାର ପଦ୍ଧତିର କଚ୍ଛପଗତି ଯୋଗୁଁ ବ୍ୟକ୍ତିକୁ ମିଳୁଥିବା ନ୍ୟାୟର କୌଣସି ପ୍ରଭାବ ଏଠି ରହୁ ନାହିଁ । ମୂଳତଃ ବ୍ରିଟିଶ୍‌ର ନ୍ୟାୟ ପଦ୍ଧତିକୁ ଅନୁସରଣ କରିଥିବା ଆମର ବିଚାର ପଦ୍ଧତିର ପରିଣତି ଏପରି ହୋଇଛି ଯେ ବିଚାର ବିଭାଗ ପ୍ରତି ଥିବା ବିଶ୍ୱାସ ମହମ ପରି ତରଳି ଯାଉଛି ମନ ଭିତରୁ ।

ବୋଫର୍ସ ଦୁର୍ନୀତି, ହର୍ଷଦ ମେହେଟ୍ଟାଙ୍କ ଠକେଇ ଓ ପ୍ରଧାନମନ୍ତ୍ରୀଙ୍କୁ ଉତ୍କୋଚ, ଲାଲୁ ପ୍ରସାଦ ଯାଦବଙ୍କ ଗୋ' ଖାଦ୍ୟ କିଣାରେ ହୋଇଥିବା ହେରଫେର୍ ଠାରୁ ଆରମ୍ଭ କରି ଜୟଲଳିତାଙ୍କ 'ଟାନ୍‌ସୀ' ଦୁର୍ନୀତିରୁ ଆମକୁ ଅନ୍ତତଃ ଏତିକି ଶିକ୍ଷା ମିଳୁଛି ଯେ ଭାରତରେ ବିଚାର ପଦ୍ଧତିର କାଠଗଣ୍ଡିକୁ ଧୀରେ ଧୀରେ ଘୁଣପୋକ ଖାଇବା ଆରମ୍ଭ କରିଛି ଓ ସେଥିରୁ ନିଷ୍କୃତ ପାଇବାର ଆଶା ଖୁବ୍ ନିକଟରେ ଅନ୍ତତଃ ନାହିଁ ।

# ଅମେରୁଦଣ୍ଡୀ

ଏବେ କିଛିଦିନ ହେଲା ଶୁଣାଯାଉଛି: ଭାରତର ଏକମାତ୍ର ସଂସ୍କୃତି ବିଶ୍ୱବିଦ୍ୟାଳୟଟି ବନ୍ଦ ହୋଇଯିବ ।'' ଏଠି କହିବା ନିଷ୍ପ୍ରୟୋଜନ ଯେ ଏହି ଅନୁଷ୍ଠାନଟି ଓଡ଼ିଶାର ରାଜଧାନୀରେ ଗତ ବର୍ଷ (୨୦୦୦) ଜାନୁଆରୀ ମାସରୁ କାର୍ଯ୍ୟକ୍ଷମ ହୋଇଛି ଯଦିଓ ୧୯୯୯ ମସିହା ସେପ୍ଟେମ୍ବର ୧୨ ତାରିଖରୁ ଓଡ଼ିଶା ସରକାରଙ୍କ ଦ୍ୱାରା ଗେଜେଟ୍ ନୋଟିଫିକେସନ୍ ଏ ସମ୍ପର୍କରେ ଜାରି କରାଯାଇଥିଲା । ଷାଠିଏ ଜଣ ଛାତ୍ରଙ୍କୁ ନେଇ ପ୍ରଥମେ ଏଇ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ଆରମ୍ଭ ହୋଇଥିଲା ବର୍ଷକ ତଳେ । ଅଥଚ ଶୈଶବ ତ ଦୂର କଥା, ଭ୍ରୂଣ ଅବସ୍ଥାରେ ଏଇ ଅନୁଷ୍ଠାନଟିର ଅକାଳ ମୃତ୍ୟୁ ଖବର ଅନେକ ବୁଦ୍ଧିଜିବୀଙ୍କୁ ଆହତ କରିବ । କରିବା ମଧ୍ୟ ସ୍ୱାଭାବିକ ।

ଯଜୁର୍ବେଦର ୭ମ ଅଧ୍ୟାୟର ଚତୁର୍ଦ୍ଦଶ ସୂକ୍ତରେ ସଂସ୍କୃତି ସମ୍ପର୍କରେ କୁହାଯାଇଛି : ସା ପ୍ରଥମା ସଂସ୍କୃତି ର୍ବିଶ୍ୱବାରା । ଏହାର ଆକ୍ଷରିକ ଅର୍ଥ ହେଉଛି-ସାରା ବିଶ୍ୱରେ ସଂସ୍କୃତି ହିଁ ପ୍ରଥମ ।'' ସଂସ୍କୃତି ଶବ୍ଦର ଇଂରାଜି ଅନୁରୂପ ହେଉଛି : କଲଚର୍ ।'' ଫ୍ରେଞ୍ଚ୍ ଦାର୍ଶନିକ ସିମୋନ୍ ସ୍ୱେଲ ବରାବର କହୁଥିଲେ : ସଂସ୍କୃତି ହେଉଛି ଅଧ୍ୟାପକମାନଙ୍କର ହାତବାରିସୀ ଯାହା କେବଳ ଅଧ୍ୟାପକ ହିଁ ତିଆରି କରେ ଆଉ ଯେତେବେଳେ ସେମାନଙ୍କ ପାଳି ପଡ଼ିବ ସେମାନେ ବି ଅଧ୍ୟାପକ ତିଆରି କରିବେ ।'' (Culture is an instrument Wielded by professors to manufacture professors, who when their turn comes will manufacture professors.)

ଓଡ଼ିଶାର ସଂସ୍କୃତି ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ; ଅଧ୍ୟାପକ ସୃଷ୍ଟି କରିବାର ଅନେକ ଆଗରୁ, ୧୯୯୯ ମସିହାର ପ୍ରଳୟଙ୍କରୀ ମହାବାତ୍ୟା କେତେକ ଅଧ୍ୟାପକଙ୍କୁ ସଂସ୍କୃତି ବିଶ୍ୱବିଦ୍ୟାଳୟକୁ ଆଣିବାରେ ସହାୟକ ହୋଇଥିଲା । କଥାଟି ଏଠି ସ୍ପଷ୍ଟ କରିଦେବା ଉଚିତ ।

ମହାବାତ୍ୟା ସମୟରେ ଭାରତର ଅନ୍ୟାନ୍ୟ ରାଜ୍ୟରୁ ପ୍ରଭୂତ ଖାଦ୍ୟ ଓ ଗୃହ ଉପକରଣ ଆଦି ଓଡ଼ିଶାକୁ ଆସିଥିଲା । ସେଇପରି ଏକ ଦଳରେ ଆସିଥିଲେ ମହାରାଷ୍ଟ୍ରରୁ ଏରସମା ଅଞ୍ଚଳକୁ ଶ୍ରୀମତୀ ବିନ୍ଦା ପରାଞ୍ଜପେ ଓ ତାଙ୍କର ସ୍ୱାମୀ ଅଧ୍ୟାପକ ଗୋପବନ୍ଧୁ

ମହାନ୍ତି । ସେଇପରି ମଧ୍ୟ ଆସିଥିଲେ ଅଧ୍ୟାପକ ସୁବ୍ରତ କଲ୍ୟାଣ ପଟ୍ଟନାୟକ । ଏମାନେ ସାମାଜିକ ଭାଷା ବିଜ୍ଞାନ ହିଁ ଏଠି ପଢ଼ାଇବାକୁ ଆସିଥିଲେ । ନିଜ ପ୍ରଦେଶର ସାଂସ୍କୃତିକ ପରିଚୟ ଖୋଜିବା ସହ ଭିଟାମାଟିର ଗନ୍ଧ ସେମାନଙ୍କୁ ଓଡିଶାକୁ ଟାଣି ଆଣିଥିଲା ଆପଣା ଛାଏଁ ।

ଶୁଣାଯାଏ ସଂସ୍କୃତି ବିଶ୍ୱବିଦ୍ୟାଳୟର ସୁପରିଚାଳନାର ପ୍ରଧାନ ଅନ୍ତରାୟ ହେଉଛି ଖୋଦ୍ ସଂସ୍କୃତି ବିଭାଗ । ଏହାଛଡା ସରକାରୀ ନିଷ୍କ୍ରିୟତା ଓ ଅମଲାତନ୍ତ୍ରର ହତାଦରର ଶିକାର ହୋଇଛି ଏଇ ବିଶ୍ୱବିଦ୍ୟାଳୟ । ଅନ୍ୟାନ୍ୟ ପ୍ରଦେଶରେ ସରକାରୀ ପ୍ରୋତ୍ସାହନ ଓ ରାଜନୈତିକ ଇଚ୍ଛାଶକ୍ତିର ଅଭାବ ନାହିଁ । ମାତ୍ର ଓଡିଶାରେ ଶିକ୍ଷା ଓ ସଂସ୍କୃତି ପାଇଁ ରାଜନୈତିକ ନେତାମାନଙ୍କର ଶ୍ରଦ୍ଧା ପ୍ରାୟତଃ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ନିକଟ ଅତୀତରେ ଯେଉଁ କେତୋଟି ବିଶ୍ୱ ବିଦ୍ୟାଳୟ ଗଠନ କରାଯାଇଛି ବୋଲି ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇଛି ତାହା ସଂସ୍କୃତି ବା ଶିକ୍ଷା ପ୍ରବଣତା ଯୋଗୁଁ ନୁହେଁ, ବରଂ ରାଜନୈତିକ ଶଠତା ଯୋଗୁଁ ହୋଇଛି ବୋଲି ଭାବିବା ଅଧିକ ଯୁକ୍ତିଯୁକ୍ତ ହେବ ।

ସଂସ୍କୃତି ବିଶ୍ୱବିଦ୍ୟାଳୟର ଜନ୍ମ ଠିକ୍ ସେଇପରି ଏକ ରାଜନୈତିକ ଚାଲର ଅଂଶବିଶେଷ ମାତ୍ର । ସ୍ୱଳ୍ପକାଳ ପାଇଁ ମୁଖ୍ୟମନ୍ତ୍ରୀ ହୋଇଥିବା ଗିରିଧାରୀ ଗମାଙ୍ଗଙ୍କର ଏହା କୁଆଡେ ସ୍ୱପ୍ନ ଥିଲା । ସେ ସ୍ୱପ୍ନ ସାକାର କଲେ । କେବଳ ସ୍ୱପ୍ନ ଦେଖିଲେ ଯେ ତାହା ସଫଳ ହୋଇଯିବ ସେପରି ଭାବିବା ମଧ୍ୟ ଭୁଲ । ଏଥିପାଇଁ ଦୂରଦୃଷ୍ଟିର ମଧ୍ୟ ଆବଶ୍ୟକତା ରହିଚି, ଯାହା ଶ୍ରୀ ଗମାଙ୍ଗଙ୍କ ପାଖରେ ନଥିଲା ବୋଲି ମନେ ହେଉଚି । ନଚେତ୍, ମାତ୍ର ବର୍ଷକ ତଳେ ଗଢ଼ା ହୋଇଥିବା ଏଇ ଇମାରତ୍‌ଟି ଭୂକଂପ ଆସିବାର ଅନେକ ଆଗରୁ ଭୂତଳଶାୟୀ ହେବାର ଆଶଙ୍କା ସୃଷ୍ଟି କରି ନଥାନ୍ତା ! ଶ୍ରୀ ଗମାଙ୍ଗ ଜଣେ ସରଳବ୍ୟକ୍ତି ବୋଲି ସବୁରି ଧାରଣା ଅଛି । ମାତ୍ର ସେ ଜଣେ ଅକ୍ଷମ ବ୍ୟକ୍ତି ବୋଲି ଜଣାପଡିଲା ଓଡିଶାର ମୁଖ୍ୟମନ୍ତ୍ରୀ ହେବାପରେ । କେବଳ ମହାବାତ୍ୟା ନୁହେଁ, ସୋରଣ ଗୁଳିକାଣ୍ଡ ଓ ଘନ ଘନ ବଦଳି ସବୁ ଏହାର ନଜିର୍ ।

ଏବେ କୁଆଡେ ସେ ରାଜନୀତିର ପୋଷାକ ଛାଡି ସଂଗୀତଜ୍ଞ ଅବତାରରେ ଦେଶ ବିଦେଶ ଘୂରି ବୁଲୁଛନ୍ତି । ସବୁଠି ଚାଙ୍ଗୁବାଦ୍ୟ (ଆଦିବାସୀ ସଂପ୍ରଦାୟର ପ୍ରିୟ ବାଦ୍ୟ ଯନ୍ତ୍ର) ବଜାଇ ଲୋକଙ୍କୁ ମୋହିତ କରୁଛନ୍ତି । ପ୍ରାୟ ବର୍ଷକ ତଳର କଥା । ଗୋଟିଏ ସଂଗୀତ ସମାରୋହରେ ଗିରିଧାରୀ ଗମାଙ୍ଗଙ୍କ ଦଳ ସଂଗୀତ ପରିବେଷଣ କରିବାକୁ ଆସିଥାନ୍ତି । ସେଇ କାର୍ଯ୍ୟକ୍ରମଟି ଦେଖିବାର ସୁଯୋଗ ମିଳିଥିଲା ଏ ଲେଖକଙ୍କୁ। ସେଇ ଦଳରେ ଆସିଥିବା ଘୋଷିକା ଜଣକ ବାରମ୍ବାର ଶ୍ରୀ ଗମାଙ୍ଗଙ୍କ ସଂଗୀତ ନିପୁଣତା

ସମ୍ପର୍କରେ ଦୀର୍ଘ ତଥା ବିରକ୍ତିକର ଉପକ୍ରମଣିକା ଦେଇ ଚାଲିଥାନ୍ତି । ଶ୍ରୀ ଗମାଙ୍ଗ କୁଆଡେ ଗୋଟିଏ ବାଦ୍ୟଯନ୍ତ୍ରରୁ ତିରିଶରୁ ଅଧିକ ସ୍ୱର ସୃଷ୍ଟି କରିପାରୁଛନ୍ତି ବୋଲି ଘୋଷିକା ଜଣକ ସୂଚନା ଦେଲେ ।

ମାତ୍ର ଏହା ଥିଲା ତାହା ମିଛ । ଅନ୍ୟ କଳାକାରମାନେ ସଂଗୀତ ପରିବେଷଣ କରୁଥିବା ବେଳେ ନିଜ ଜାଗାରୁ ଉଠି ସେ ବାରମ୍ବାର ରସଭଂଗ କରୁଥିଲେ । ଏତେ ବଡ ସଂଗୀତଜ୍ଞ ବୋଲି ନିଜକୁ ପ୍ରଚାରିତ କରିବା ପରେ, ସେଦିନ ଗୋଟିଏ ବି ଦୃଷ୍ଟାନ୍ତ ତା'ର ଦେଇ ପାରିଲେନି । କେବେ କେବେ ଶସ୍ତା କ୍ୟାସେଟ୍ ଏବଂ ସହରର ହୋର୍ଡିଙ୍ଗ୍‌ରେ ତାଙ୍କ ନାଁ ଦେଖିବାକୁ ମିଳୁଛି । ଓଡିଶାର ମୁଖ୍ୟମନ୍ତ୍ରୀ ହୋଇ ସାରିବା ପରେ ସଂଗୀତ ଜଗତକୁ ଓହ୍ଲାଇ ଆସିଥିବାର ଚମତ୍କାରିତାରେ ଲୋକଙ୍କୁ ସେ କିମିଆଁ କରିବାକୁ ଚେଷ୍ଟା କରୁଛନ୍ତି, ଅଥଚ ନିରୁତା ସଂଗୀତ ପରିବେଷଣ କରିବାକୁ ଅସମର୍ଥ ହେଉଛନ୍ତି । ରାଜନୀତିରେ ଉପରକୁ ଉଠିବାକୁ ହେଲେ ସୁଯୋଗର ସଦ୍ ବ୍ୟବହାର ଦରକାର, ମାତ୍ର ସଂଗୀତ ତଥା ଅନ୍ୟାନ୍ୟ କଳାରେ ଦକ୍ଷତା ହାସଲ କରିବାକୁ ହେଲେ ସାଧନା ଦରକାର ।

ଭାରତର ଅନ୍ୟାନ୍ୟ ପ୍ରଦେଶର କେତେକ ମୁଖ୍ୟମନ୍ତ୍ରୀ ସଂଗୀତ, ନୃତ୍ୟ ତଥା ଅନ୍ୟାନ୍ୟ କଳାକୁ ନିଜର ପ୍ରିୟ କରି ଆସିଛନ୍ତି । କାଶ୍ମୀରର ମୁଖ୍ୟମନ୍ତ୍ରୀ ଫାରୁକ୍ ଅବଦୁଲ୍ଲା ଏବେ 'କଥକ' ନୃତ୍ୟ ଶିକ୍ଷା କରୁଛନ୍ତି । କର୍ଣ୍ଣାଟକର ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ବଙ୍ଗରପ୍ପା ଜଣେ ଭଲ ହିନ୍ଦୁସ୍ଥାନୀ ସଂଗୀତଜ୍ଞ ଏବଂ ବିରାପ୍‌ପା ମୋଇଲି ଜଣେ ଉତ୍ତମ ବଂଶୀବାଦକ । ପ୍ରଧାନମନ୍ତ୍ରୀ ନରସିଂହ ରାଓ ମଧ୍ୟ ସଂଗୀତଜ୍ଞ ତ୍ୟାଗରାଜଙ୍କ 'ରାଗମାଳିକା'ର ଜଣେ ଉତ୍ତମ ସାଧକ, ଆନ୍ତର୍ଜାତିକ ସ୍ତରରେ ଆମେରିକା'ର ଭୂତପୂର୍ବ ରାଷ୍ଟ୍ରପତି କ୍ଲିଣ୍ଟନ୍ ମଧ୍ୟ 'ସାକ୍‌ସୋଫୋନ୍' ଭଲ ଭାବେ ବଜାଇ ପାରନ୍ତି ।

ଏସବୁ କରିବାର ଏକମାତ୍ର କାରଣ ହେଉଛି ଯେ ଜଣେ ରାଜନୈତିକ ନେତା ମଧ୍ୟ 'କଳା'ର ପୂଜାରୀ ହୋଇପାରିବ । ତା'ର ନିଷ୍ଠା ତାକୁ ଆହୁରି ଲୋକ ପ୍ରିୟ କରିପାରିବ । ଏବଂ ତା'ର ଶଠତା ତାକୁ ଜଣେ 'ଅମରୁଦଣ୍ଡୀ'ର ପରିଚୟ ଦେବ । ସେ ଅନ୍ୟ ସମସ୍ତଙ୍କୁ ଠକି ଦେଇ ପାରିବ ମାତ୍ର ନିଜକୁ ନୁହେଁ ।

ପ୍ରସଙ୍ଗକ୍ରମେ ଘଟଣାଟିଏ ମନେପଡୁଛି । ୧୯୩୨ ମସିହାର ଅଲିମ୍ପିକ୍ ଖେଳରେ ଖୁବ୍ ନାଁ କରିଥିଲେ ବେବ୍ ଡିଡ୍ରିକ୍‌ସନ-ଜାହାରିଆସ୍, ଯିଏ ପରବର୍ତ୍ତୀକାଳରେ ଜଣେ ଉତ୍ତମ ଗଲ୍‌ଫ ଖେଳାଳି ହେବାର ସୌଭାଗ୍ୟ ପାଇଥିଲେ । ଥରେ ଗୋଟିଏ ଗଲ୍‌ଫ ଖେଳରେ ସେ ଭୁଲ୍ ବଲ୍ ଖେଳିଥିଲେ ଯାହା ତାଙ୍କ ପ୍ରତିପକ୍ଷ ଖେଳାଳି ଜାଣି ପାରିନଥିଲେ । ମାତ୍ର ଖେଳର ରାଉଣ୍ଡ ଶେଷରେ ସେ ନିଜକୁ ଦୁଇଟି ପେନାଲ୍‌ଟି ଷ୍ଟ୍ରୋକ୍

ଆପଣାଛାଏଁ ଦେବା ଫଳରେ ଖେଳର ଶୀର୍ଷସ୍ଥାନକୁ ଯାଇ ପାରି ନ ଥିଲେ ।

: ତୁ ଏପରି କାହିଁକି କଲୁ ବେବ୍ ? ତୁ ଭୂଲ୍ ବଲ୍ ଖେଳିଥିଲୁ ବୋଲି ତ କେହି ଜାଣି ନଥିଲେ ।'' ଜଣେ ବାନ୍ଧବୀ ତାକୁ ପ୍ରଶ୍ନ କଲେ । ଓଠରେ ହସ ଖେଳାଇ ବେବ୍ କହିଲେ, ଏତିକି ବୁଝିପାରୁନ ? ଅନ୍ୟଠୁ ଲୁଚେଇଲେ କ'ଣ ହେଲା, ନିଜୁଠୁଁ କ'ଣ ଏକଥା ମୁଁ ଲୁଚେଇ ପାରିଥାନ୍ତି ?''

ଅନ୍ୟମାନଙ୍କ ସାମ୍ନାରେ ନିଜର ବିଜ୍ଞତାର ମିଥ୍ୟା ପ୍ରଦର୍ଶନ କରୁଥିବା ମଣିଷଟିକୁ ନିଜ ପାଖରୁ କେବେ ନିସ୍ତାର ମିଳେନା, ଏ କଥା ଶ୍ରୀ ଗିରିଧାରୀ ଗମାଙ୍ଗକୁ ବୁଝାଇବା ନିହାତି ଜରୁରୀ ନୁହେଁ ।



ଶବ୍ଦ ଯେ ଏକ ଆହ୍ୱାନ, ଆମନ୍ତ୍ରଣ ଏବଂ କଥୋପକଥନ ହୋଇପାରେ, ପ୍ରବନ୍ଧ ନିଜର ପୂର୍ଣ୍ଣ ପରିଚୟକୁ ଆମ ସମ୍ମୁଖରେ ରଖିଦେଇ ସେଇ ବିକଳ୍ପ ବାଟଟିଏ କାଢ଼ିବାକୁ ଚେଷ୍ଟାକଲା । ବନ୍ଧୁ ଶ୍ରୀ ମନୁ ଦାଶଙ୍କର ଏଇ ଲେଖାଗୁଡ଼ିକ ପଢ଼ି ମୋତେ ସବା ଆଗ ଏଇ କଥାଟି ମନେପକାଇ ଦେଲା । ଏଣିକି ତାଙ୍କର ଲେଖା ଏଇପରି ସନ୍ଦର୍ଭଟିଏ ସୃଷ୍ଟି କରିବାରେ ଆହୁରି ଅବକାଶ ସୃଷ୍ଟି କରିବ, ମୋତେ ସେଇପରି ଲାଗିଲା ।

- ଚିତ୍ତରଞ୍ଜନ ଦାସ

ମନୁ ଦାଶଙ୍କ ଲେଖାଗୁଡ଼ିକରେ କ'ଣ ଥାଏ କେଜାଣି, ଥରେ ଧରିଲେ ଛାଡ଼ିବାକୁ ଇଚ୍ଛା ହୁଏନାହିଁ । ଅନ୍ତତଃ ମୋର । ସେଇ ଛୋଟ ଲେଖାଗୁଡ଼ିକ ଭିତରେ ଅଛି ଜୀବନର ପ୍ରଭାବଶାଳୀ ଚିତ୍ର; ସେଥିରୁ ଲେଖକଙ୍କର ସଂବେଦନଶୀଳ ହୃଦୟ ସ୍ୱଷ୍ଟ ପରିଲକ୍ଷିତ ହୁଏ । ପୁଣି, ସାଧାରଣ କଥାସବୁରୁ ମନୁ ଦାଶ ଆମ ସାମ୍ନାରେ ଆଇନାଟିଏ ରଖି ଆମକୁ କିମିତି ଦେଖେଇ ପାରନ୍ତି କ୍ଷୟ ହେଉଥିବା ଆମ ସମାଜର ମୁହଁ !

- ଜୟନ୍ତ ମହାପାତ୍ର

